# ଗ୍ରାମେ ଗ୍ରାମେ ପରିବେଶ




ପ୍ରଫେସର ନାରାୟଣ ହଜାରୀ

# ଗ୍ରାମେ ଗ୍ରାମେ ପରିବେଶ

ନାରାୟଣ ହଜାରୀ

ପ୍ରକାଶକ

ଆମରିସତ୍ୟ

ଖୋରଧା

*ପ୍ରଫେସର୍ ନାରାୟଣ ହଜାରୀ*

# ଗ୍ରାମେ ଗ୍ରାମେ ପରିବେଶ



ପ୍ରଥମ ସଂସ୍କରଣ: ବାହୁଡା ୨୦୧୫

ପ୍ରକାଶକ: ଆମରିସତ୍ୟ, ଏମ୍-୧/୫, ମୁକୁନ୍ଦପ୍ରସାଦ ହାଉସିଂବୋର୍ଡ କଲୋନୀ, ଡାକ: ପ୍ରାଣନାଥ କଲେଜ, ଜିଲା: ଖୋରଧା, ପିନ୍: ୭୫୨୦୫୭

ମୁଦ୍ରଣ: ଜଗନ୍ନାଥ ଗ୍ରାଫିକ୍ସ, ୟୁନିଟ୍ - ୯, ଭୁବନେଶ୍ୱର

ମଲାଟ ପରିକଳ୍ପନା ଓ ଅଳଂକରଣ : ରାଜୀବ ଲୋଚନ ରଥ

ଲେଖକଙ୍କ ଠିକଣା : ତଳସାହି, ପୋ/ଜି : ଖୋରଧା-୭୫୨୦୫୫

ଦୂରଭାଷ : ୦୬୭୫୫-୨୨୧୨୯୩

ମୋବାଇଲ୍ : ୯୯୩୭୧୯୯୪୮୯

**GRAME GRAME PARIBESA**

Written by: *Prof. Narayana Hazary*



*1st Edition : Bahuda, 2015*

*Phone-06755-221293*

*Mobile-9937199489*

**Published by:**

AMARISATYA

Agency for Management, Advocacy, Research, Implementation, Services and Training on Youth Affairs .M-1/5,

Mukunda Prasad Housing Board Colony .

PO: P.N.College, Dt: Khordha-752057 .Odisha

*amarisatya@gmail.com/amarisatya@rediffmail.com*

*06755-220980*

Printed at :

JAGANNATH GRAPHICS

Unit-9, Bhubaneswar

*Address of the Author - Tala Sahi, Post /Dist : Khordha-752055*

ମୂଲ୍ୟ: ୧୫୦ ଟଙ୍କା / Price: ₹ 150.00

# ଉତ୍ସର୍ଗ

ତ୍ୟାଗ, ସେବା ଓ ସାଧନାର କ'ଣ ପ୍ରତିଦାନ ଥାଏ। ଯଦି ଥାଏ, 'ଗ୍ରାମେ ଗ୍ରାମେ ପରିବେଶ' ସେଇମାନଙ୍କ ହାତରେ, ଯେଉଁ ସ୍ୱେଚ୍ଛାସେବୀ, ଗ୍ରାମବାସୀମାନେ ମୋ ସହ ଗାଁ ରୁ ଗାଁ ପଦଯାତ୍ରାରେ ସାମିଲ ହୋଇ ଜଙ୍ଗଲ ସଂରକ୍ଷଣ ଓ ବୃକ୍ଷରୋପଣ କାର୍ଯ୍ୟକ୍ରମକୁ ସଫଳ କରିଥିଲେ।

**ନାରାୟଣ ହଜାରୀ**

# ଅଗ୍ରଲେଖ

ମୁଦ୍ରଣ ଶିଳ୍ପ ଓ ପ୍ରକାଶନ ସଂସ୍ଥା ସମୂହର ବ୍ୟାପକ ବିକାଶ ଯୋଗୁଁ ଆଜି ଆମ୍ଭମାନଙ୍କୁ ବିବିଧ ବିଷୟ ସମ୍ବଳିତ ବହୁ ଗ୍ରନ୍ଥ ଦେଖିବାର ଏବଂ ଆମ ଆଗ୍ରହ ଅନୁସାରେ ପଢ଼ିବାର ସୁଯୋଗ ମିଳୁଛି । କିନ୍ତୁ ରାଜନିତୀବିଜ୍ଞାନରେ ଭୂତପୂର୍ବ ପ୍ରଫେସର , ପରିବେଶ ସୁରକ୍ଷା ଆନ୍ଦୋଳନରେ ଅଗ୍ରଣୀ ନେତା ଶ୍ରୀ ହଜାରୀଙ୍କ ପ୍ରଣୀତ ନିବନ୍ଧସବୁର ସଂକଳନ 'ଗ୍ରାମେ ଗ୍ରାମେ ପରିବେଶ' ଏକ ବିଶେଷ ପର୍ଯ୍ୟାୟର ଅବଦାନ, ଆମ ପାଇଁ ଏକ ବିରଳ ଆଶୀଷ: ସାମୁହିକ ଜୀବନର ଏକାନ୍ତ ଗୁରୁତ୍ୱପୂର୍ଣ୍ଣ ଅଥଚ ଅବହେଳିତ ଏକ ଦିଗ ଉପରେ ଆଲୋକପାତ , ସେ ସଂପର୍କରେ ଚେତାବନୀ, ପ୍ରାସଙ୍ଗିକ ସମସ୍ୟା ସବୁର ବାସ୍ତବଧର୍ମୀ ବିଶ୍ଳେଷଣ ତଥା ସବୁ ବିଷୟରେ ନିଷ୍କପଟ ମନ୍ତବ୍ୟର ସମାହାର ।

ଆମ ମାନଙ୍କ ଆଗରେ ଆଜି କେତେ ସାମାଜିକ, ନୈତିକ ଓ ଧର୍ମଗତ ଆଦର୍ଶ ପରିବେଷିତ ହେଉଛି, କେତେ ମଙ୍ଗଳକାମୀ ଅନୁଷ୍ଠାନଗଢ଼ି ଉଠୁଛନ୍ତି । କେତେ ହୃଦୟଗ୍ରାହୀ ସାହିତ୍ୟିକ ଓ ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇ ଚାଲିଛି । କିନ୍ତୁ ଆମ ସମଗ୍ର ସ୍ଥିତିର ଭିତ୍ତି ଯେଉଁ ଧରିତ୍ରୀ, ତାକୁ ଆମେ କି ଭଳି ନାରଖାର କରିଚାଲିଛୁଁ, ଦିନ ପରେ ଦିନ ନଦନଦୀ ସମୂହର କୂଳେ କୂଳେ କଳକାରଖାନା ପ୍ରତିଷ୍ଠା କରି ସେ ସବୁର ପରିତ୍ୟକ୍ତ ବିଷାକ୍ତ ଆବର୍ଜନା ଦ୍ୱାରା ନିୟୋଜିତ ଅଭିଭାବକ ଯେଉଁ ପାହାଡ଼ ପର୍ବତ, ସେ ସବୁକୁ କିପରି ବିଧ୍ୱସ୍ତ କରିଚାଲିଛୁଁ, ସେ ସବୁ ସଂପର୍କରେଆମେ ସଚେତନ ନୋହୁଁ, ଏପରିକି ଆମର ଏତାଦୃଶ କୁକୀର୍ତ୍ତିର ଭୀଷଣ କୁଫଳ ଭୋଗ କରିବା ସତ୍ତ୍ୱେ ଆମେ ନିଜେ ସେ ପରିସ୍ଥିତିର ପ୍ରତିକାର ଦିଗରେ କୌଣସି ପଦକ୍ଷେପ ନନେଇ ସରକାର ଅଥବା ଅନ୍ୟ କୌଣସି ସଂସ୍ଥା ତାହା କରିବ, ଏହି ଧାରଣା ପାଖରେ ନିଜ ନିଜକୁ ସମର୍ପି ଦେଉଛୁଁ ।

ଏମନ୍ତ ଦୁର୍ଭାଗ୍ୟଜନକ ଅବସ୍ଥାର କାରଣ ବହୁତ । ସ୍ୱାଧୀନତା ପ୍ରାପ୍ତିର ବହୁ ବର୍ଷ ପର ପର୍ଯ୍ୟନ୍ତ ଆମ ପ୍ରକୃତି ଓ ପରିବେଶର ଭୂମିକା ସଂପର୍କରେ ବିଦ୍ୟାଳୟ ମାନଙ୍କରେ କୌଣସି ଶିକ୍ଷା ଦିଆଯାଉନଥିଲା, କିମ୍ବା କୌଣସି ସରକାରୀ ବା ବେସରକାରୀ ସଂସ୍ଥା ସେଭଳି କର୍ତ୍ତବ୍ୟ କରୁନଥିଲେ । ଅନ୍ୟ ଏକ ମୁଖ୍ୟ କାରଣ, ଲେଖକ ମହୋଦୟଙ୍କ ଯଥାର୍ଥ ପର୍ଯ୍ୟବେକ୍ଷଣ ଅନୁସାରେ, ପ୍ରାୟ ପ୍ରତ୍ୟେକ ଗ୍ରାମର ଅଧିବାସୀମାନେ ଦ୍ୱିଧା ବା ତ୍ରିଧା ରାଜନୈତିକ ଆଦର୍ଶ ( ? ) ରେ ବିଭକ୍ତ । ନିଜର ଦଳାନୁଗତ୍ୟ ବାହାରେ କୌଣସି ସାମୁହିକ

ସ୍ୱାର୍ଥ ପାଇଁ ମଧ୍ୟ ସେମାନେ ପରସ୍ପର ସହଯୋଗ ନିମନ୍ତେ ପ୍ରସ୍ତୁତ ନାହାଁନ୍ତି। ପରିବେଶ ସଂକ୍ରାନ୍ତିୟ ସଚେତନତାର ଉଦ୍ରେକ ନିମନ୍ତେ ବହିର୍ଗତ ପଦଯାତ୍ରୀଦଳଙ୍କୁ ଏକାଧିକ ସ୍ଥାନରେ ଗ୍ରାମବାସୀମାନେ ପ୍ରଥମେ ପ୍ରଶ୍ନ କରୁଥାନ୍ତି: ଆପଣ ଅମୁକ ଦଳର ନା ସମୁକ ଦଳର ? ଗ୍ରାମ୍ୟ ଭାରତବର୍ଷ ଉପରେ ସାଂପ୍ରତିକ ରାଜନୀତିର ପ୍ରଭାବ ଏମନ୍ତ ଓ ଦୁର୍ଭାଗ୍ୟଜନକ ଯେ ତାହାହିଁ ଯେପରି ମଣିଷର ଇହଲୋକ- ପରଲୋକ ସମ୍ବଳିତ ସମଗ୍ର ଜୀବନର ଆଭିମୁଖ୍ୟ।ତଦୁପରେ, ଆଶୁ ଉପାର୍ଜନରେ ସୁଖ- ମରୀଚିକା ସମସ୍ତଙ୍କୁ ବିବେକଭ୍ରଷ୍ଟ କରିଦେଇଛି। ପ୍ରାୟ ତିରିଶ ବର୍ଷ ତଳର କଥା। ଭାରତର ଏକ କ୍ଷୁଦ୍ର ସମୃଦ୍ଧି ବସତିର ବୃକ୍ଷଲତା ଅଧ୍ୟୁଷିତ ସୀମାନ୍ତରେ ଏ ଲେଖକ ଦେଖିଥିଲା ସେ ବସତିର ମାନଦଣ୍ଡ ସ୍ୱରୂପ ଏକ ମନୋରମ ପାହାଡ଼। ଏ ଲେଖକ ପରବର୍ତ୍ତୀଥର ସେଠାକୁ ଯାଇ ଦେଖିବାବେଳକୁ ସେ ପାହାଡ଼ ସତେ ଅବା ସେ ବସତି ଆଡ଼େ ମୁଖ ବ୍ୟାଦାନ କରି ନୀରବରେ କ୍ରନ୍ଦନରତ। ତାର ସମ୍ମୁଖ କଳେବରରୁ ତାଡ଼ି ନିଆଯାଇଛି ତାର ବିପୁଳାଂଶ। ସଂଧ୍ୟାବେଳେ ସ୍ଥାନୀୟ ବିଶିଷ୍ଟ ଲୋକଙ୍କ ଗହଣରେ ବସିଥିବାବେଳେ ଏ ଲେଖକ ସେମାନଙ୍କୁ ପ୍ରଶ୍ନ କଲା: ଆପଣମାନେ କିପରି ଆପଣଙ୍କ ବସତିର ଏହି ଶୁଭଙ୍କର ପ୍ରାକୃତିକ ଆଶୀର୍ବାଦକୁ ଏମିତି ବିକଳ କରିଦେବାକୁ ପ୍ରଶୟ ଦେଲେ ? ତା ଉପରେ ଆକ୍ରାନ୍ତ ହେବା ମାତ୍ରେ ସାମାଜିକ, ନୈତିକ, ବା ଆଇନଗତ ବାଧା ଉପସ୍ଥାପନ କଲେ ନାହିଁ କିପରି ?

ବାସ୍ତବିକ ଚିନ୍ତାଦାୟକ। ସଲ୍ଲଜ ମୁଖଭାବ ଯୋଗେ ଏମିତି କିଛି ଅବୋଧ ମନ୍ତବ୍ୟ ଦେଲେ ସେମାନେ। ପରେ ମୋତେ ଜଣେ ସ୍ଥାନୀୟ ବଂଧୁ ବୁଝାଇଦେଲେ।, ସେହି ସଜ୍ଜନବୃନ୍ଦଙ୍କ ଗହଣରେ ଥିଲେ ବିଭୀଷିକାର କର୍ତ୍ତାବୃନ୍ଦ: ସ୍ଥାନୀୟ ହାକିମ, କଣ୍ଟ୍ରାକ୍ଟର ଇତ୍ୟାଦି।

ତେବେ ଏ ସମସ୍ତ ଗ୍ରାମ୍ୟଜନକ ପରିସ୍ଥିତିର ମୁକାବିଲା ନିମନ୍ତେ ନିକଟ ଅତୀତର ଆରମ୍ଭ ହୋଇଛି କିଛି ଆଶାଜନକ ସମାନ୍ତରାଳ ଅନ୍ଦୋଳନ। ସେସବୁ ମୃଦୁ ପ୍ରଚେଷ୍ଟା ଗ୍ରାମ୍ୟ ଜନତାର ବିବେକ ଓ ସଂଗୁପ୍ତ ସାହସର ପରିଚୟ ଦିଏ, ଉଦ୍‌ଭାସିତ କରେ ଆଶାର କ୍ଷୀଣ ଆଲୋକ। ପ୍ରଫେସର ହଜାରୀଙ୍କର ଏ ସଂକଳନ ଦୁର୍ଦ୍ଦଶାର ହାହୁତାଶମୟ ରଜନୀର ବୃତ୍ତାନ୍ତ ଉପସ୍ଥାପନ କରିବା ସଙ୍ଗେ ସଙ୍ଗେ ସାମୂହିକ ବିବେକର ଉଦୟସୂର୍ଯ୍ୟର ବାର୍ତ୍ତା ମଧ୍ୟ ପରିବେଷଣ କରେ।

ଓଡ଼ିଶାର ଜନଜୀବନରେ ଏ ଗ୍ରନ୍ଥ ଯଥାର୍ଥ ଭାବେ ତାର ଉଦ୍ଦିଷ୍ଟ ଭୂମିକା ତୁଲାଇବାରେ ସକ୍ଷମ ହେଉ। ଏ ଲେଖକ ଏହାହିଁ ଆନ୍ତରିକ କାମନା କରେ।

ଲେଖକଙ୍କୁ ଶ୍ରଦ୍ଧା ଏବଂ ପାଠକମାନଙ୍କୁ ଶୁଭେଚ୍ଛା ଜ୍ଞାପନ କରି ରହୁଛି।

୨୩. ୩.୨୦୧୫

(ମନୋଜ ଦାସ)

ଶ୍ରୀ ଅରବିନ୍ଦ ଆଶ୍ରମ, ପଣ୍ଡିଚେରୀ

# ପ୍ରାଗ୍‌ଭାଷ

ଓଡ଼ିଶାରେ ଶତକଡ଼ା ୮୦ ଭାଗ ଲୋକ ଗାଁ ରେ ରହନ୍ତି। ପ୍ରତି ଗାଁ ରେ ଅସୀମ ଲୋକଶକ୍ତି ରହିଛି। ଗୋଟିଏ ଗାଁ ଚାହିଁଲେ, ଗ୍ରାମର ପ୍ରଗତିରେ ସଂପୂର୍ଣ୍ଣ ବିପ୍ଳବ ଆଣିପାରେ। ଏ କଥା ସ୍ୱୀକାର୍ଯ୍ୟ ଯେ, କୌଣସି ଦେଶର ସରକାରଙ୍କର ଦେଶକୁ ଉନ୍ନତି କରିବାର ଶକ୍ତି ସୀମିତ। ଲୋକଶକ୍ତିର ଯଥାର୍ଥ ବିନିଯୋଗ ଦ୍ୱାରା ହିଁ ଜର୍ମାନୀ, ଜାପାନ, ଇସ୍ରାଏଲଇ ଆଦି ଦେଶ ଉନ୍ନତ ହୋଇଛନ୍ତି। ଗ୍ରାମର ଉନ୍ନତି ନହେଲେ ଭାରତର ଉନ୍ନତି ଅସମ୍ଭବ। ମଣିଷ ପ୍ରକୃତିର ସନ୍ତାନ। ତାର ବିକାଶ ଏପରି ହେବା ଉଚିତ, ଯେପରି ପ୍ରକୃତି ବକ୍ଷରେ କ୍ଷତ ସୃଷ୍ଟି ନହୁଏ। ପ୍ରକୃତି ବକ୍ଷରେ ବେଦନାସିକ୍ତ ଅଲିଭା ଗାର ପଡ଼ିଲେ, ସେ ହିଂସ୍ର ହୋଇ ଉଠିବ ଓ ତାର ପ୍ରତିଶୋଧ ନେବ। ମଣିଷ ତାର ପରିବେଷର ଅଲଂଘନୀୟ ନିୟମ ସଂପର୍କରେ ସଚେତନ ନହେଲେ ତାର ଧ୍ୱଂସ ଅବଶ୍ୟମ୍ଭାବୀ।

ପୃଥିବୀର ୯୦ ପ୍ରତିଶତ ବଣ୍ୟ ସଂପଦ ନଷ୍ଟ ହୋଇ ସାରିଲାଣି। ଭାରତରେ ଆଉ ୯ ପ୍ରତିଶତ ଅରଣ୍ୟ ରହିଛି। କିନ୍ତୁ ସ୍ଥଳ ଭାଗର ଏକ ତୃତୀୟାଂଶ ଜଙ୍ଗଲ ରହିବା କଥା। ରାଜନେତା, ପ୍ରଶାସନ ଓ ମାଫିଆଗୋଷ୍ଠୀଙ୍କର ସଲାସୁତୁରାରେ ଜଙ୍ଗଲ ସାହାଣ ମେଲା ହୋଇଯାଇଛି। ସରକାର ଶିଳ୍ପପତିଙ୍କ ସ୍ୱାର୍ଥ ପାଇଁ ବ୍ୟବସାୟିକ ଜଙ୍ଗଲ ଉପରେ ପ୍ରାଧାନ୍ୟ ଦେଉଛନ୍ତି। ଜଙ୍ଗଲ, ଜଳ, ଜମି ଲୋକଙ୍କର। ଯେଉଁଦିନ ଲୋକେ ଜଙ୍ଗଲ ରକ୍ଷା କରିବେ ସେଦିନ ଜଙ୍ଗଲ ରକ୍ଷା ହେବ। ଜଙ୍ଗଲ ହଜାର ହଜାର ବର୍ଷ ଧରି ଲୋକଙ୍କର ଥିଲା। ଉନବିଂଶ ଶତାବ୍ଦୀର ୮୦ଦଶକରେ ବ୍ରିଟିଶ ସରକାର ଆଇନ କଲେ ଯେ ଜଙ୍ଗଲ ସରକାରଙ୍କର। ଫଳରେ ଜଙ୍ଗଲ ପ୍ରତି ଲୋକଙ୍କର ମମତା ତୁଟିଗଲା। ଜଙ୍ଗଲ ବିରୋଧି ମନୋବୃତ୍ତି ଲୋକଙ୍କମନରେ ସୃଷ୍ଟି ହେଲା।

ଗ୍ରାମୀଣ ଜୀବନ ଓ ଚଳଣିର ବିଲୁପ୍ତି ଘଟିବାରେ ଲାଗିଛି। ସାମାଜିକ, ଆର୍ଥିକ, ସାଂସ୍କୃତିକ, ମାନବିକ, ନୈତିକ, ଆଧ୍ୟାତ୍ମିକ ଦିଗରୁ ଗାଁ ଗୁଡ଼ିକର ମହକ କମିବାରେ ଲାଗିଛି। ସହରାଭିମୁଖୀ ଦୃଷ୍ଟିକୋଣ ବଢ଼ିଛି। ରାମାୟଣ, ମହାଭାରତ, ଭାଗବତର ଆଦର କମିବାରେ ଲାଗିଛି। ଅଶ୍ଳୀଳତା, ହିଂସା, ଭୋଗବାଦର ଜୀବନଚର୍ଯ୍ୟା ଲୋକଙ୍କୁ ଆକର୍ଷିତ

କରିବାରେ ଲାଗିଛି। ଅନ୍ୟ ଦେଶର ସହର ଓ ଆମ ଦେଶର ସହର ମଧ୍ୟରେ ବିଶେଷ କିଛି ପ୍ରଭେଦ ନାହିଁ। ସବୁ ନଗର ଭୋଗବାଦ, ସ୍ୱାର୍ଥପରତା ଓ ସ୍ନେହ କାଙ୍ଗାଳର ସଭ୍ୟତା ବହନ କରେ। ଭାରତ ବା ଯେ କୌଣସି ଦେଶର ସ୍ୱାତନ୍ତ୍ର୍ୟ ଗାଁରେ ରହିଛି। ଗ୍ରାମରେ ବରଣୀୟ ଆବେଗ ରହିଛି। ଗ୍ରାମ ନିଶ୍ଚିହ୍ନ ହେଲେ, ଦେଶର ସ୍ୱାତନ୍ତ୍ର୍ୟ, ସ୍ୱକୀୟତା ଓ ଆତ୍ମାର ସମାଧି ଘଟିବ।

ବୃଦ୍ଧଗ୍ରାମ (କେଶରପୁର) ନୟାଗଡ଼ ଜିଲ୍ଲାର ୧୦୦୦ ଲୋକସଂଖ୍ୟା ବିଶିଷ୍ଟ ଏକ କ୍ଷୁଦ୍ର ଗ୍ରାମ। ଏହା ଭୁବନେଶ୍ୱର ଠାରୁ ୧୦୦ କି.ମି ଓ ନୟାଗଡ଼ ସହରଠାରୁ ୧୧ କି.ମି ଦୂରରେ ଅବସ୍ଥିତ। ଏହି ଗ୍ରାମରୁ ୧୯୫୪ ମସିହାରୁ ଗ୍ରାମ ସଂଗଠନ ଆନ୍ଦୋଳନ ଆରମ୍ଭ ହୋଇ, ଶିକ୍ଷା ଜରିଆରେ, ପରିବେଶ ଆନ୍ଦୋଳନ ୧୯୭୨ ମସିହାରୁ ଆରମ୍ଭ ହେଲା। ଏହି ପରିବେଶ ଆନ୍ଦୋଳନ ନୟାଗଡ଼ ଜିଲ୍ଲାର ୮ଟି ଯାକ ବ୍ଲକରେ ପ୍ରାୟ ୧୫୦୦ ଗ୍ରାମରେ ପ୍ରସାରିତ। ଏହି ଗ୍ରାମରେ 'ବୃକ୍ଷ ଓ ଜୀବର ବଂଧୁ ପରିଷଦ' ନାମକ ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ୧୯୮୨ମସିହାରୁ ରହିଛି। ଗାଁଟି ବୁଦ୍ଧଗିରି ପର୍ବତର ପାଦଦେଶରେ। ବୁଦ୍ଧଗିରି ଓ ମାଳତୀ ପାହାଡ଼ ଚାରିପଟେ ୨୨ଟି ଗ୍ରାମକୁ ନେଇ, 'ବୃକ୍ଷ ଓ ଜୀବର ବଂଧୁ' ନାମକ ଅହିଂସା ଓ ପ୍ରେମ ଉପରେ ପ୍ରତିଷ୍ଠିତ ଏହି ସ୍ୱେଚ୍ଛାସେବୀ ଅନୁଷ୍ଠାନ ପରିବେଶ ସୁରକ୍ଷାରେ ଆନ୍ତରିକତା ଓ ଜନଚେତନା ସୃଷ୍ଟିଯୋଗୁଁ ୧୯୮୬ମସିହାରେ ଓଡ଼ିଶା ସରକାରଙ୍କ ପକ୍ଷରୁ 'ପ୍ରକୃତି ମିତ୍ର' , ଭାରତ ସରକାରଙ୍କ 'ବୃକ୍ଷମିତ୍ର', ୧୯୮୯ ରେ ଜାତିସଂଘର 'ପୃଥିବୀ ପରିବେଶ ପୁରସ୍କାର' ଲାଭ କରିଛି। ଏ ସମସ୍ତ ପୁରସ୍କାର ଲାଭ କରିବାରେ ଏ ଅନୁଷ୍ଠାନ ଓଡ଼ିଶାରେ ପ୍ରଥମ।

ବୁଦ୍ଧଗ୍ରାମ ପରିବେଶ ଆନ୍ଦୋଳନ କେବଳ ପରିବେଶ ସଂରକ୍ଷଣ ଓ ପର୍ଯ୍ୟାବରଣର ଉନ୍ନତି ପାଇଁ ନୁହେଁ, ସମାଜର ଆର୍ଥନୀତିକ, ସାମାଜିକ, ରାଜନୀତିକ, ସାଂସ୍କୃତିକ, ମାନବିକ, ନୈତିକ ଓ ସର୍ବୋପରି ଆଧ୍ୟାତ୍ମିକ ବିକାଶ ସାଧନ ଏହାର ଲକ୍ଷ୍ୟ। ଜଙ୍ଗଲ ସୁରକ୍ଷା, ବୃକ୍ଷରୋପଣ, କୃଷି ଓ ଜଳସେଚନର ନିରବଚ୍ଛିନ୍ନ ବିକାଶ, ଜୈବିକ ସାର, ପରିବାର ନିୟନ୍ତ୍ରଣ, ଶିକ୍ଷା, ସ୍ୱାସ୍ଥ୍ୟସେବା, ନିଶା ନିବାରଣ, ଅସ୍ପୃଶ୍ୟତା ଦୂରୀକରଣ, ଯୌତୁକ ପ୍ରଥାର ନିରାକରଣ, ମହିଳା ବିକାଶ, କୁଟୀର ଶିଳ୍ପର ପୁନରୁଦ୍ଧାର, ଆୟର ପନ୍ଥା ନିର୍ଦ୍ଧାରଣ, ଥାନା ଓ କୋର୍ଟକୁ ନଯାଇ ବିବାଦକୁ ଗ୍ରାମରେ ତୁଟାଇବାର ବ୍ୟବସ୍ଥାକରିବା, ସରକାରୀ ସାହାଯ୍ୟ ଉପରେ ବିଶେଷ ନିର୍ଭର ନକରି ସ୍ୱକୀୟ ଉଦ୍ୟମରେ ଗ୍ରାମରେ ପ୍ରଗତି ପାଇଁ ପଦକ୍ଷେପ ନେବାକୁ ଏବଂ ସର୍ବୋପରି ଗ୍ରାମ ପୁନର୍ଗଠନ ଆଦି ଏହି ଆନ୍ଦୋଳନର ବହୁମୁଖୀ ଲକ୍ଷ୍ୟ।

୧୯୭୮ ମସିହାରେ ବୁଦ୍ଧଗ୍ରାମର ଲୋକେ ଠେଙ୍ଗାପାଳି କଲେ। ଦୁଇଜଣ ଠେଙ୍ଗା ହାତରେ ଧରି ଜଙ୍ଗଲ ସାରା ବୁଲି, ଜଙ୍ଗଲର ସୁରକ୍ଷା କରି ସଂଧ୍ୟାରେ ଗ୍ରାମକୁ

ଫେରନ୍ତି । ଛେଳିମାନେ ବୃକ୍ଷଲତାର ପରମଶତ୍ରୁ । ଗ୍ରାମବାସୀ ଏକ ସାହସିକ ଓ ଅଭୂତପୂର୍ବ, ପଦକ୍ଷେପ ନେଇ ଛେଳିସବୁ ବିକ୍ରି କରିଦେଲେ । ତା ଫଳରେ ହଜାର ହଜାର ଗଛ ଉଠିଲା ଓ ପର୍ବତ ଅରଣ୍ୟ ପୁଣି ପରିପୂର୍ଣ୍ଣ ହେଲା । ବର୍ଷର ପ୍ରାୟ ତିନିଥର (ଶୀତଦିନ ପୂର୍ବରୁ, ଶୀତଦିନ ପରେ ଓ ଖରାଦିନରେ)ବିଭିନ୍ନ ଗ୍ରାମଗୁଡ଼ିକରେ ପଦଯାତ୍ରା ହୁଏ । ବୁଦ୍ଧଗ୍ରାମରେ ଏକ ଅଦ୍ୱିତୀୟ ଅନୁପମ ରାଜନୈତିକ ବ୍ୟବସ୍ଥା ପ୍ରଚଳିତ । ସୁଦୂର ଯୁକ୍ତରାଷ୍ଟ୍ର ଆମେରିକା, ବିଲାତ, ଜର୍ମାନୀ,ସ୍ୱୀଡ଼େନ୍, ଇଣ୍ଡୋନେସିଆ ଆଦି ଦେଶରୁ ସମାଜସେବୀମାନେ ବୁଦ୍ଧଗ୍ରାମକୁ ଆସି ଏହି ବ୍ୟବସ୍ଥାର ଉଚ୍ଚପ୍ରଶଂସା କରିଛନ୍ତି । ୧୯୬୧ ମସିହାରୁ ଏହି ଗ୍ରାମରେ ପ୍ରତିବର୍ଷ ସାବାଳକ(୧୮ ବର୍ଷ) ଭୋଟ ଦେଇ ଲୋକ ପ୍ରତିନିଧି ନିର୍ବାଚନ କରିବା ବ୍ୟବସ୍ଥା ରହି ଆସିଛି । ନିର୍ବାଚନରେ ଗୁପ୍ତ ମତଦାନର ବ୍ୟବସ୍ଥା ରହିଛି । ଗ୍ରାମବାସୀ ପ୍ରତିବର୍ଷ ୫ଜଣ ପ୍ରତିନିଧିଙ୍କୁ ଗ୍ରାମ ଚଳାଇବା ଓ ଗ୍ରାମ ବିକାଶ ପାଇଁ ନିର୍ବାଚନ କରନ୍ତି ।

ଓଡ଼ିଶାର ଗ୍ରାମପଞ୍ଚାୟତ ଗୁଡ଼ିକ ଗୋଟିଏ ଗୋଟିଏ ମୌଳିକ ଏକକ ଅନୁଷ୍ଠାନ ରୂପରେ କାର୍ଯ୍ୟକରିପାରୁନାହିଁ । ଗ୍ରାମର ଲୋକମାନେ ପ୍ରତ୍ୟେକ୍ଷ ଭାବରେ ଗ୍ରାମ ପଞ୍ଚାୟତ ଶାସନ କ୍ଷେତ୍ରରେ ଅଂଶ ଗ୍ରହଣ କରିବାକୁ ସୁଯୋଗ ପାଉନାହାନ୍ତି । କେତେଗୁଡ଼ିଏ ଗ୍ରାମକୁ ନେଇ ହୋଇଥିବା ପଞ୍ଚାୟତକୁ ଗ୍ରାମବାସୀ ନିଜର କରିପାରୁନାହାନ୍ତି । ପ୍ରତି ଗାଆଁରେ ପଞ୍ଚାୟତ ହେବା ଦ୍ୱାରା ଗ୍ରାମବାସୀଙ୍କ ଉପରେ ପ୍ରତ୍ୟେକ୍ଷ ନିୟନ୍ତ୍ରଣ ରହିବ । ଗ୍ରାମବାସୀ ମାନଙ୍କର ଚାହିଦା ପଞ୍ଚାୟତ ଅନାୟାସରେ ଜାଣିପାରିବ । ହନୁମାନ୍ତାୟାଙ୍କ ଅଧକ୍ଷତାରେ ଗଠିତ ପ୍ରଶାସନିକ ସଂସ୍କାର ଆୟୋଗ ୧୯୬୬-୭୦ ରେ ପଞ୍ଚାୟତି ରାଜ ସଂପର୍କରେ ରିପୋର୍ଟ ଦେଇ କହିଛନ୍ତି - ସାଧାରଣତଃ ପ୍ରତି ଗ୍ରାମରେ ପଞ୍ଚାୟତ ରହୁ ।

୧୯୮୪ ଜୁନ୍ ମାସରେ ବିଭିନ୍ନ ଗ୍ରାମରେ ପଦଯାତ୍ରା କଲାବେଳେ ଲେଖକ ଭାଗଚାଷୀ ବ୍ୟବସ୍ଥା (ବୁଦ୍ଧଗ୍ରାମ ଓ କେତେକ ଗ୍ରାମରେ ଜମି ମାଲିକ ଦୁଇ ଭାଗ ଓ ଭାଗଚାଷୀ ଏକ ଭାଗ ଧାନ ପାଇବା)ରୁ ଭାଗଚାଷୀଙ୍କର ଦୟନୀୟ ଆର୍ଥିକ ଅବସ୍ଥା ସ୍ୱଚକ୍ଷୁରେ ଦେଖିଥିଲା । ୧୯୬୦ ମସିହାରେ ଏକ ବିଧବା ବିବାହର ସଂପୃକ୍ତିକୁ ନେଇ, ଆମ ଜାତିର ବଡ଼ ପଣ୍ଡାମାନେ ଲେଖକ ଓ ଅନ୍ୟ କେତେକ ଉଦ୍ୟୋକ୍ତାଙ୍କୁ ଜାତିରୁ ବାହାର କରିବାକୁ ମସୁଧା କଲେ ।

ଜଣେ ହରିଜନ ଘରେ ଖାଇବାକୁ ଠିକ୍ କରିବାରୁ, ଗାଁ ହୁଲସ୍ଥୁଳ ହେଲା । ହରିଜନକୁ ଡାକି ଧମକ ଦିଆଗଲା, ତାଙ୍କୁ (ଲେଖକଙ୍କୁ) ଖାଇବାକୁ ଦେଇପାରିବୁ ନାହିଁ" । ମୁଁ ଅବିଚଳ ରହିଲି । ଖାଇଲି ଏବଂ ଗାଁ ଦାଣ୍ଡରେ ଚାଲି ଚାଲି ଆସିଲି । ମୋର ପଛପଟୁ ମୋତେ ପଥର ମାଡ଼ ହେଲା କିନ୍ତୁ କୌଣସିଟି ମୋ ଦେହରେ ବାଜିଲା

ନାହିଁ। ଶେଷରେ ମୋତେ ଜାତିରୁ ବାହାର କରାଗଲା। ଦଳିତମାନେ ଗାଁର ନଳକୂପରୁ ପାଣି ନେବାକୁ କେନ୍ଦ୍ରକରି ସବର୍ଣ୍ଣମାନଙ୍କ ମଧ୍ୟରେ ତୀବ୍ର ପ୍ରତିକ୍ରିୟା ଦେଖାଦେଲା। ଗ୍ରାମ ସଭାରେ ଲେଖକ ଦଳିତ(ହରିଜନ)ଙ୍କ ପ୍ରତି ହୋଇଥିବା ଅନ୍ୟାୟରେ ଗଭୀର ଦୁଃଖ ପ୍ରକାଶ କରି କହିଲା ଯେ, ଯଦି ନଳକୂପରୁ ଦଳିତ(ହରିଜନ)ମାନଙ୍କୁ ପାଣି ଦିଆଯିବ ନାହିଁ, ତେବେ ତାର ଦେହାନ୍ତ ହେବା ପରେ ଜଣେ ଦଳିତ(ହରିଜନ) ତାର ମୁଖାଗ୍ନି ଦେବ।

ବୁଦ୍ଧଗ୍ରାମ ପରିବେଶ ଆନ୍ଦୋଳନ ୧୯୭୨ମସିହାରୁ ଆରମ୍ଭ ହୋଇ ବହୁ ଉତ୍‌ଥାନ,ପତନ ମଧ୍ୟରେ ଗତିକରି ଆସିଛି। ଆନ୍ଦୋଳନକୁ ବରାବର ସ୍ୱାର୍ଥାନ୍ଧ, ସଂକୀର୍ଣ୍ଣମନା ଓ ପ୍ରତିକ୍ରିୟାଶୀଳ ଶକ୍ତିମାନର ସମ୍ମୁଖୀନ ହେବାକୁ ପଡ଼ିଛି। ଏହି ଆନ୍ଦୋଳନର ସାରଥିମାନେ ବିଃଶ୍ୱାସ କରନ୍ତି ଯେ, ଦୁଃଖୀ, ଦରଦ୍ରଙ୍କର ସେବା ହିଁ ଇଶ୍ୱର ସେବା। ଏହି ବିଃଶ୍ୱାସ ସେମାନଙ୍କ ହୃଦୟରେ ଆଲୋକର ପ୍ରଦୀପ ଜଳାଇ ରଖିଛି। ଜଙ୍ଗଲ ସଂରକ୍ଷଣ ପାଇଁ ଆକର୍ଷଣୀୟ ଆୟୁଧ ହେଉଛି ପଦଯାତ୍ରା। ଗ୍ରାମବାସୀ ଓ ପଦଯାତ୍ରୀଙ୍କ ଉପରେ ଏହାର ନାଟକୀୟ ପ୍ରଭାବ ପରିଲକ୍ଷିତ ହୁଏ। ପଦଯାତ୍ରା ମାଧ୍ୟମରେ ସଚେତନତା ସୃଷ୍ଟି କରିବାର ଅସ୍ତ୍ର କାଟୁ ନକଲେ, ସେମାନଙ୍କୁ ଅନୁରୋଧ ଓ ଅନଶନ କରାଯାଇ କାର୍ଯ୍ୟକ୍ରମରେ ସଂପୃକ୍ତ କରାଯାଏ।

୧୯୯୮ ଏପ୍ରିଲ ମାସ ଠିକ୍ ପୂର୍ବରୁ ମୁଁ ଆମ ଗାଁଠାରୁ ୪ କି.ମି ଦୂର ଶଙ୍ଖେଇ ଗ୍ରାମକୁ ଏକାକୀ ପଦଯାତ୍ରାରେ ଯାଇଥିଲି। ସେତେବେଳକୁ ମୋର ବୟସ ୬୨ବର୍ଷ। ସେହିଗ୍ରାମରେ ବିବାଦୀୟ ପରିସ୍ଥିତି ଥିବାଯୋଗୁଁ ତିନିଦିନ ଅନଶନ କରିଥିଲି। ଭାଗବତ ଘରେ ରହୁଥିଲି। ଗାଁ ମୁଣ୍ଡକୁ ପରିସ୍ରା କରିବାପାଇଁ, ଗୋଟିଏ ଅଣଓସାରିଆ ହିଡ଼ରେ ଗଲାବେଳେ ପାଦ ଥରୁଥିବାରୁ ଡାହାଣପଟ ବିଲରେ ପଡ଼ିଗଲି। ପାଦରେ ଖଜୁରୀ କଣ୍ଟା ପଶିଗଲା। ରାତିସାରା ଭାଗବତ ଘରେ ଯନ୍ତ୍ରଣାରେ ଛଟପଟ ହୋଇ ଶୋଇ ପାରିଲି ନାହିଁ। ସକାଳେ ଗାମବାସୀ ଭଣ୍ଡାରୀ ଡକାଇଲେ। ସେ ପାଦ ଖୋଳିଲା। କିନ୍ତୁ କଣ୍ଟା ବାହାର କରିପାରିଲାନାହିଁ। ତା ପରେ ମୋତେ ନୟାଗଡ଼ ଡାକ୍ତରଖାନାକୁ ଅଣାଗଲା। ଡାକ୍ତର କଂଛି କଣ୍ଟା ବାହାର କଲେ। ତାପରେ ଖୋରଧା ଆସିଲି। ଡାକ୍ତରଖାନାରେ ଆଉ କିଛି କଣ୍ଟା ବାହାର କରାଗଲା। ତାପରେ ନାଗାଲାଣ୍ଡ ଆସିଲି। ନାଗାଲାଣ୍ଡ ର ମୋକକ୍‌ଚଙ୍ଗରେ ପରିଦର୍ଶକ ପ୍ରଫେସର ଥିବା ଯୋଗୁଁ ସେଠାକୁ ଫେରିଲି। ଚାରିମାସ ପରେ ପାଦର କଷ୍ଟ ଅସହ୍ୟ ହେବାରୁ, ଡାକ୍ତରଖାନା ଗଲି। ଡାକ୍ତର ଡାହାଣ ଗୋଡ଼ ବହୁତ ଚିପିବାରୁ ଦେଢ଼ ଇଞ୍ଚର ମୋଟା କଣ୍ଟା ବାହାରିଲା। ବାମଗୋଡ଼ ଅପରେସନ୍ କଲେ।

ଥ, ରକ୍ତପଥର ହୋଇଯାଇଥିଲା। କଣ୍ଟା ବାହାରକୁ ଆସି ପାରିଲା ନାହିଁ। ଗୋଟିଏ ମୟରେ ପାଞ୍ଚ ଦିନିଆ ଅନଶନ କରିଛି। ଅନଶନ ବେଳେ ଗ୍ରାମର ଭାଗବତ ଘରେ ହେ ଓ ଦିନକୁ ସକାଳ ଓଳି ଗୋଟିଏ ଗ୍ଲାସ ଓ ଉପର ଓଳି ଗୋଟିଏ ଗ୍ଲାସ ଲେମ୍ବୁ ରସ ଶାଇ ଗୁଡ଼ ପଣାପିଏ। ବୁଦ୍ଧଗ୍ରାମର ଚତୁଃପାର୍ଶ୍ୱର ଗ୍ରାମ ମାନଙ୍କରେ ତିନିଥର ଭାଗବତ ପାଠ ଶେଷ ହୋଇଥିଲା। ପ୍ରଥମ ଥର ଭାଗବତ ପାଠ ୧ ୨ଦିନରେ, ଦ୍ୱିତୀୟ ଥର ୨୫ ଦିନରେ ଏବଂ ତୃତୀୟଥର ୩୦ ଦିନରେ ଶେଷ ହୋଇଥିଲା। ଦେହରେ କେବଳ ଧୋତି ଓ ଗାମୁଛା ଥାଏ। ସବୁଥର ମୋର ପଡ଼ୋଶୀ ଗ୍ରାମର ଚାରିଜଣ ମୋ ସହ ବିଶ୍ରାମ ନେଉଥିଲେ। ତାଙ୍କ ସାଥିରେ ଆଧ୍ୟାତ୍ମିକ,ପରୋପକାର ବିଷୟରେ ଆଲୋଚନା କରୁ କରୁ ରାତି ପାହିଗଲା। ସମଗ୍ର ରାତି ବିନିଦ୍ର ଥିଲୁ।

ନୟାଗଡ଼, ଗଞ୍ଜାମ, ଫୁଲବାଣୀ ଓ ଖୋର୍ଦ୍ଧା ଜିଲ୍ଲାର ପ୍ରାୟ ୨୦୦୦ଗ୍ରାମରେ ପଦଯାତ୍ରା ଓ କର୍ମଶାଳା କରି ବୁଦ୍ଧଗ୍ରାମ ପରିବେଶ ଆନ୍ଦୋଳନର ବାର୍ତ୍ତା ପହଞ୍ଚାଇବା ପାଇଁ କାର୍ଯ୍ୟ କରି ଆସିଛି। କେତେକ ଗ୍ରାମରେ ଏକାକୀ ମଧ୍ୟ ପଦଯାତ୍ରା କରିଛି। ଅନୁଭବକୁ ଆସିଛି, ସବୁଠୁ ଅଧିକ ପାଠୁଆ, ସବୁଠୁ ଅଧିକ ଭୋଗବିଳାସ ସର୍ବସ୍ୱ ଓ ହିଂସ୍ର। ଅଧିକ ସ୍ୱଚ୍ଛଳ ମଣିଷ ଅଧିକ ଶୋଷଣ କରୁଛି ନପାରିଲା ବୁଭୁକ୍ଷୁମାନଙ୍କୁ। ଆକାଶରୁ ଢଳୁଛି ପଡୁଛି ଶିଳ୍ପ ଓ ନଗରସଭ୍ୟତାର ବିଷ। ଚେତନା ନିର୍ବାସିତ ହେବାରେ ଲାଗିଛି। ବିରଳ ହୋଇଚାଲିଛନ୍ତି ସଂକଳ୍ପ, ତ୍ୟାଗ, ସାଧନା, ସେବା, ତପସ୍ୟା ଓ ମୂଲ୍ୟବୋଧର ମଣିଷମାନେ।

ବୁଦ୍ଧଗ୍ରାମକୁ ଯୁକ୍ତରାଷ୍ଟ୍ର ଆମେରିକା, କାନାଡ଼ା, ବିଲାତ, ଫ୍ରାନ୍ସ, ଜର୍ମାନୀ, ସ୍ୱୀଡ଼େନ, ନରୱେ ,ଋଷିଆ, ଜାପାନ, ଇଣ୍ଡୋନେସିଆ, ଆଫ୍ରିକା ଆଦି ଦେଶରୁ ପରିବେଶପ୍ରେମୀମାନେ ଆସି ପ୍ରେରଣା ଲାଭ କରିଛନ୍ତି। ପରିବେଶ ସଂରକ୍ଷଣ ପାଇଁ ନିରବଚ୍ଛିନ୍ନ ସାଧନା କରିଥିବା, ଗଂଗା ନଦୀର ତେହେରୀ ବଂଧକୁ ବିରୋଧ କରୁଥିବା ଯମୁନା ଲାଲ ବଜାଜ୍ ଓ ମାଗାସାସୀ ପୁରସ୍କାର ଲାଭ କରିଥିବା ଶ୍ରୀଯୁକ୍ତ ସୁନ୍ଦରଲାଲ ବହୁଗୁଣା ବୁଦ୍ଧଗ୍ରାମରେ ଅଞ୍ଚଳର ୯ଟି ଗ୍ରାମ ପରିଦର୍ଶନ କରିଥିଲେ। ୨୦୦୨ ମସିହା ଅକ୍ଟୋବର ୧୧ତାରିଖରେ କିଶନ ପଟ୍ଟନାୟକଙ୍କର ସାମଗ୍ରିକ କୃତି ଓ ସମାଜସେବା ପାଇଁ ବୁଦ୍ଧଗ୍ରାମ ସ୍ୱର୍ଣ୍ଣ ପଦକ ପ୍ରଦାନ କରିଥିଲା। ଅନ୍ୟ ଯେଉଁମାନେ ସମ୍ମାନୀତ ହୋଇଥିଲେ, ସେମାନେ ହେଲେ ଜ୍ଞାନମଣ୍ଡଳର ଲେଖକ ଶ୍ରୀ ବିନୋଦ କାନୁନ୍‌ଗୋ, ଯଶସ୍ୱୀ ଔପନାସିକ ଶ୍ରୀ ଗୋପୀନାଥ ମହାନ୍ତି, ବୁଦ୍ଧଗ୍ରାମର ଗ୍ରାମବାସୀ ଉଦୟନାଥ ଖଟେଇ, ବୁଦ୍ଧଗ୍ରାମର ସ୍ୱେଚ୍ଛାସେବୀ ଭିକ୍ଷାକାରୀ ହଜାରୀ ଓ ନୟାଗଡ଼ ରଙ୍ଗଣୀପାଟଣା ଗ୍ରାମର ପରିବେଶବିତ୍ ଅଧ୍ୟାପକ ରାଧାମୋହନ।

ବିଭିନ୍ନ ସରକାରୀ ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରିବା ମୋର ବୃତ୍ତିଥିଲା ଅଥଚ ଛାତ୍ର ଜୀବନରୁ ଗ୍ରାମ ପୁନର୍ଗଠନ , ଜଙ୍ଗଲ ସଂରକ୍ଷଣ ଓ ପର୍ଯ୍ୟାବରଣ କାର୍ଯ୍ୟରେ ସଂପୃକ୍ତ ରହିବା ବ୍ରତ ଥିଲା।

ଅନେକ ମଧୁର, ତିକ୍ତ ଅନୁଭୂତି ମିଳିଛି। କେବେ କେବେ ଗ୍ରାମବାସୀମାନଙ୍କର ତାଚ୍ଛଲ୍ୟ, ଭର୍ତ୍ସନା ଓ ଟେକାପଥର ମାଡ଼କୁ ସାମ୍ନା କରିଛି ଓ କେବେ କେବେ କଂଗ୍ରେସ ନା ଜନତା ଦଳର ପ୍ରଚାର ଚାଲୁଛି ପ୍ରଶ୍ନରେ ନିରୁତ୍ତର ରହିଛି। ଅନେକ ଗ୍ରାମରେ ଗ୍ରାମବାସୀମାନଙ୍କର ସ୍ୱାଗତ ଓ ଅଭ୍ୟର୍ଥନା ଶାରୀରିକ ପୀଡ଼ା, ଦୁଃଖ ଓ ଆକାଂକ୍ଷାକୁ ଦୂରେଇଦେଇଛି। ଅନେକ ସମୟରେ ଘରକୁ ଫେରିବା ବାଟରେ ଲାଗିଛି ଯେମିତି ମୋ ନିଜ ଶବକୁ ନିଜ କାଂଧରେ ବୋହି ଫେରୁଛି। ଭାବିଛି, କିଏ କାହାର ସେବା ଂରୁଛି ? ସମସ୍ତ ସେବା ନିଜର। ଯେଉଁମାନେ ସେବାର ସୁଯୋଗ ଦେଇଛନ୍ତି, ଯେମାନଙ୍କ ପ୍ରତି କୃତଜ୍ଞ ହେବା ଉଚିତ୍। ଗ୍ରୀକ୍ ଦାର୍ଶନିକ ସକେଟ୍ରିସ୍ ସମାଜ ସଂସ୍କାର କରିବାକୁ ଯାଇ ରାଷ୍ଟ୍ରଦୋହ ଅଭିଯୋଗରେ ଅଭିଯୁକ୍ତ ହୋଇଥିଲେ। ଯୀଶୁଖ୍ରୀଷ୍ଟ ସମାଜରେ ପ୍ରେମର ବାର୍ତ୍ତା ପ୍ରଚାର କରି କୃଶବିଦ୍ଧ ହୋଇଥିଲେ। ଗାଲିଲିଓଙ୍କର ବୈଜ୍ଞାନିକ ତଥ୍ୟ ବିଭ୍ରାନ୍ତିକର ବୋଲି ଶାସକଗୋଷ୍ଠୀ ଅଭିଯୁକ୍ତ କରି ମୃତ୍ୟୁଦଣ୍ଡ ଦେଇଥିଲେ। ଆବ୍ରାହମ ଲିଙ୍କନ କ୍ରୀତଦାସ ପ୍ରଥାର ଉଚ୍ଛେଦ କରି ନିଜର ଜୀବନ ବିସର୍ଜନ କରିଥିଲେ। ମହାତ୍ମାଗାନ୍ଧୀ ହିନ୍ଦୁ-ମୁସଲମାନ ଭାତୃତ୍ୱ ପ୍ରତିଷ୍ଠା ପାଇଁ ପ୍ରାଣପାତ କରିଥିଲେ। ଏମିତି ଅନେକ ନଜିରର ଅଭାବ ନାହିଁ। 'ଗ୍ରାମେ ଗ୍ରାମେ ପରିବେଶ' ରେ ସଂକଳିତ ହୋଇଥିବା ପ୍ରତ୍ୟେକଟି ଲେଖା ଦୈନିକ ଖବରକାଗଜ ଓ ବିଭିନ୍ନ ପତ୍ରପତ୍ରିକା ମାନଙ୍କରେ ପ୍ରକାଶିତ। ଏହି ଅବସରରେ ସେହି ସହୃଦୟ ସଂପାଦକ ମାନଙ୍କୁ ମୋର କୃତଜ୍ଞତା ଜ୍ଞାପନ କରୁଛି। ସରସ୍ୱତୀ ସମ୍ମାନ, ଶାରଳା ସାହିତ୍ୟ ସମ୍ମାନ ଓ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ ଲବ୍ଧ ପ୍ରତିଷ୍ଠିତ ଯଶସ୍ୱୀ ସାହିତ୍ୟିକ , ପ୍ରଥିତଯଶା, ପଦ୍ମଶ୍ରୀ ଶ୍ରୀଯୁକ୍ତ ମନୋଜ ଦାସ ପାଣ୍ଡୁଲିପି ପାଠକରି ସ୍ୱକୀୟ ଅଭିମତ ପ୍ରଦାନ କରିଥିବାରୁ ତାଙ୍କ ନିକଟରେ ଋଣୀ।

ପଦଯାତ୍ରାରେ ଯୋଗଦେଇଥିବା ଓ ବିଭିନ୍ନ ଲେଖାଗୁଡ଼ିକର ପ୍ରସ୍ତୁତି ଓ ପ୍ରକାଶନରେ ଅନେକ ସମୟ ଦେଇ ମୋତେ ସହଯୋଗ କରିଥିବା ମୋର ସାନଭାଇ ଉତ୍କଳ ବିଶ୍ୱବିଦ୍ୟାଳୟ ରାଜନୀତି ବିଜ୍ଞାନ ବିଭାଗର ପ୍ରାକ୍ତନ ପ୍ରାଧ୍ୟାପକ ଡ଼କ୍ଟର ସୁବାସ ଚନ୍ଦ୍ର ହଜାରୀ ତଥା ଶ୍ରଦ୍ଧେୟ ଛାତ୍ର, ଅଧୁନା ବେଗୁନିଆ ମହାବିଦ୍ୟାଳୟ ରାଜନୀତି ବିଜ୍ଞାନ ବିଭାଗର ମୁଖ୍ୟ ଅଧ୍ୟାପକ ଡ଼କ୍ଟର ଶରତ କୁମାର ଦୋରାଙ୍କୁ ମୋର ଶ୍ରଦ୍ଧା ଜଣାଉଛି। ତାଙ୍କ ବିନା ସାହାଯ୍ୟ, ସହାଚର୍ଯ୍ୟରେ ଏ ପୁସ୍ତକ ପ୍ରକାଶିତ ହୋଇପାରିନଥାନ୍ତା।

ଏ ସମସ୍ତ କାର୍ଯ୍ୟକ୍ରମର ଗୁଣମୁଗ୍‌ଧ ପ୍ରଶଂସକ, ପଦଯାତ୍ରାରେ ମୋ ସହ ସାମିଲ୍ ହୋଇଥିବା ପରିବେଶବିତ୍ ପ୍ରଫେସର ରାଧାମୋହନ ଓ ସାହିତ୍ୟିକ, ପରିବେଶବିତ୍ ଅଭୟ ସିଂହଙ୍କ ପ୍ରେରଣା ଅଭୁଲା ରହିବ।

ପୁସ୍ତକଟିର ପ୍ରକାଶନ ପାଇଁ ଆଗ୍ରହର ସହ ମୁଦ୍ରଣ ଦାୟିତ୍ୱ ସୁଚାରୁରୂପେ ସଂପାଦନ କରିଥିବା 'ଆମରି ସତ୍ୟ'ର ପ୍ରତିଷ୍ଠାତା, କର୍ମମୁଖର, ପ୍ରାଧ୍ୟାପକ ଡ଼କ୍ଟର ପ୍ରମୋଦ ଚନ୍ଦ୍ର ଦାଶଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି।

ମୋର ପତ୍ନୀ ଶ୍ରୀମତୀ ହୈମବତୀ ହଜାରୀ ପରିବାରର ସମସ୍ତ ଦାୟିତ୍ୱ ସଂପାଦନ କରିବା ସହ ମୋର ଏତାଦୃଶ କାର୍ଯ୍ୟକୁ ସମର୍ଥନ କରି ନଥିଲେ ଦୁଇହଜାର ଗ୍ରାମରେ ଜଙ୍ଗଲ ସଂରକ୍ଷଣ, ପର୍ଯ୍ୟାବରଣ, ବୃକ୍ଷରୋପଣ ଆଦି କାର୍ଯ୍ୟକ୍ରମ ସଫଳତାର ସହ ସଂପାଦିତ ହୋଇପାରିନଥାନ୍ତା। ଏଣୁ ମୋ ପ୍ରତି ଇଶ୍ୱରଙ୍କ କୃପାର ସେ ଅଂଶୀଦାର। ତାଙ୍କୁ ଗଭୀର ସାଧୁବାଦ ଜଣାଉଛି।

ପରିଶେଷରେ 'ବୃକ୍ଷ ଓ ଜୀବର ବଂଧୁ ପରିଷଦ' ର ସମସ୍ତ କର୍ମକର୍ତ୍ତା, ଉଦୟନାଥ ଖଟେଇ, ଭିକ୍ଷାକାରୀ ହଜାରୀ, ଯୋଗୀନାଥ ସାହୁ, ବିଶ୍ୱନାଥ ବସନ୍ତିଆ ଓ ପଦଯାତ୍ରାରେ ସାମିଲ୍ ହୋଇଥିବା ସମସ୍ତ ପଦଯାତ୍ରୀ, ବୁଦ୍ଧଗ୍ରାମ ତଥା ପଡ଼ୋଶୀ ଗ୍ରାମବାସୀମାନଙ୍କର ଶ୍ରଦ୍ଧା, ସହଯୋଗ ପାଇଁ କୃତ ଜ୍ଞତା ଜ୍ଞାପନ କରୁଛି।

**ନାରାୟଣ ହଜାରୀ**

# ସୂଚୀପତ୍ର

# ବୁଦ୍ଧଗ୍ରାମ : ଏକ ବିଶ୍ଳେଷଣ

-ନାରାୟଣ ହଜାରୀ

ପୁରୀ ଜିଲ୍ଲା ନୟାଗଡ଼ର ବୁଦ୍ଧଗ୍ରାମ । ମୋ ଗାଁ । ପ୍ରାୟ ୨୦ ବର୍ଷ ତଳର କଥା । ଆମ ଗାଁର ପାଣସାହିର ଯୁବକ ଶିରିଆ । ମୋଠୁ ୩ ବର୍ଷ ସାନ । ଦେହ ଦୁର୍ବଳ ଓ ଜୀର୍ଣ୍ଣଶୀର୍ଣ୍ଣ । ସ୍ୱଭାବ ଧୀର, କାତର । ଆଖି ଦୁଇଟି ସ୍ଥିର । ଜୀବନର ଶେଷ ପ୍ରଶ୍ନର ଉତ୍ତର ପାଇସାରିଛି । ଗୋଟିଏ ଅପରାହ୍ନରେ ମୁଁ ତା' ସାହିକୁ ଯାଇଥିଲି । ଶିରିଆ ଉଦାସ ହୋଇ ବସିଥିଲା । ପଚାରିଲି, "କେମିତି ଅଛୁ ?" ଦେହରେ କେବଳ ମଇଳା ଛୋଟ ଲୁଗାଟିଏ । କ୍ଳାନ୍ତ, ଶ୍ରାନ୍ତ ସେ । ବୁଭୁକ୍ଷୁ । ମୁହଁରେ କାରୁଣ୍ୟର ପ୍ଲାବନ । ଆହତ ସେ । ତା'ର ସ୍ତ୍ରୀକୁ ପୋଷିବାର ସାମର୍ଥ୍ୟ ତା'ର ନାହିଁ । ଆଣ୍ଠୁରେ ହାତଦେଇ ଉଠିଲା । କହିଲା, "ଚାଲ ବାବୁ କହିବି ।" ଗଲୁ ଗାଁ ମୁଣ୍ଡ ବଙ୍କା ବରଗଛ ପାଖକୁ । ବସିଲୁ । ଶିରିଆ କହିଚାଲିଲା- "ମୋ ସ୍ତ୍ରୀ ତା'ପାଖକୁ ରାତିରେ ଯାଉଛି । ମୁଁ ଯେତେ ମନାକଲେ ଶୁଣୁନାହିଁ । ସେ ତାକୁ ବ୍ଲାଉଜ୍ କନା, ସାବୁନ୍, ପାଉଡର ଦେଉଛି । ସେ ତା' ପାଖକୁ ଯାଇ ପାରିବନି ବୋଲି, ମୁଁ ରାତିରେ ଦୁଆର ବନ୍ଧରେ ଶୋଉଛି । ସେ ମୋତେ ଡେଇଁକରି ଯାଉଛି ।" ଆତ୍ମଗ୍ଲାନିରେ ଶିରିଆ ଦଗ୍ଧ । ସଂପୂର୍ଣ୍ଣ ଭାବରେ ପରାସ୍ତ ସେ । ହତବାକ୍ ମୁଁ । ... କିଛି ସମୟ ପରେ ବିଦାୟ ନେଲି । ଶିରିଆର ଆଖି ଛଳଛଳ । ... କିଛିଦିନ ପରେ ଶୁଣିଲି ଶିରିଆ କନିଅର ଫଳ ଖାଇ ଆତ୍ମହତ୍ୟା କରିଛି । ... ଶିରିଆ ଆଉ ନାହିଁ । ବଙ୍କା ବରଗଛ ବି ନାହିଁ । ... ଏହା ହେଉଛି ଓଡ଼ିଶାର ଗାଁଗହଳର ସ୍ଥିତି ।

ଆଉ ଗୋଟିଏ ଘଟଣା । ପ୍ରାୟ ୧୦ ବର୍ଷ ତଳର କଥା । ଆମ ଗାଁ ଖଟିଖିଆ ମୂଲିଆଙ୍କ ମଧ୍ୟରେ ସୃଷ୍ଟି ହେଲା ଆଲୋଡ଼ନ । ସେମାନେ ତାଙ୍କର ଶ୍ରମ ପାଇଁ ଯାହା ମୂଲ ପାଉଥିଲେ, ସେଥିରେ ତାଙ୍କର ଗୁଜୁରାଣ ମେଣ୍ଟୁନଥିଲା । ପିଲାକବିଲାଙ୍କର ପେଟ ପୂରୁନଥିଲା । ସେମାନେ ଏକାଠି ଥିଲେ । ବିଚାରବିମର୍ଷ କଲେ । ସାହୁକାରମାନଙ୍କୁ ଅଧିକ ମୂଲ ମାଗିଲେ । ସେମାନେ ରାଜି ହେଲେନାହିଁ । ଖଟିଖିଆ

ସଙ୍ଗଠିତ ହେଲେ । କାହା କାମ କରିବାକୁ ଗଲେନାହିଁ । ପ୍ରତିବାଦର ଦୁନ୍ଦୁଭି ବାଜିଲା । ଟଣାଓଟରା ଚାଲିଲା । ... ଦିନ ପରେ ଦିନ ଗଡ଼ିଚାଲିଲା । ପଡ଼ିଶା ଗାଁ ନାଗମୁଣ୍ଡଳି । ତା'ର ମୂଲିଆଙ୍କର ଆର୍ଥିକ ଅବସ୍ଥା, ଆମ ଗାଁ ମୂଲିଆଙ୍କଠାରୁ ଅପେକ୍ଷାକୃତ ଖରାପ । ସେମାନେ ଆସି ପୁରୁଣା ମୂଲରେ କାମ କଲେ । ଆମ ଗାଁ ଖଟିଖିଆ ପ୍ରତିରୋଧ କଲେନାହିଁ । ସଂଘର୍ଷ ହେଲାନାହିଁ । ହୀନିମାନ ହେଲେ । ତାଙ୍କର ସାଥିମାନେ ତାଙ୍କର ଦୁର୍ଗକୁ ଭାଙ୍ଗିଦେଲେ । ଶ୍ରେଣୀ ଚେତନାର ଅଭାବ ଯେ ଥିଲା ତାହା ନୁହେଁ, ସଙ୍ଗଠିତ ହେବା ପାଇଁ ଚେଷ୍ଟା ଯେ ହୋଇନଥିଲା ତାହା ନୁହେଁ । ଦାରିଦ୍ର୍ୟର ଉତ୍କଟ କଷାଘାତ ଜୀବନକୁ ଜୀବନ୍ତ ମରଣରେ ପରିଣତ କରିଥିଲା । ସେଠି ଶ୍ରେଣୀ ଚେତନା, ସଙ୍ଗଠନ ବା କିପରି ସମ୍ଭବ ହେବ ? କିନ୍ତୁ ଖଟିଖିଆର ଏହି ପରାଜୟ ଓ ଗ୍ଲାନି ମଧ୍ୟରେ ଥିଲା ସମାଜରୁ ଶୋଷଣ, ଅନ୍ୟାୟ ଓ ବୈଷମ୍ୟର ବିଲୋପ ପାଇଁ, ଏକ ସୁସ୍ଥ ସମାଜ ଗଠନ ପାଇଁ ଏକ ଉଦ୍ୟମ । ଏହାଥିଲା ଓଡ଼ିଶାର ଗାଁଗହଳିର ଆର୍ଥିକ ଅବସ୍ଥାର ପରିବର୍ତ୍ତନ ପାଇଁ ଏକ ଆହ୍ୱାନ ।

୧୯୮୪ ଜୁଲାଇରେ ବୁଦ୍ଧଗ୍ରାମ ଖଟିଖିଆଙ୍କର ଦ୍ୱିତୀୟ ଉଦ୍ୟମ ମଧ ସଫଳ ହୋଇନଥିଲା । ୧୯୮୪ ଜୁନ୍‌ମାସରେ ବିଭିନ୍ନ ଗ୍ରାମରେ ପଦଯାତ୍ରା କଲାବେଳେ ଲେଖକ ଭାଗଚାଷୀ ବ୍ୟବସ୍ଥା (ବୁଦ୍ଧଗ୍ରାମ ଓ କେତେକ ଗ୍ରାମରେ ଜମିମାଲିକ ଦୁଇ ଭାଗ ଓ ଭାଗଚାଷୀ ୧ ଭାଗ ଧାନ ପାଇବା)ରୁ ଖଟିଖିଆଙ୍କର ଦୟନୀୟ ଆର୍ଥିକ ଅବସ୍ଥା ସ୍ୱଚକ୍ଷୁରେ ଦେଖିଥିଲା । ଚାଷଜମି ପାଇଁ କ୍ଷୁଧାର ସୀମା ନଥିଲା । ବୁଦ୍ଧଗ୍ରାମରେ ଜମିମାଲିକ ୨ ଭାଗ ଓ ଭାଗଚାଷୀ ୧ ଭାଗ ପାଇବାର ବ୍ୟବସ୍ଥା ଥିଲା । ପ୍ରାୟ ୨୦୦୫ ମସିହା ଜାନୁଆରୀ ମାସରେ ଭଗବାନ ସତ୍ୟସାଇ ବାବାଙ୍କର ପୂଜା ବୁଦ୍ଧଗ୍ରାମର ଗ୍ରାମ ଚାନ୍ଦିନୀରେ କରାଯାଇଥିଲା । ଭଜନ ଓ ସତ୍‌ସଙ୍ଗ ହୋଇଥିଲା । ସେଥିରେ ଗ୍ରାମବାସୀ ଯୋଗଦେଇଥିଲେ । ସେ ସତ୍‌ସଙ୍ଗରେ ଲେଖକ କହିଲେ ଯେ, ଭାଗଚାଷୀକୁ ୧ ଭାଗ ଦେବା ଅନ୍ୟାୟ ଓ ଶୋଷଣ ହେଉଛି । ଯେତେଶୀଘ୍ର ଭାଗଚାଷୀ ଉତ୍ପାଦନର ଅଧା ପାଇବ, ସେତେଶୀଘ୍ର ମଙ୍ଗଳ ହେବ । ଏହାପରେ ଗ୍ରାମର ଅଧିକାଂଶ ଲୋକ ସଭା କରି, ନିଷ୍ପତ୍ତି ନେଲେ ଯେ, ଭାଗଚାଷୀକୁ ଉତ୍ପାଦନର ଅଧା ଦିଆଯିବ । ଏହି ନିଷ୍ପତ୍ତି ସାଙ୍ଗେ ସାଙ୍ଗେ କାର୍ଯ୍ୟକାରୀ ହୋଇଥିଲା । ଏଥିରେ ବିଦେଶରେ ଗରୀବ ଶ୍ରମିକମାନେ, ବିଧବା, ଅନାଥ ଓ ଅସହାୟ ଅବଶ୍ୟ କ୍ଷତିଗ୍ରସ୍ତ ହେଲେ । କିନ୍ତୁ ସମୂହ ସ୍ୱାର୍ଥ ପାଇଁ କାର୍ଯ୍ୟ କଲାବେଳେ ମୁଷ୍ଟିମେୟ ଲୋକଙ୍କର କ୍ଷତି ସାଧନ ହୋଇଥାଏ ।

୧୯୬୦ ମସିହା କଥା । ମୁଁ ଏମ୍.ଏ.ପାସ୍ କରିବା ପରେ ପରେ ଖରାଛୁଟିରେ ଗାଁରେ ଥାଏ । ଆମ ସମାଜରେ ବିଧବା ବିବାହ ନିଷିଦ୍ଧ ଥିଲା । ଜଣେ ବିଧବାର

ବିବାହ କରାଗଲା । ସେଥିରେ ମୁଁ ସଂପୃକ୍ତ ଥିଲି । ଆମ ଜାତିର ବଡ଼ପଣ୍ଡାମାନେ ମତେ ଓ ଅନ୍ୟ କେତେକ ଉଦ୍ୟୋକ୍ତାଙ୍କୁ ଜାତିରୁ ବାହାର କରିବାକୁ ମସୁଧା କଲେ । ତାଙ୍କର ଏ ପ୍ରକାର ଉଦ୍ୟମକୁ ଅଧିକ ଇନ୍ଧନ ଯୋଗାଇବାକୁ ସ୍ଥିର କଲି । ଆମ ଗାଁର ପଶ୍ଚିମରେ ୭ ମାଇଲ ଦୂରରେ ଅବସ୍ଥିତ ବଡ଼ପୁଟ ଗ୍ରାମରେ ପହଞ୍ଚିଲି । ଜଣେ ହରିଜନ ଘରେ ଖାଇବାକୁ ଠିକ୍ କଲି । ସେ ଗାଁ ହୁଲସ୍ଥୁଲ୍ ହେଲା । ଗାଁର ବଡ଼ପଣ୍ଡାମାନେ ସେ ହରିଜନଙ୍କୁ ଡାକି ଧମକ ଦେଲେ, "ତାଙ୍କୁ ଖାଇବାକୁ ଦେଇପାରିବୁ ନାହିଁ । ଦେଲେ ତୋର ଚୌକିଦାର ଚାକିରୀ ଯିବ ।" ମୁଁ ଅବିଚଳ ରହିଲି । ଖାଇଲି । ଗାଁ ଦାଣ୍ଡରେ ଚାଲି ଚାଲି ଆସିଲି। ଭାଗବତଘର ନିକଟରେ ପହଁଞ୍ଚିଲା ବେଳେ ମତେ ପଛପଟୁ ଟେକା ପଥର ମାଡ଼ ହେଲା। କୌଣସିଟି ମୋ ଦେହରେ ବାଜିଲା ନାହିଁ। ମୁଁ ପଛକୁ ନଚାହିଁ ସିଧା ଚାଲିଲି। ମତେ ଜାତିରୁ ବାହାର କରାଗଲା । କେତେବର୍ଷ ଗଡ଼ିଗଲା । ଯେଉଁମାନେ ଆମକୁ ଗୁଆ କାଟିଦେଇଥିଲେ, ଖବର ପଠାଇଲେ, ଆମର ବାହାଘର, ଦଶକୁ ତାଙ୍କୁ ନିମନ୍ତ୍ରଣ କରିବା ପାଇଁ ।

ଦିନ ଗଡ଼ିଚାଲିଲା । ଆମ ଗାଁ ହରିଜନ ପିଲାଙ୍କୁ ଡାକିବାରୁ ଆମ ଘରକୁ ଆସିଲେ । ମୋର ମା' ଦୁଃଖ ଓ ପ୍ରତିବାଦରେ ସେ ରାତି ଉପବାସ ରହିଲେ । ମୁଁ ତାଙ୍କ ଉପବାସର କାରଣ ହୋଇଥିବାରୁ ମୁଁ ମଧ ଉପବାସ ରହିଲି । କିନ୍ତୁ ମୋ ମା' ମୋତେ ଘରୁ ତଡ଼ିଦେଲେ ନାହିଁ । ହରିଜନ ପିଲାଙ୍କୁ ଆମ ଗାଁ ପ୍ରଗତି ଶିଶୁସଂଘର ପିଲାମାନେ ପଢ଼ାଇଲେ । କେତେକ ଲୋକ ଛି'ଛାକର କଲେ । ହରିଜନଙ୍କ ସାଙ୍ଗରେ ଆମେମାନେ ବସି ଗାଁ ଭୋଜି ଖାଇଲୁ । କେତେଜଣ ନାକ ଟେକିଲେ । ହରିଜନ ପିଲାଙ୍କୁ ଭାଗବତ ଘର ଓ ଠାକୁରାଣୀ ଘରକୁ ନେଲୁ । ସେମାନେ ଅତ୍ୟନ୍ତ ଭୟଭୀତ ହୋଇ ସନ୍ତର୍ପଣରେ ପ୍ରବେଶ କଲେ । ଦୀପଜାଳି ପ୍ରଣିପାତ କଲେ । ଲୋକଙ୍କ ମଧରେ ଘୋର ଆଲୋଡ଼ନ ସୃଷ୍ଟିହେଲା । ଗାଁସାରା ସ୍ତମ୍ଭୀଭୂତ ହୋଇ ଅନାଇ ରହିଲେ । କେତେ କହିଲେ, ଭାଗବତ ମହାପ୍ରଭୁ ଯଦି ସତ ହୋଇଥିବେ ମନ୍ଦିରର ପବିତ୍ରତା ନଷ୍ଟ କରିଥିବା ଲୋକମାନଙ୍କୁ ସର୍ପ ଦଂଶନ କରିବ । ସାପ ମାରିଲା ନାହିଁ । ଲୋକେ ଆମକୁ ଗାଁରୁ ଫୋପାଡ଼ି ଦେଲେନାହିଁ ।

ଆଉ କେତେବର୍ଷ ପରେ । ୧୯୭୮ ମସିହା । ଆମ ଗାଁର ହରିଜନ ପିଲାଟିଏ ଚୌଦ୍ୱାର ହିନ୍ଦ୍ ସେବକ ସଂଘର ଡେଷ୍ଟିଚିଉଟ୍ ହୋମ୍‌ରେ ରହି ପଢ଼ିବା ପାଇଁ ବଛା ହେଲା । ସେ ଗାଁରୁ ଆସି ଚୌଦ୍ୱାର ଯିବା ବାଟରେ ରେଭେନ୍‌ସା କଲେଜ ହତାରେ ଆମ ଘରେ ରହିଲା । ଖିଆପିଆ କଲା । ମୋର ପତ୍ନୀ ଯେ କି ୧୯୪୬ରେ ଜନ୍ମ ଓ ଆଧୁନିକତାର ସ୍ୱର୍ଶ ପାଇବା କଥା, ପ୍ରତିବାଦ କଲେ । ୩୦ ଘଣ୍ଟା ଉପବାସ ରହିଲୁ ।

କିନ୍ତୁ ପରସ୍ପରକୁ ଛାଡ଼ପତ୍ର ଦେଲୁନାହିଁ ।

୧୯୭୯ ମସିହା । ଗାଁକୁ ଯାଇଥିଲି । ପାଣ ସାହିରେ ଜଣକ ଘରେ ପଶି ଦେଖିଲି ଯେ, ଗୋଟିଏ ୭ ବର୍ଷର ପିଲା ମୃତପ୍ରାୟ ଶଯ୍ୟାଶାୟୀ ହୋଇଛି । ପରେ ଜାଣିପାରିଲି ଯେ ସେ ହେଉଛି ଗୃହିଣୀ । ଦିନକୁ ୧୫, ୨୦ ଥର ରକ୍ତ ଝାଡ଼ା ହୋଇ, ମୃତ୍ୟୁକୁ ପ୍ରତୀକ୍ଷା କରିରହିଛି । ନିଜ ଶଗଡ଼ରେ ତାକୁ ଶୁଆଇ ୧୨ କିଲୋମିଟର ଦୂରରେ ଥିବା ନୟାଗଡ଼ ଡାକ୍ତରଖାନାକୁ ନେଲି । ସେଠାରେ ମୋର ବାଲ୍ୟବନ୍ଧୁ ସହୃଦୟ ଡାକ୍ତର ନରସିଂହ ମିଶ୍ର ତାକୁ ୧୫ ଦିନ ଚିକିତ୍ସା କଲେ । ଶୁଣିଲି ଯେ, ହରିଜନ ସ୍ତ୍ରୀଲୋକଟିକୁ ନିଜ ସାଙ୍ଗରେ ଶଗଡ଼ରେ ନେଇଥିବାରୁ ମୋର ନିନ୍ଦା ରଟିନାହିଁ । ଘଟଣାଟିକୁ ଲୋକେ ପସନ୍ଦ କରିଛନ୍ତି । ଗ୍ରାମର ପ୍ରଭାବଶାଳୀ ନେତୃସ୍ଥାନୀୟ ବ୍ୟକ୍ତି ତ୍ରିନାଥ ଜେନା ହରିଜନ ସ୍ତ୍ରୀଲୋକଟିର ସ୍ୱାମୀ ଆନ (ଆନନ୍ଦ)କୁ ଲେଖକକୁ ଲକ୍ଷ୍ୟ କରି କହିଲେ ଯେ, ତୋ ପାଇଁ ଭଗବାନ ଆସିଥିଲେ ।

୧୯୮୦ ମସିହା । ବାଣୀବିହାରରେ ଆମ ଘରେ ସ୍ତ୍ରୀଲୋକଟିଏ ବାସନ ମାଜୁଥାଏ । ପ୍ରାୟ ଦୁଇମାସ ପରେ ଜଣାପଡ଼ିଲା ଯେ, ସେ ସ୍ତ୍ରୀଲୋକଟି ହରିଜନ । ମୋର ପତ୍ନୀ ତାକୁ ବାହାର କଲେନାହିଁ । ମୋ ମା' ଯେକି ଏ ବିଷୟରେ ଅତ୍ୟନ୍ତ ରକ୍ଷଣଶୀଳା, ସେ ମଧ୍ୟ ସହାବସ୍ଥାନ ନୀତି ଗ୍ରହଣ କଲେ ।

ଏହା ହେଉଛି ଓଡ଼ିଶାର ଗାଁଗହଳିର ପ୍ରଗତି ।

**ଆର୍ଥିକ ଚିତ୍ର:**

ଓଡ଼ିଶାରେ ଶତକଡ଼ା ୯୦ ଭାଗ ଉପରେ ଲୋକ ଗାଁରେ ରହନ୍ତି । ଭାରତ ତଥା ଓଡ଼ିଶାର ଗାଁଗହଳର ପ୍ରଧାନ ସମସ୍ୟା ହେଉଛି : ଦାରିଦ୍ର୍ୟ ଓ ବେକାରୀ । ପ୍ରଫେସର ଭି.ଏମ୍. ଦାଣ୍ଡେକର ଓ ପ୍ରଫେସର ନୀଳକଣ୍ଠ ରଥ ତାଙ୍କର "ଭାରତରେ ଦାରିଦ୍ର୍ୟ" ପୁସ୍ତକରେ, ଦାରିଦ୍ର୍ୟର କାରଣ ବେକାରୀ ବୋଲି ସିଦ୍ଧାନ୍ତରେ ପହଞ୍ଚିଛନ୍ତି । ଗ୍ରାମବାସୀଙ୍କର ପ୍ରଧାନ ଜୀବିକା କୃଷି । କିନ୍ତୁ ଜମିର ବଣ୍ଟନ ଏପରି ଯେ, ଅନେକ ଚାଷୀଙ୍କର ନିଜର ଜମିନାହିଁ, ଅନେକଙ୍କର ଯାହା ଜମି ଅଛି ସେଥିରେ ଗୁଜୁରାଣ ମେଣ୍ଟେନାହିଁ । ଅଧିକାଂଶଙ୍କର ଜମି ବର୍ଷସାରା ଉତ୍ପାଦନକ୍ଷମ ନୁହେଁ । ଏହାର କାରଣ ଜଳସେଚନ ଅଭାବ । ଓଡ଼ିଶାର ଅଧିକାଂଶ ଜମି ଫସଲ ପାଇଁ ପର୍ଯ୍ୟାପ୍ତ ନୁହେଁ । କେତେକ ଦିନରୁ ଦେଖାଯାଇଛି ଯେ, ଭୂଗର୍ଭରେ ପାଣିର ସ୍ତର କ୍ରମେ ତଳକୁ ଖସି ଖସି ଯାଉଛି । ଆମ ଗାଁ ଚାଷଜମି ତଳେ କୁସୁମୀ ନଦୀ ଅଛି । ଖରାଦିନେ ଆଖୁ ଫସଲ ପାଇଁ ଚାଷୀ ନଦୀକୁ ଖୋଳି ପାଣି ବୁହାଏ । ବାଲିର ସ୍ତରରୁ ହିଁ ପାଣି ବାହାରୁଥିଲା । ଏବେ ପ୍ରାୟ ୫ ବର୍ଷ ହେଲା ବାଲିର ସ୍ତରକୁ ଭେଦକରି, ମାଟିର

ସ୍ତରକୁ ଖୋଳିବାକୁ ପଡୁଛି । ଚିକିଟାମାଟି ପଡୁଛି । ଏ ବର୍ଷ ଚିକିଟାମାଟି ସ୍ତରରେ ୧୫ ଫୁଟର କୂଅମାନ ଖୋଳାହୋଇ ସେଣାରେ ପାଣି ଆଖୁକୁ ମଡ଼ାଯାଉଛି । ଏହାର ନିରାକରଣର ଏକମାତ୍ର ଉପାୟ ହେଉଛି, ଆମ ବିଧ୍ୱଂସପ୍ରାପ୍ତ ଜଙ୍ଗଲ ସମ୍ପଦର ପୁନଃରୁଦ୍ଧାର । ଜଙ୍ଗଲ ସୃଷ୍ଟିହେଲେ ବର୍ଷାର ପରିମାଣ ବଢ଼ିବ, ଭୂଗର୍ଭର ଜଳର ସ୍ତର ଉପରକୁ ଉଠିଆସିବ । ଚାଷଜମିର ଉର୍ବରା ଶକ୍ତି ବଢ଼ିବ । ପର୍ବତ ଓ ପର୍ବତର ପାଦଦେଶରେ ମୃତ୍ତିକାକ୍ଷୟ ହୋଇ, ଧୋଡ଼ା ହୋଇ, ମାଟି ଜମିକୁ ଓ ନଦୀକୁ ପୋତି, ହେଉଥିବା ବନ୍ୟାକୁ ରୋକାଯାଇପାରିବ । ଜଙ୍ଗଲ ଆମକୁ ଖାଦ୍ୟ ଦେବ । ଜଙ୍ଗଲଜାତ ଦ୍ରବ୍ୟରେ କୁଟୀର ଶିଳ୍ପମାନ ଗଢ଼ିଉଠିବ । ବାସ୍ତବିକ ଜଳସେଚନ ଓ କୁଟୀରଶିଳ୍ପ ଗାଁଗହଳିର ବେକାରୀ ସମସ୍ୟା ସମାଧାନର ଚାବିକାଠି । ଜଳସେଚନର ସୁବିଧା ରହିଲେ ଚାଷୀ ବର୍ଷକୁ ୩ଟି ଫସଲ ଉତ୍ପାଦନ କରିପାରିବ । ଉତ୍ପାଦନ ସାଙ୍ଗକୁ ବଜାର, ଗମନାଗମନ ଓ ପରିବହନର ସୁବିଧା ମଧ୍ୟ ଅପରିହାର୍ଯ୍ୟ । ୧୯୭୦ ମସିହାରେ ଆମ ଗାଁରେ ବାଇଗଣ ଓ ପିଆଜ ଯଥେଷ୍ଟ ପରିମାଣରେ ହୋଇଥିଲା । ବଜାରର ସୁବିଧା ନଥିବାରୁ ଟଙ୍କାରେ ବାଇଗଣ ୬ କେଜି ଓ ପିଆଜ ୫ କେଜି ହୋଇଥିଲା । ଫଳରେ ଚାଷୀ ବାଇଗଣକୁ ଗୋଖାଦ୍ୟ ରୂପେ ବ୍ୟବହାର କରିଥିଲା ଓ ପିଆଜକୁ ସଞ୍ଚୟ କରି ବର୍ଷସାରା ଖାଇଥିଲା । ୧୯୮୪ ଫେବୃଆରୀ ମାସରେ ଅଶ୍ୱସ୍ତପଡ଼ା ଓ ତା'ର ପଡ଼ୋଶୀ ଗ୍ରାମମାନଙ୍କରେ ବିଲାତି ବାଇଗଣ ୧ ଟଙ୍କାରେ ୩ କେଜି ଓ ବାଇଗଣ ୧ ଟଙ୍କାରେ ୩ କେଜି ହୋଇଥିଲା ।

ଗ୍ରାମ ଠାକୁରାଣୀ ରାମଚଣ୍ଡୀଙ୍କ ମନ୍ଦିରରେ ହରିଜନମାନେ ଦର୍ଶନ ଓ ପୂଜା କରିପାରିବେ । ସେଥିପାଇଁ ଲେଖକ ଆକାଙ୍‌କ୍ଷା ଥାଏ । ଥରେ ଜଣେ ଯୁବକଙ୍କୁ ଲେଖକ କହିଲା ଯେ, ହରିଜନମାନେ ମନ୍ଦିରରେ ପ୍ରବେଶ କରିବାକୁ ଲେଖକ ଉଦ୍ୟମ କରିବ । ସେ ଲେଖକକୁ ଏପରି ଅଗ୍ନିବର୍ଷୀ, ଘୃଣା ଓ କ୍ରୋଧ ଚକ୍ଷୁରେ ଦେଖିଲା ଯେ ଲେଖକ ସ୍ତମ୍ଭୀଭୂତ ହୋଇଗଲା ।

ଗ୍ରାମର ହରିଜନମାନେ ପୋଖରୀ ପାଣି ପିଉଥିଲେ । ନଳକୂପ ହେଲାପରେ ସେମାନେ ନଳକୂପରୁ ପାଣି ନେବାକୁ ପାଣିପାତ୍ର ରଖୁଥିଲେ ଓ ସବର୍ଣ୍ଣ ଲୋକମାନେ ତାଙ୍କର ପାତ୍ରରେ ପାଣିଢାଳି ଦେଉଥିଲେ । ପାଣି ଢାଳିଦେଉଥିବା ଲୋକମାନେ ବିରକ୍ତ ହେବା ଯୋଗୁଁ ହରିଜନମାନେ ଅପମାନିତ ଓ ଲାଞ୍ଛିତବୋଧ କରୁଥିଲେ । ତେଣୁ ସେମାନେ ଲେଖକର ପିତାଙ୍କୁ ପଚାରିଲେ ଯେ, ଏ ପରିସ୍ଥିତିରେ ସେମାନେ କ'ଣ କରିବେ ? ଲିଙ୍ଗରାଜ ହଜାରୀ ତାଙ୍କୁ କହିଲେ ଯେ, ସେମାନେ ନଳକୂପରୁ ପାଣି ନିଅନ୍ତୁ । ତାପରେ ହରିଜନମାନେ ନଳକୂପରୁ ପାଣିନେଲେ । ତାପରେ ଗ୍ରାମରେ

ସବର୍ଣ୍ଣମାନଙ୍କ ମଧ୍ୟରେ ତୀବ୍ର ପ୍ରତିକ୍ରିୟା ଦେଖାଗଲା । ଗ୍ରାମରେ ସଭା ଡକାଗଲା। ହରିଜନ ସାହିର ପ୍ରାୟ ୫୦ଜଣ ଅଧିବାସୀଙ୍କୁ ସଭାକୁ ଡକାଗଲା । ସେମାନଙ୍କୁ ପାଟିରେ ତିରଣ (କୁଟା) ଧରି ଗ୍ରାମଦାଣ୍ଡରେ ସାଷ୍ଟାଙ୍ଗ ପ୍ରଣାମ କରିବାକୁ କୁହାଗଲା । ଭୟଭୀତ ହରିଜନମାନେ ପ୍ରତିଶ୍ରୁତି ଦେଲେ ଯେ, ସେମାନେ ନଳକୂଅରୁ ଆଉ ପାଣି ନେବେନାହିଁ । ଲେଖକ ଘଟଣାସ୍ଥଳରେ ନଥିଲା । କର୍ମକ୍ଷେତ୍ରରୁ ଯେତେବେଳେ ଗ୍ରାମକୁ ଆସିଲା, ଏକଥା ଶୁଣି ମାର୍ମିକ ବେଦନା ଅନୁଭବ କଲା । ଗ୍ରାମସଭାରେ ଲେଖକ ହରିଜନଙ୍କ ପ୍ରତି ହୋଇଥିବା ଅନ୍ୟାୟରେ ଗଭୀର ଦୁଃଖ ପ୍ରକାଶ କରି କହିଲା ଯେ, ଯଦି ନଳକୂପରୁ ହରିଜନଙ୍କୁ ପାଣି ଦିଆଯିବ ନାହିଁ, ତେବେ ତା'ର ଦେହାନ୍ତ ହେଲାପରେ, ଜଣେ ହରିଜନ ତା'ର ମୁଖାଗ୍ନି ଦେବ । ଏହାର ଉତ୍ତରରେ ଗ୍ରାମର ଗ୍ରାମଣୀ (ସଭାପତି) ଶ୍ରୀ ଉଦୟନାଥ ଖଟେଇ କହିଲେ ଯେ, ହରିଜନମାନେ ନଳକୂଅରୁ ପାଣି ନେଇପାରିବେ । ତା'ପରେ ଲେଖକ କର୍ମକ୍ଷେତ୍ରକୁ ଫେରିଗଲା । ପୁଣି ଯେତେବେଳେ ଗ୍ରାମକୁ ଆସିଲା, ସେତେବେଳେ ହରିଜନମାନଙ୍କର ମୁଖିଆ ଶ୍ରୀ ବାଷ୍ଟ ନାୟକଙ୍କଠାରୁ ଶୁଣିଲା ଯେ ତାକୁ ଗ୍ରାମ ସଭାପତି କହିଛନ୍ତି, 'ଯଦି ହରିଜନମାନେ ନଳକୂଅରୁ , ପାଣି ନେବେ ତା'ହେଲେ ତୁମର ଗୋଡ଼ ଭାଙ୍ଗି ଦିଆଯିବ । ଲେଖକର ବୟସ ବର୍ତ୍ତମାନ ୭୪ ବର୍ଷ । ଲେଖକ ଯେଉଁ ପିତୃମାତୃହୀନ ପିଲାଟିକୁ (ସତ୍ୟବ୍ରତ ନାୟକ) ନେଇ ଚୌଦ୍ୱାରର ହିନ୍ଦ୍ ସେବକ ସମାଜରେ ପାଠ ପଢ଼ାଇବାର ବ୍ୟବସ୍ଥା କରିଥିଲେ ସେ ପିଲାଟି ଲେଖକର ମୃତ୍ୟୁ ପରେ ବୁଦ୍ଧଗ୍ରାମରେ ଲେଖକର ଶବ ସଂସ୍କାରବେଳେ ମୁଖାଗ୍ନି ଦେବ ବୋଲି ସ୍ଥିର କରିଛି । ଏ ଖବର ଗ୍ରାମରେ ପହଞ୍ଚିଗଲାଣି । ଉଦୟନାଥ ଖଟେଇ ଏହା ଶୁଣି ପ୍ରତିକ୍ରିୟା ପ୍ରକାଶ କରି କହିଲେ ଯେ, ଲେଖକ ଗ୍ରାମକୁ ଆସିଲେ ତାକୁ ଗାଳି ଦିଆଯିବ । ଗ୍ରାମର ଜଣେ ବ୍ୟକ୍ତି ଶ୍ରୀ ଗୋବିନ୍ଦ ବେହେରା ଏକଥା ଲେଖକକୁ ଜଣାଇବାରୁ ଲେଖକ କହିଲା ଯେ, ସେ ଗାଳି ସବୁ ଲେଖକର ଦେହରେ ଚନ୍ଦନ ଭଳି ବୋଲି ହୋଇଯିବ ।

ଉଦୟନାଥ ଖଟେଇଙ୍କର ବର୍ତ୍ତମାନ ବୟସ ୮୩ ବର୍ଷ । ସେ ଜଣେ ନିଃସ୍ୱାର୍ଥପର, ଦେଶପ୍ରେମୀ, ସଚ୍ଚୋଟ, କର୍ମଯୋଗୀ । ବୁଦ୍ଧଗ୍ରାମରେ ତିନିଗୋଟି ମୁଖ୍ୟ କାମ ହୋଇଅଛି । ପ୍ରଥମଟି ହେଲା ୬ଟି ସର୍ବସାଧାରଣ ପୁଷ୍କରିଣୀର ପୁନଃଖନନ, ଦ୍ୱିତୀୟ କାର୍ଯ୍ୟ ହେଲା, ଗ୍ରାମରେ ଆଦୌ ସ୍କୁଲ ନଥିଲା । ପ୍ରଥମ ଶ୍ରେଣୀରୁ ଦଶମ ଶ୍ରେଣୀଯାଏ ଖୋଲାଗଲା । ତୃତୀୟ କାର୍ଯ୍ୟ ହେଲା, ଗ୍ରାମ ପାହାଡ଼ର ପୁନଃରୁଦ୍ଧାର । ବୁଦ୍ଧଗ୍ରାମରୁ ବନସଂରକ୍ଷଣ ଆରମ୍ଭ ହୋଇ ନୟାଗଡ଼ ଜିଲ୍ଲାର ପ୍ରାୟ ୧୭୦୦ ଗ୍ରାମରୁ ୧୦୦୦ ଗ୍ରାମକୁ ପରିବ୍ୟାପ୍ତ ହୋଇଅଛି । ଏ ତିନୋଟିଯାକ କାର୍ଯ୍ୟ ତାଙ୍କ ବିନା

ସମ୍ଭବ ହୋଇପାରିନଥାନ୍ତା । ଗ୍ରାମର ଶ୍ରୀ ଭିକ୍ଷାକାରୀ ହଜାରୀ ମଧ୍ୟ ଏ ତିନୋଟିଯାକ କାର୍ଯ୍ୟର ନିର୍ଣ୍ଣାୟକ ଭୂମିକା ଗ୍ରହଣ କରିଥିଲେ । ବନ ସଂରକ୍ଷଣ କାର୍ଯ୍ୟରେ ସ୍କୁଲର ଶିକ୍ଷକ ଶ୍ରୀ ଯୋଗୀନାଥ ସାହୁ ଓ ଶ୍ରୀ ବିଶ୍ୱନାଥ ବସନ୍ତିଆ ମଧ୍ୟ ନିର୍ଣ୍ଣାୟକ ଭୂମିକା ଗ୍ରହଣ କରିଥିଲେ ।

ଲେଖକ ଓ ତା'ର ସାନଭାଇ ବାଣୀବିହାରର ଅଧ୍ୟାପକ ଡଃ. ସୁବାସ ଚନ୍ଦ୍ର ହଜାରୀ କଟକର ରେଭେନ୍ୟୁ ଡିଭିଜନାଲ୍ କମିସନର ଶ୍ରୀଯୁକ୍ତ ଅମୂଲ୍ୟ ରତ୍ନ ନନ୍ଦଙ୍କୁ ସାକ୍ଷାତ କରି ତାଙ୍କର ସାହାଯ୍ୟ ଭିକ୍ଷା କଲେ । ସେ ଗ୍ରାମ ପରିଦର୍ଶନ କରି ହରିଜନ ସାହିର ନଳକୂପଟିଏ କରିବାର ବ୍ୟବସ୍ଥା କଲେ । ସେ ଜଣେ ଉଦାରବାଦୀ ମହାନୁଭବ ବ୍ୟକ୍ତିଥିଲେ ।

୨୦୧୦ ମସିହା ମଇ ୨୪ ସାବିତ୍ରୀ ଅମାବାସ୍ୟା ଦିନ ୭/୮ ଜଣ ହରିଜନ ରାମଚଣ୍ଡୀ ମନ୍ଦିରରେ ପୂଜାସାମଗ୍ରୀ ଧରି ପ୍ରବେଶ କଲେ । ମନ୍ଦିରର ମାଳି ସେମାନଙ୍କୁ ପୂଜା କରିବାକୁ ବାରଣ କଲା ଓ ଗ୍ରାମବାସୀଙ୍କୁ ଖବର ଜଣାଇବାକୁ ଗଲା । ଗ୍ରାମବାସୀ ଆସି ତାଙ୍କୁ କହିଲେ ଯେ, ଗ୍ରାମରେ ସଭା ହେବା ପରେ, ଆଲୋଚନା ହୋଇ, ତମ କଥା ବୁଝାଯିବ । ହରିଜନମାନଙ୍କୁ ଗ୍ରାମସଭାକୁ ଡକାଯାଇ ତାଙ୍କ ଉପରେ ଚାପ ପ୍ରୟୋଗ କରିବାରେ, ସେମାନେ ଦୋଷ ସ୍ୱୀକାର କରି ଆଉ ମନ୍ଦିରରେ ପ୍ରବେଶ କରିବେ ନାହିଁ ବୋଲି ପ୍ରତିଶ୍ରୁତି ଦେଲେ ।

କୁଟୀର ଶିଳ୍ପ ଥିଲେ, କୃଷିକାର୍ଯ୍ୟ ନଥିବା ସମୟରେ ଲୋକେ କାମକରି ରୋଜଗାର କରିପାରିବେ । ଗାଁଗହଳିରେ ଏପରି କେତେକ ଲୋକ ଅଛନ୍ତି, ଯେଉଁମାନେ କୃଷିରେ କଠିନ ଶାରୀରିକ ପରିଶ୍ରମ କରିବାକୁ ଅକ୍ଷମ । ଆଉ କେତେକ ଲୋକ ଅଛନ୍ତି, ଯେଉଁମାନେ ଅନ୍ୟର ମୂଲ ଲାଗିବାକୁ ମାନହାନି ମନେକରନ୍ତି । ଆମ ଗାଁର ଜଣେ ବ୍ୟକ୍ତିଙ୍କର (ହରିହର ପ୍ରଧାନ) ଖୁବ୍ କମ୍ ଜମି ଅଛି । ସେ ଗାଁରେ ରହି ଗୁଡ଼ ଓ ମୁଗ ବ୍ୟବସାୟ କରନ୍ତି । ଗୁଡ଼ର ଦର କେତେବର୍ଷ ଏତେ କମିଗଲା ଯେ ତାଙ୍କର ବ୍ୟବସାୟ ପାଇଁ ସୁଯୋଗ ରହିଲା ନାହିଁ । ସେ ଗାଁ ଚଳାନ୍ତି । ଏବେ ତାଙ୍କର ଆର୍ଥିକ ଅବସ୍ଥା ଏତେ ଶୋଚନୀୟ ଯେ, ରୋଜଗାର ପାଇଁ ତାଙ୍କର ଏକମାତ୍ର ପନ୍ଥା ମୂଲ ଲାଗିବା । କିନ୍ତୁ ଯେହେତୁ ସେ ଗାଁ ଚଳାଉଛନ୍ତି, ଅନ୍ୟର ମୂଲ ଲାଗିଲେ ନିଜର ସମ୍ମାନ ହାନୀ ହେବ ବୋଲି ଭାବୁଛନ୍ତି । ଏବେ ସେ ଘରେ ବସି ରହି, ଜମି ବିକ୍ରିକରି ଗୁଜୁରାଣ ମେଣ୍ଟାଉଛନ୍ତି । ଅନ୍ୟଜଣେ ଏପରି ବୃଥା ମୂଲ୍ୟବୋଧକୁ ଜାବୁଡ଼ି ଧରି ସର୍ବସ୍ୱାନ୍ତ ହୋଇ ଗାଁଛାଡ଼ି ଚାଲିଗଲେ । ଜଣେ ସ୍ୱାମୀ ପରିତ୍ୟକ୍ତା ନାରୀ, ରୋଜଗାର ପାଇଁ କୌଣସି ବୃତ୍ତି ନ ପାଇ ଅଗତ୍ୟା ନିଜର ଦେହକୁ ବିକ୍ରି କରି ଗୁଜୁରାଣ ମେଣ୍ଟାଉଛି ।

ଜଳସେଚନର ଅଭାବ ଯୋଗୁ କୃଷିର ନିଯୁକ୍ତିର ସୁଯୋଗ ସୀମିତ ଥିବାରୁ ଓ କୁଟୀର ଶିଳ୍ପର ଅଭାବ ଯୋଗୁଁ, ଗାଁଗଣ୍ଡାର ଲୋକେ ବାଧ ହୋଇ ସହରକୁ ଯାଉଛନ୍ତି । ବୁଦ୍ଧଗ୍ରାମର ଅନେକ ଲୋକ ଜୀବନସାରା କଲିକତା ନଗରୀରେ କାମ କରି ଆସୁଛନ୍ତି । ସେମାନଙ୍କ ଜୀବନ ମୁଁ ସ୍ୱଚକ୍ଷୁରେ ନିରୀକ୍ଷଣ କରିଛି । ଜୀବନସାରା ସେମାନେ ସ୍ତ୍ରୀ ଓ ପିଲାଙ୍କଠାରୁ ଦୂରରେ । ପିଲା ବାପାର ସ୍ନେହ ପାଏ ନାହିଁ, ବାପାର କୋଳ ଖାଲି ପଡ଼ିଥାଏ । ଏହାଫଳରେ ବାପା, ମା, ପିଲା ସମସ୍ତଙ୍କର ଜୀବନ ଦରିଦ୍ରତର ହୋଇଯାଏ । ସ୍ୱାମୀଙ୍କୁ ଦୀର୍ଘଦିନ ଛାଡ଼ି ଅଗତ୍ୟା ବେଶ୍ୟା ହେବା ଜଣେ ନାରୀ ଭାଗ୍ୟରେ ଘଟିଛି । ଯେଉଁମାନେ କଲିକତାରେ କାମକରନ୍ତି, ସେମାନେ ଅସ୍ୱାସ୍ଥ୍ୟକର ପରିବେଶରେ ପଶୁପରି ଖଟନ୍ତି । କାମରୁ ଫେରି ଦେହ ଓ ମନ ଭାଙ୍ଗି ପଡୁଥିବାବେଳେ ରୋଷେଇ କରନ୍ତି । ସେମାନଙ୍କ ସାଙ୍ଗରେ ମୁଁ ଖାଇଛି । ସେମାନଙ୍କ ପାଖରେ ଶୋଇଛି । ତାଙ୍କର ଚୋର ଚଣ୍ଡାଳ, ସମସ୍ତ ଶିରୀ ଛାଡ଼ିଯାଇଥିବା ଅବସ୍ଥା ଦେଖିଛି । ମୋ ହୃଦୟରେ ଘୋର ଆଲୋଡ଼ନ ସୃଷ୍ଟିହୋଇଛି । ଗଭୀର ଆଘାତ ପାଇଛି । ମୋର ଏହା ନିଶ୍ଚିତ ମତ ଯେ ଯେଉଁମାନେ କଲିକତାରେ କାମକରି ପେଟ ପୋଷୁଛନ୍ତି, ସେମାନେ ଆମ ଗାଁର ଦରିଦ୍ର ହରିଜନଙ୍କଠାରୁ ନିକୃଷ୍ଟତର ଜୀବନଯାପନ କରୁଛନ୍ତି ।

କଲିକତାରେ କାମ କରୁଥିବା ଶ୍ରମିକମାନେ ଭାବଗତ ଦିଗରୁ ଗ୍ରାମର ହରିଜନମାନଙ୍କଠାରୁ ନିକୃଷ୍ଟତର ଜୀବନଯାପନ କରୁଛନ୍ତି । ଏକଥାକୁ ଗ୍ରାମର ଓଡ଼ିଆ ବିଭାଗର ଅଧ୍ୟାପକ ଶ୍ରୀ ସୋମନାଥ ପଟ୍ଟନାୟକ କଦର୍ଥ କଲେ । କଲିକତାରେ କାମ କରୁଥିବା ପ୍ରାୟ ୧୫ ଜଣ ଯୁବ ଶ୍ରମିକ ଏକ ସଭା କରି ଲେଖକକୁ ସେଠାକୁ ଡାକିଲେ । ଗ୍ରାମବାସୀ ସେ ସଭାରେ ଯୋଗଦେଇ ନଥିଲେ । ଅତ୍ୟନ୍ତ ଉଗ୍ରଭାବରେ ଲେଖକ ପ୍ରତି ତୀବ୍ର ବାକ୍ୟବାଣ ପ୍ରୟୋଗ କଲେ । 'କ୍ରାନ୍ତିପଥ'ର ଯେଉଁ ସଂଖ୍ୟାରେ ଏହି ଲେଖାଟି ପ୍ରକାଶିତ ହୋଇଥିଲା, ତାହା ଗାଁରେ ଥିଲା । ସେ ପତ୍ରିକାଟି ଆଣିବାକୁ ଲେଖକ କହିଲା । ସେମାନେ ଲେଖକକୁ କହିଲେ, ଏହା ଲେଖା ହୋଇଛି । ପତ୍ରିକା ଆଣିବାର ଆବଶ୍ୟକତା ନାହିଁ । ଜଣେ ଯୁବକ କହିଲେ, ଆପଣ ଦାଣ୍ଡରେ ଚାଲି ଯାଉଥିବାବେଳେ, ଲୋକମାନେ ଦାଣ୍ଡ ପିଣ୍ଡାରୁ ଓହ୍ଲାଇ ପଡୁଥିଲେ । ବର୍ତ୍ତମାନ ଲୋକମାନେ ଆପଣଙ୍କୁ ନମସ୍କାର ମଧ୍ୟ କରୁନାହାନ୍ତି । ଆଉ ଜଣେ ଯୁବକ କହିଲେ, ଆପଣଙ୍କ ଉପରେ ଲୋକମାନେ ଛେପ ପକାଇବାକୁ କହୁଛନ୍ତି । ସଭାରେ ଅଧ୍ୟାପକ ପଟ୍ଟନାୟକ ନେତୃତ୍ୱ ନେଉଥାନ୍ତି । ସଭାପ୍ରାୟ ୪୫ ମିନିଟ୍ ଚାଲିଲା । ଲେଖକ ଉପରେ ବହୁ ଗର୍ଜନ, ତର୍ଜନ ତୁମ୍ବିତୋଫାନ୍ ହେଲା । ଲେଖକ ନିରୁତ୍ତର ରହିଲା । ତା'ପରେ ସଭାରୁ ଲେଖକ ଘରକୁ ଫେରି ଶାନ୍ତିରେ ଶୋଇପଡ଼ିଲା । କିନ୍ତୁ ତା'ର

ପିତା ଯେ କି ମାନସ ଚକ୍ଷୁରେ ସମସ୍ତ କଥା ଅବଲୋକନ କରିଥିଲେ, ତାଙ୍କର ଏତେ ଉତ୍ତେଜନା ସୃଷ୍ଟି ହୋଇଥିଲା ଯେ ସେ ରାତିସାରା ଉଜାଗର ରହିଥିଲେ ।

ଏସବୁ ସମସ୍ୟାର ନିରାକରଣ ପାଇଁ ଗ୍ରାମମାନଙ୍କରେ କୁଟୀରଶିଳ୍ପ, ଗ୍ରାମ୍ୟଶିଳ୍ପ ଓ କ୍ଷୁଦ୍ରଶିଳ୍ପର ବ୍ୟବସ୍ଥା କରିବାକୁ ହେବ । ଏପରି ଭାବରେ କାମ ଯୋଗାଇ ଦେବାକୁ ହେବ ଯେ, ଲୋକମାନେ ନିଜ ପରିବାର, ନିଜ ଗାଁ, ନିଜ ସମାଜ ଓ ନିଜ ପରିବେଶ ମଧ୍ୟରେ କାମ କରିପାରିବେ । ଆମକୁ ଦେଖିବାକୁ ହେବ ଯେ ସେମାନେ ଯେପରି ପେଟର ଦାଉ ଓ ଅବସ୍ଥାର ଚାପରେ ପରିବେଶରୁ କକ୍ଷଚ୍ୟୁତ ହୋଇ ନ ପଡ଼ନ୍ତି ।

ଗ୍ରାମର ଏ ସମସ୍ତ ଆର୍ଥିକ ସମସ୍ୟାର ସମାଧାନ କଲାବେଳେ ମୂଳପ୍ରଶ୍ନଟି ବାରମ୍ବାର ମନ ଭିତରେ ଉହୁଁକି ମାରେ । ଆମର ଏତେ ଅଭାବ କାହିଁକି ? ଆମ ଭିତରେ ଏତେ ଦାରିଦ୍ର୍ୟ, ବେକାରୀ, ଶୋଷଣ, ଅସାମ୍ୟ, ଅନ୍ୟାୟ କାହିଁକି ? ସବୁର ମୂଳରେ ଅଛି ଆମ ଲୋକସଂଖ୍ୟାର ବିସ୍ଫୋରଣ । ପରିବାର ନିୟନ୍ତ୍ରଣ ବିନା ଆମର ସମସ୍ତ ଯୋଜନାବଦ୍ଧ ପ୍ରଗତି ପାଇଁ ପ୍ରୟାସ ନିଷ୍ଫଳ ହେବ ।

ସାମାଜିକ ଚିତ୍ର:

ଆମର ସାମାଜିକ ସ୍ଥିତି ଓ ପ୍ରଗତି ଆମ ସାମାଜିକ ଚେତନା ସହିତ ଘନିଷ୍ଠ ଭାବେ ସଂଶ୍ଳିଷ୍ଟ । ଗାଁରେ ହରିଜନମାନେ ଯେ ଆହୁରି ଅସ୍ପୃଶ୍ୟ ହୋଇ ରହିଛନ୍ତି - ଏହା ଆମର ନିମ୍ନ ସାମାଜିକ ଚେତନାର ପରିପ୍ରକାଶ । ଗାଁକୁ ଗଲେ ଏହି କଳଙ୍କ ପ୍ରତି ଜଣେ ପର୍ଯ୍ୟବେକ୍ଷକର ଦୃଷ୍ଟି ସ୍ୱତଃ ଆକର୍ଷିତ ନ ହୋଇ ରହିପାରେ ନାହିଁ । ସେମାନଙ୍କ ପଡ଼ା, ଗାଁଠାରୁ ଟିକିଏ ଦୂରରେ । ସେମାନେ ଗାଁ କୂଅରୁ ପାଣିନେଇ ପାରନ୍ତି ନାହିଁ । ଗାଁସଭାରେ ଅନ୍ୟମାନଙ୍କ ସଙ୍ଗେ ଏକାଠି ବସନ୍ତି ନାହିଁ । କେହି ତାଙ୍କୁ ଛୁଇଁଦେଲେ, ସେ ଗାଧୋଇ ଦେହର ଶୁଚିତା ଫେରାଇ ଆଣନ୍ତି । ସେମାନଙ୍କୁ ମୂଲ କ୍ୱଚିତ୍ ମିଳେ । ରୋଜଗାରର ପନ୍ଥା ଅତ୍ୟନ୍ତ ସୀମିତ । ସେମାନେ ଦରିଦ୍ର, ନିଃସ୍ୱ, ଅସହାୟ, ନିଷ୍ପେଷିତ ଓ ଅବହେଳିତ । ସେମାନେ ଭୋକିଲା ଆର୍ତ୍ତ ଓ ମର୍ଯ୍ୟାଦା ରହିତ । ସମାଜରେ ମଣିଷପରି ବଞ୍ଚିବାର, ବଢ଼ିବାର ବିକାଶ ଲାଭ କରିବାର ସେମାନଙ୍କର ନାହିଁ । ସେମାନେ ଆମ ସାମାଜିକ ବିବେକ ପ୍ରତି ଏକ ସ୍ଥାୟୀ ଆହ୍ୱାନ । ସେତେଦିନ ପର୍ଯ୍ୟନ୍ତ ସମାଜର କ୍ରୂର ବ୍ୟୁହ୍ୟରୁ ସେମାନଙ୍କର ପରିତ୍ରାଣ ନାହିଁ । ଏହି ଅଭିଶାପରୁ ମୁକ୍ତିପାଇଁ ଏକମାତ୍ର ପଥ ହେଉଛି ଶିକ୍ଷା। କିନ୍ତୁ ସେମାନେ ଅଭାବ, ଅନଟନରେ ଏତେ ସଢୁଥାନ୍ତି ଯେ, ଦୁଆର ମୁହଁ ସ୍କୁଲକୁ ପିଲାକୁ ପଠାଇ ପାରନ୍ତି ନାହିଁ । ପିଲା ହୁଏ ପୋଢୁଆ ମାହାର । ପେଟରେ ଓଦାକନା ପକାଇ ପାଠ ପଢ଼ାଯାଇ ପାରେନା ।

ଯେଉଁ ଦ୍ୱିତୀୟ କଥା ଆମ ଆଖି ଆଗରେ ପଡ଼େ, ତାହା ହେଉଛି ନାରୀମାନଙ୍କ ଅବସ୍ଥା । ଗୋଟିଏ ଘଟଣାରୁ ଏହା ସହଜରେ ଅନୁମିତ ହେବ । ଗୋଟିଏ ଝିଅ ୧୦ ବର୍ଷ ହେଲା ଆମଗାଁକୁ ବୋହୂ ହୋଇଆସିଥାଏ । ତାର ପିଲା ହେଉ ନଥାନ୍ତି । ଶାଶୁ, ନଣନ୍ଦ, ସ୍ୱାମୀ ସାଇପଡ଼ିଶା ଧରି ନେଇଥାନ୍ତି ଯେ, ଏଥିପାଇଁ ସ୍ତ୍ରୀ ଦାୟୀ । ବୋହୂଟି ବହୁତ ଗଞ୍ଜଣା ଶୁଣୁଥାଏ । ସ୍ୱାମୀର ଧୈର୍ଯ୍ୟଚ୍ୟୁତି ଘଟିଲା ପରେ, ଠିକ୍ କଲା ଯେ ତାକୁ ପରିତ୍ୟାଗ କରିବ । ଗାଁ ମୁଖିଆଙ୍କୁ ଦରଖାସ୍ତ କଲା । ସେମାନେ ବିଚାର କଲେ । ୨୦ ନଉତି ଧାନ, କେତେଖଣ୍ଡ ଲୁଗା ଓ ଆଉ କିଛି ଦେଇ ସବୁଦିନ ପାଇଁ ଝିଅଟିକୁ ନିର୍ବାସିତ କରାଗଲା । ବୋହୂଟି ଗାଁ ଛାଡ଼ି ଗଲବେଳେ ବାହୁନି ବାହୁନି କାନ୍ଦୁଥାଏ । ସେ କାନ୍ଦ ପଥରକୁ ପାଣି କରିଦେବ । ଗାଁ ଯାକର ସ୍ତ୍ରୀ ଲୋକମାନେ ଦାଣ୍ଡକୁ ଆସି ଏ ହୃଦୟ ବିଦାରକ ଦୃଶ୍ୟ ଦେଖି ଆଖିରୁ ଲୁହ ଗଡ଼ାଇଥାନ୍ତି । ସମସ୍ତେ ଆହା ଆହା କଲେ, କିନ୍ତୁ କେହି ରଖି ପାରିଲେ ନାହିଁ । ଝିଅଟି ବାପଘରେ ଅତି ସନ୍ତର୍ପଣରେ ପହଞ୍ଚିଲା । ମୋର ବାପା (ଲିଙ୍ଗରାଜ ହଜାରୀ) ଚାକିରୀରୁ ଅବସର ଗ୍ରହଣ କରି ଗାଁରେ ଥାନ୍ତି । ତାଙ୍କୁ ଏକଥା ବହୁତ ବାଧିଲା । ନିଷ୍ପତ୍ତିର ପୁର୍ନବିଚାର ପାଇଁ, ବୋହୂଟି ଦ୍ୱାରା ଗାଁ ସଭାକୁ ଦରଖାସ୍ତ କରାଇଲେ । ସଭା ବସିଲା । ବାପା କହିଲେ ଏ ନିଷ୍ପତ୍ତି ଅନ୍ୟାୟ । ଏହା ବିରୁଦ୍ଧରେ ନିଜର ସମସ୍ତ ସମ୍ପତ୍ତି ଓ ଶକ୍ତି ଦେଇ ଲଢ଼ିବେ । ଲୋକମାନଙ୍କର ସ୍ଥାଣୁ ଚେତନାରେ ଆଲୋଡ଼ନ ସୃଷ୍ଟି ହେଲା । ରଥ ଚକ୍ର ଲେଉଟିଲା । ବୋହୂ ଶାଶୂ ଘରକୁ ଫେରିଲା । ନାରୀମାନଙ୍କର କେତେକ ସମସ୍ୟା ଏ ପର୍ଯ୍ୟନ୍ତ ରହିଛି । କେତେକ ଜାତି ଓ ସମାଜରେ ଏ ପର୍ଯ୍ୟନ୍ତ ବିଧବା ବିବାହର ପ୍ରଚଳନ ନାହିଁ । ଜୀବନ ସଂଗ୍ରାମ ପାଇଁ ପ୍ରସ୍ତୁତ ନକରି, ୧୪,୧୫ ବର୍ଷରେ ଝିଅମାନଙ୍କୁ ବାହା କରି ଦିଆଯାଉଛି ।

ଗାଁ ଗଣ୍ଡାର ଲୋକମାନଙ୍କ ମଧ୍ୟରେ କିପରି ଅନ୍ଧ ବିଶ୍ୱାସ ଓ କୁସଂସ୍କାର ପୂରି ରହିଛି, ସେମାନଙ୍କ ଦୃଷ୍ଟିକୋଣ କିପରି ବୈଜ୍ଞାନିକ ନୁହେଁ, ତାର ବହୁଳ ଦୃଷ୍ଟାନ୍ତ ରହିଛି । କିଛି ବର୍ଷ ତଳେ ଆମ ଗାଁରେ ନିଆଁ ଲାଗିଲା । ବିଧବା ବେଶ୍ୟାଟିଏ ବୟସ ୬୦ରୁ ଉର୍ଦ୍ଧ୍ୱ । ସେ ସମସ୍ତଙ୍କର ଘୃଣାର ପାତ୍ର । ତା ଉପରେ ଅନେକଙ୍କର ସନ୍ଦେହ ଯେ, ସେ ନିଆଁ ଲଗାଇଛି । ଗାଁ ସାରା ଫୁସ୍‌ଫାସ୍ ହେଉଥାନ୍ତି । ଗୁଣିଆ ଡ଼କାଗଲା । ସେ ୪ଜଣ ଯୁବକଙ୍କୁ ଗୋଟିଏ ଦିନ ଶୁଚିମନ୍ତ ଭାବରେ ରଖି, ଥରେ ଅରୁଆ ଭାତ ଖୁଆଇ, ସେମାନଙ୍କର ଚିନ୍ତାକୁ ନିୟନ୍ତ୍ରଣ କରି ରଖିଲା । ତା ଆରଦିନ ସକାଳୁ ସେ ଚାରିଜଣଙ୍କର କାନ୍ଧରେ ଗୋଟିଏ ଦଉଡ଼ିଆ ଖଟକୁ ବୁହାଇ ପାଲା ଆରମ୍ଭ କରାଗଲା । ସେମାନେ ତୀର ବେଗରେ ଯାଇ ଖଟ ଦ୍ୱାରା ସେ ବେଶ୍ୟାକୁ ନିର୍ମମ ଭାବେ ଆଘାତ

କରୁଥାନ୍ତି । ସେ ଭୟ, ଯନ୍ତ୍ରଣା ଓ ବିକଳରେ ଚିତ୍କାର କରୁଥାଏ । କେତେକ ଲୋକ ତାର ଚିତ୍କାରକୁ ବିଦ୍ରୂପ କରି ଦୁଷ୍କାମୀର ଆନନ୍ଦ ଉପଭୋଗ କରୁଥାନ୍ତି । ଖଟଦ୍ୱାରା ପ୍ରହାର ପରେ ପ୍ରହାର କରାଯାଉଥାଏ । ବୃଦ୍ଧା ବେଶ୍ୟା ଭୂଲୁଣ୍ଠିତ । ତାର ଚୁଟିକୁ ଧରି ଘୋଷାଡ଼ି ଘୋଷାଡ଼ି ଠିଆ କରାଯାଉଥାଏ । ପ୍ରହାର ପରେ ପ୍ରହାର । ସେ ହୃଦୟ ବିଦାରକ ଦୃଶ୍ୟ ଅବର୍ଣ୍ଣନୀୟ । ଲେଖକ ଘଟଣା ସ୍ଥଳରେ ନଥିଲା । ଏ ପ୍ରକାର କୁତ୍ସିତ କାଣ୍ଡ, ଓଡ଼ିଶାରେ ଗାଁ ଗହଳିରେ ଏ ପର୍ଯ୍ୟନ୍ତ ଚାଲିଛି । ଏହା ଏକ ଉଦ୍ଦେଶ୍ୟ ସାଧିତ କରୁଛି । ଗ୍ରାମ୍ୟ ଜୀବନର ନୀରସତାରେ କ୍ଷଣିକ ଉତ୍ତେଜନା ସୃଷ୍ଟି କରୁଛି ।

ଅନ୍ୟ ଗାଁର ଗୋଟିଏ ଦରିଦ୍ର ପିତୃହୀନ ଝିଅ ଆମଗାଁର ଜଣେ ଯୁବକଙ୍କ ଘରେ ରହି ଗୁହାଳ କାଢ଼ିବା, ବାସନ ମାଜିବା, ପାଣି ଆଣିବା ଆଦି କାମ କରୁଥାଏ । ଉନ୍ମତ୍ତ ଯୁବକର ତା ଉପରେ ଲୋଲୁପ ଦୃଷ୍ଟି ପଡ଼ିଲା । ସେ ଗର୍ଭଧାରଣ କଲା । ଜଣାପଡ଼ିବା ପରେ, ବିଷାକ୍ତ ଔଷଧ ଦେଇ ଗର୍ଭାସ୍ଥିତ ପିଲାଟିକୁ ମାରିଦେବାକୁ ପ୍ରଯତ୍ନ କରାଗଲା । ସେଥିରେ ସଫଳ ନ ହେବାରୁ ତାକୁ ଶୁଆଇ ପାଦରେ ଦଳାଗଲା । ଗର୍ଭପାତ ପୂର୍ବରୁ ବିଚରା ନିରୀହା ଝିଅଟି ଅକଥନୀୟ ଯନ୍ତ୍ରଣାରେ ପ୍ରାଣତ୍ୟାଗ କଲା । ଗାଁଠାରୁ ବହୁଦୂରକୁ ନେଇ ତାକୁ ନିଆଁରେ ଜାଳି ଦିଆଗଲା । ଗାଁରେ ସମସ୍ତେ ଯୁବକଙ୍କର ଏ ଅପକୀର୍ତ୍ତିର ନିନ୍ଦା ରଟନା କଲେ । ନିରୀହା ଝିଅଟି ପାଇଁ କେତେ ଦୁଃଖ କଲେ । କିନ୍ତୁ ଏ ନାରକୀୟ କାଣ୍ଡର ବିଚାର ହେଲା ନାହିଁ । ଯୁବକ ଅନେକ ଦିନ ଘର କୋଣରେ ଲୁଚି ରହିଲା । ମୁହଁ ଦେଖାଇ ପାରିଲା ନାହିଁ । ଅବଶ୍ୟ ସହରରେ, ଯେଉଁଠାରେ ସାମାଜିକ ଚାପ ଖୁବ୍ କମ୍, ଏ ପ୍ରକାର ଘଟଣା ଅଧିକ ସହଜରେ ଘଟୁଛି ।

ଗାଁ ଗହଳିରେ ବିବାହ, ଦଶାହାଦିରେ ଆବଶ୍ୟକତାଠାରୁ ଯଥେଷ୍ଟ ଅଧିକ ଖର୍ଚ୍ଚ କରାଯାଉଛି । ଝିଅ ଘରୁ ଗଲାପରେ, ଲୋକମଲାପରେ, ଗ୍ରାମବାସୀଙ୍କୁ ଭୋଜି ଦିଆଯାଉଛି । ବୋଝ ଉପରେ ନଳିତା ବିଡ଼ା । ଲୋକେ ଧାର କରଜ କରି, ଜମିବାଡ଼ି ବିକ୍ରିକରି, ସର୍ବସ୍ୱାନ୍ତ ହୋଇ ଭୋଜି ଖୁଆଉଛନ୍ତି । ଲୋକଙ୍କ ମଧ୍ୟରେ ଏ ପ୍ରକାର ପରମ୍ପରାକୁ ଭାଙ୍ଗିବାକୁ ସାହସ ନାହିଁ । ସେମାନେ ସମାଜର ବାସନ୍ଦକୁ ଡରୁଛନ୍ତି । ସମାଜରେ ଯଦି ସୁସ୍ଥ ଜନମତ ସୃଷ୍ଟି ହୋଇପାରନ୍ତା, ତାହାହେଲେ ଅନେକ ଶାପମୁକ୍ତ ହୁଅନ୍ତେ ।

ସୁସ୍ଥ ଜନମତ ସୃଷ୍ଟି ହେବ କିପରି ? ସମାଜର ସ୍ଥିତି ନ୍ୟାୟ, ସାମ୍ୟ ଉପରେ ପ୍ରତିଷ୍ଠିତ ତ ? ଐକ୍ୟ ରହିଛି ତ ? ଅଭାବ ଯେଉଁ ନିର୍ମମ ଓ ତୀବ୍ର ସାମାଜିକ ପ୍ରକ୍ରିୟା ସୃଷ୍ଟିକରେ ସେଥିରୁ ଅବ୍ୟାହତି ଅଛି ତ ? ଗୋଟିଏ କଥା ଧରାଯାଉ । ଦେଖାଯାଉଛି, କେବଳ ଧନୀ ଗରିବକୁ ଶୋଷଣ କରୁନାହିଁ, ଗରିବ ଅପେକ୍ଷାକୃତ ଗରିବକୁ ମଧ୍ୟ

ଶୋଷଣ କରୁଛି । ଆମ ଗାଁର ଦରିଦ୍ର ଚୌକିଦାର । ତା'ର ସମସ୍ତ ଜମି (୩ ଏକର), ୯ଟି ଦରିଦ୍ର ପରିବାର ନାନା କଳ କୌଶଳ କରି ନେଇଗଲେ । ଚାଉଳ, ଶୁଖୁଆ ଧାର ଦେଇ ନେଇଗଲେ । ସେ ତା'ର ପ୍ରାପ୍ୟର ଏକ ଚତୁର୍ଥାଂଶ ପାଉଛି କି ନାହିଁ ସନ୍ଦେହ । ଏ ଅବସ୍ଥାରେ ଯେତେବେଳେ ସାମାଜିକ ଐକ୍ୟ ନାହିଁ, ଜନମତ କିପରି ସୃଷ୍ଟି ହେବ ? ପ୍ରଗତି ପାଇଁ ପରିବର୍ତ୍ତନର ସୂତ୍ର କିପରି ଆରମ୍ଭ ହେବ ?

ଶିକ୍ଷାର ପ୍ରସାର ଘଟିଲେ, ପରିବର୍ତ୍ତନର ସୁଅ ଅଧିକ ବେଗରେ ପ୍ରବାହିତ ହୁଅନ୍ତା । ଗୋଟିଏ କଥା ନିଆଯାଉ । ଗାଁମାନଙ୍କର ଶତକଡ଼ା ୯୫ ଭାଗ ଲୋକ ହୁକ୍‌ୱାର୍ମ ଦ୍ୱାରା ଆକ୍ରାନ୍ତ । ଏହି ପରାଙ୍ଗପୁଷ୍ଟ ଜୀବାଣୁ ଗ୍ରାମବାସୀଙ୍କର ରକ୍ତହୀନତାର ମୂଳ କାରଣ । ସେମାନେ କାମ କରିବାକୁ ଶକ୍ତି ପାଆନ୍ତି ନାହିଁ । ଯଦି ପ୍ରତି ଘରେ ବରପାଲି ପାଇଖାନା ହୋଇପାରନ୍ତା ଓ ଲୋକମାନେ ବାହାରକୁ ଝାଡ଼ା ଯାଆନ୍ତେ ନାହିଁ, ତାହାହେଲେ ଏହି ମାରାତ୍ମକ ରୋଗର କବଳରୁ ରକ୍ଷାପାଆନ୍ତେ । ଗରିବ, ମଧ୍ୟବିତ୍ତ ସମସ୍ତେ ଦେହ ଖରାପ ପାଇଁ ଟଙ୍କା ଖର୍ଚ୍ଚ କରନ୍ତି । କିନ୍ତୁ ପରିବାରର ଔଷଧ ଖର୍ଚ୍ଚ ବର୍ଷରେ ଯାହା ହୁଏ, ତା'ଠାରୁ କମ୍ ଖର୍ଚ୍ଚରେ ପାଇଖାନାଟିଏ କରନ୍ତି ନାହିଁ । ମଶାରୀ କରନ୍ତି ନାହିଁ । ପରିବାର ନିୟନ୍ତ୍ରଣ ଠିକ୍ ସମୟରେ କରନ୍ତି ନାହିଁ । ପିଲା ଭଗବାନଙ୍କର ଦାନ ବୋଲି ଭାବନ୍ତି । ନିଜକୁ ଅତ୍ୟନ୍ତ ଅସହାୟ ମନେ କରନ୍ତି । ଭାଗ୍ୟବାଦୀ ହୋଇପଡ଼ନ୍ତି । ଯୋଜନାବଦ୍ଧ ଭାବେ ପରିବାରର ଉନ୍ନତି ପାଇଁ ପ୍ରଯତ୍ନ କରିବାର ଇଚ୍ଛା ଭାଙ୍ଗିଯାଏ । ମରିଯାଏ ।

**ରାଜନୀତିକ ଚିତ୍ର:**

ପ୍ରତି ଗାଁରେ ଅସୀମ ଲୋକଶକ୍ତି ରହିଛି । ଗୋଟିଏ ଗାଁ ଚାହିଁଲେ କ'ଣ ବା ନ କରିପାରେ ! ପର୍ବତ ଟାଳିପାରେ । ଗ୍ରାମର ପ୍ରଗତିରେ ସମ୍ପୂର୍ଣ୍ଣ ବିପ୍ଳବ ଆଣିପାରେ । ଏକଥା ସମସ୍ତେ ସ୍ୱୀକାର କରିବେ ଯେ, କୌଣସି ଦେଶର ସରକାରଙ୍କର, ଦେଶକୁ ଉନ୍ନତି କରିବାର ଶକ୍ତି ସୀମିତ । ଲୋକଶକ୍ତିର ଯଥାର୍ଥ ବିନିଯୋଗ ଦ୍ୱାରା ହିଁ ଜର୍ମାନୀ, ଜାପାନ, ଇସ୍ରାଏଲ୍ ଆଦି ଦେଶ ଉନ୍ନତ ହୋଇଛନ୍ତି । ଆମର ବିରାଟ ଲୋକଶକ୍ତିର ଯଥାର୍ଥ ବିନିଯୋଗ ହୋଇପାରୁନି କାହିଁକି ? ଏଥିପାଇଁ ଆମ ଆଗରେ ପ୍ରତିବନ୍ଧକ କ'ଣ ?

ସର୍ବପ୍ରଧାନ ପ୍ରତିବନ୍ଧକ ହେଉଛି, ଓଡ଼ିଶା ତଥା ଭାରତର ପ୍ରାୟ ପ୍ରତ୍ୟେକ ଗ୍ରାମରେ ରାଜନୀତିକ ସଂକଳ୍ପ ଭାଙ୍ଗିଯାଇଛି, ନଷ୍ଟ ହୋଇଯାଇଛି । ରାଜନୀତି ଶକ୍ତିର ଉତ୍ସ ହେଉଛି ଏକତା । ଏକତା ଆର୍ଥିକ, ସାମାଜିକ ସାମ୍ୟ ଉପରେ ହିଁ ଆଧାରିତ ହୋଇପାରେ । ଆଜି ଯେଉଁଆଡ଼େ ଆଖି ପକାଇଲେ ଦେଖାଯାଏ - ଗାଁ ଭିତରେ କନ୍ଦଳ, ଗାଁ ଭାଗ ଭାଗ ହୋଇଯାଇଛି । ଏ ବିଭେଦର ଅନେକ କାରଣ ରହିଛି ।

ଆମର ସାମାଜିକ ସ୍ଥିତି ଯେପରି ଆର୍ଥିକ ବୈଷମ୍ୟ ଓ ସାମାଜିକ ଅସାମ୍ୟ ଉପରେ ପ୍ରତିଷ୍ଠିତ, ତାହା ଏକତାର ଦୁର୍ଗକୁ ଅହରହ ଭୁଷୁଡ଼େଇବାରେ ଲାଗିଛି ।

ପୁନଶ୍ଚ ଆବାହମାନ କାଳରୁ ପ୍ରତି ଗାଁରେ ପଞ୍ଚାୟତ ଥିଲା । ଏହା ଗାଁର ରାଜନୀତିକ ଶକ୍ତିର ଉତ୍ସର ପ୍ରତୀକ ଥିଲା । କିନ୍ତୁ ବର୍ତ୍ତମାନ ପ୍ରତି ଗାଁରେ ଏହା ମୃତପ୍ରାୟ ରହିଛି । ଏହାକୁ ସଂସ୍କାର କରି ପୁନରୁଦ୍ଧାର କରିବା ସରକାରଙ୍କର ନୈତିକ ଦାୟିତ୍ୱ । ତେଣୁ ଯଥାଶୀଘ୍ର ପ୍ରତ୍ୟେକ ଗାଁର ସଂସ୍କାରିତ ପଞ୍ଚାୟତକୁ ସରକାରୀ ସ୍ୱୀକୃତି ଦିଆଯିବା ଉଚିତ । ବର୍ତ୍ତମାନ ଓଡ଼ିଶାର ପ୍ରାୟ ପ୍ରତି ୧୫ଟି ଗାଁରେ ଗୋଟିଏ ପଞ୍ଚାୟତ ରହିଛି । ଏହାଦ୍ୱାରା କୌଣସି ବିଶେଷ ଉଦ୍ଦେଶ୍ୟ ସାଧିତ ହେଉନାହିଁ ।

ତୃତୀୟରେ ପ୍ରତି ଗାଁରେ ଏପରି କେତେକ ଲୋକ ଅଛନ୍ତି, ଯେଉଁମାନେ ଭାବନ୍ତି ସମୂହ ସ୍ୱାର୍ଥରେ ତାଙ୍କର ସ୍ୱାର୍ଥ ନିହିତ ନୁହେଁ । ସେମାନେ ଭାବନ୍ତି, ଗ୍ରାମସ୍ୱାର୍ଥ ଓ ବ୍ୟକ୍ତିସ୍ୱାର୍ଥ ପରସ୍ପର ପରିପୂରକ ନୁହନ୍ତି । ସେମାନେ ସର୍ବଦା ଗ୍ରାମର ଏକତା ପ୍ରତି ପ୍ରତିକୂଳ ମନୋଭାବ ପ୍ରଦର୍ଶନ କରନ୍ତି । ସେମାନେ ଭାବନ୍ତି ଯେ, ଗ୍ରାମରେ ଏକତା ରହିଲେ ସେମାନଙ୍କର କ୍ଷତି ହେବ । ସରକାରୀ ଜମି ଜବରଦଖଲ କରିହେବନାହିଁ । ଗାଁ ପୋଖରୀରୁ ମାଛ ମନଇଚ୍ଛା ମାରିହେବ ନାହିଁ । ଗାଁ ସରହଦରେ ଥିବା ସରକାରୀ ଗଛ ମନଇଚ୍ଛା କାଟିହେବ ନାହିଁ । ଗାଁ କୋଠରୁ ନେଇଥିବା ଧାନକୁ ଫେରାଇବାକୁ ପଡ଼ିବ । ଗାଁ କୋଠକାମରେ ବେଠି ଖଟିବାରୁ ପରିତ୍ରାଣ ମିଳିବ ନାହିଁ । ମନ ଇଚ୍ଛାରେ ଚଳିହେବ ନାହିଁ ।

ଚତୁର୍ଥ ପ୍ରତିବନ୍ଧକ ହେଉଛି, ଅନେକ ଗ୍ରାମରେ ଗରିବ ଓ ଧନୀଙ୍କ ମଧ୍ୟରେ ପ୍ରଚ୍ଛନ୍ନ ସଂଘର୍ଷ ଚାଲିଛି । କେତେକ ଧନୀ ଲୋକ ଗାଁ ଚଳାଇ, କ୍ଷମତାରେ ରହି କ୍ଷମତାର ଅସଦ୍ ବ୍ୟବହାର କରୁଛନ୍ତି । ବିଚାରରେ ପକ୍ଷପାତ କରୁଛନ୍ତି । ଗ୍ରାମର ଅର୍ଥର କିଛି ପରିମାଣ ଆତ୍ମସାତ୍ କରୁଛନ୍ତି । ଏହାର ପ୍ରତିବାଦ ହେଉଛି । ଫଳରେ ଗରିବ ଲୋକେ କ୍ଷମତାକୁ ଆସୁଛନ୍ତି । କିନ୍ତୁ ଧନୀ ଓ ପ୍ରଭାବଶାଳୀ ଲୋକେ ପଛରୁ ରହି କଳ ମୋଡ଼ୁଛନ୍ତି । କ୍ଷମତାସୀନ ଗରିବଶ୍ରେଣୀ ଗାଁ ଚଳାଇପାରୁନାହାନ୍ତି । ପୁଣି ଧନୀ ପ୍ରଭାବଶାଳୀ ବ୍ୟକ୍ତିମାନେ କ୍ଷମତାକୁ ଫେରୁଛନ୍ତି । ଗରିବ ଦୁର୍ବଳ ଶ୍ରେଣୀ ତା'ର ପ୍ରତିଶୋଧ ନେଉଛନ୍ତି । ଅସହଯୋଗ କରୁଛନ୍ତି । ସେମାନଙ୍କୁ କାମ କରିବାକୁ ସୁଯୋଗ ଦିଆଯାଇ ନଥିଲା । ସେମାନେ ମଧ୍ୟ ଗାଁର ପ୍ରଗତିମୂଳକ କାମ ଅନ୍ୟ କାହା ଦ୍ୱାରା କରାଇ ଦେଉନାହାନ୍ତି । ଉଭୟ କୂଳ କ୍ରୋଧ ଜର୍ଜରିତ । ସେ କ୍ରୋଧରେ ସମସ୍ତେ ଜଳିପୋଡ଼ି ଯାଉଛନ୍ତି । ଗାଁ ହେଉଛି ନିରିମାଖୀ । ଛାରଖାର ହେଉଛି ।

ଭର୍ତ୍ତୃହରି କହନ୍ତି, ତିନି ପ୍ରକାରର ନେତା ଅଛନ୍ତି : ଉତ୍ତମ, ମଧ୍ୟମ ଓ ନିକୃଷ୍ଟ । ଉତ୍ତମ ନେତା, ଯେ କୌଣସି ଗୋଷ୍ଠି କାମ କରିବା ପୂର୍ବରୁ ବହୁ ଭାବିଚିନ୍ତି କାର୍ଯ୍ୟ ଆରମ୍ଭ କରନ୍ତି । ଥରେ କାମ ଆରମ୍ଭ କଲେ ଯେତେ ବାଧାବିଘ୍ନ ଆସୁ, ଯେତେ କଷ୍ଟ ହେଉ, ନ ସାରି ଛାଡ଼ନ୍ତି ନାହିଁ । ମଧ୍ୟମ ଧରଣର ନେତା କୌଣସି କାମ ଆରମ୍ଭ କରି ବାଧାବିଘ୍ନ ପଡ଼ିଲେ, ଅଧାପନ୍ତରିଆ ଭାବେ ଛାଡ଼ିଦିଅନ୍ତି । ନିକୃଷ୍ଟ ଧରଣର ନେତା ବାଧାବିଘ୍ନ ପଡ଼ିବାର ଆଶଙ୍କାରେ କୌଣସି କାର୍ଯ୍ୟ ଆରମ୍ଭ କରନ୍ତି ନାହିଁ । ଆମ ଗାଁଗହଳିରେ ଉତ୍ତମ ଧରଣର ନେତା ବିରଳ । ସେଇମାନେ ହିଁ ଗ୍ରାମକୁ ଏକାଠି କରି ପ୍ରଗତି ପଥରେ ଆଗେଇ ନିଅନ୍ତେ । ସେମାନଙ୍କ ଅଭାବରୁ ଗ୍ରାମ ଏକତା ଓ ପ୍ରଗତି ଉଭୟରୁ ବଞ୍ଚିତ ।

ଉତ୍ତମ ନେତୃତ୍ୱ ଶିକ୍ଷିତ ଲୋକଙ୍କଠାରୁ ଆଶା କରିବା ସ୍ୱାଭାବିକ । କିନ୍ତୁ ଆଧୁନିକ ଶିକ୍ଷା ପାଉଥିବା ବ୍ୟକ୍ତିମାନେ ସାଧାରଣତଃ ସ୍ୱାର୍ଥ ସର୍ବସ୍ୱ ହୋଇପଡୁଛନ୍ତି । ତାଙ୍କର ବୁଦ୍ଧି, ବୃତ୍ତି ସବୁର ପ୍ରୟୋଗ ସ୍ୱାର୍ଥସିଦ୍ଧି ପାଇଁ । ସମାଜର କଲ୍ୟାଣ ପାଇଁ ତାଙ୍କ ହୃଦୟରେ ବ୍ୟାକୁଳତା ନାହିଁ । ଲେଖକ ଅନେକ ଶିକ୍ଷିତ ଲୋକଙ୍କଠାରୁ ଗ୍ରାମବାସୀଙ୍କ ବିରୁଦ୍ଧରେ ଖାଲି ଅଭିଯୋଗ ନୁହେଁ, ବିଷୋଦ୍‌ଗାର ବ୍ୟଥିତ ହୃଦୟରେ ଶୁଣିଛି । ସେମାନଙ୍କ ମତରେ ଗାଁଲୋକେ ସ୍ୱାର୍ଥପର, କ୍ଷୁଦ୍ରମନା, ଅଭଦ୍ର ସେମାନେ ଶିକ୍ଷିତ ଲୋକଙ୍କୁ ସମ୍ମାନ ଦେବା ଜାଣନ୍ତି ନାହିଁ । ଗାଁରେ ଟାଉଟର ଭର୍ତ୍ତି ହୋଇଗଲେଣି । ଗ୍ରାମ୍ୟ ଜୀବନ ବିଷାକ୍ତ ହୋଇଗଲାଣି । ଯଦି ଶିକ୍ଷିତ ଅବସ୍ଥା ସମ୍ପନ୍ନ ଲୋକେ ଏତେ ଆତ୍ମକୈନ୍ଦ୍ରିକ, ସ୍ୱାର୍ଥପର, କ୍ଷୁଦ୍ରମନା ଦରିଦ୍ର ଗ୍ରାମବାସୀ ତାହା ହେବା କିଛି ଅପ୍ରତ୍ୟାଶିତ କି ? ମୁଁ ଦେଖିଛି, ଅନେକ ଶିକ୍ଷିତ ଲୋକେ ଗାଁକୁ ଗଲେ କାହାକୁ ପଚାରନ୍ତି ନାହିଁ । କାହା ସୁଖଦୁଃଖରେ ଭାଗୀ ହୁଅନ୍ତି ନାହିଁ । ଦୁଆରରୁ ଓହ୍ଲାନ୍ତି ନାହିଁ । ପୋଖରୀ ହୁଡ଼ା ବା ନଦୀକୂଳରେ ବସିଲେ ତାଙ୍କ କାନ ବନ୍ଧା ଦେଇଥାନ୍ତି ରେଡିଓକୁ । ଗ୍ରାମର ସମୂହ ମଙ୍ଗଳ ପାଇଁ ତାଙ୍କ ହୃଦୟରେ ସ୍ପନ୍ଦନ ନାହିଁ, ଦରିଦ୍ର ଲୋକଙ୍କ ପାଇଁ ତାଙ୍କ ହୃଦୟ ନିଦାରୁଣ । କିନ୍ତୁ ସେମାନେ ଚାହାନ୍ତି, ଗ୍ରାମବାସୀ ତାଙ୍କୁ ଯଥାଯୋଗ୍ୟ ସମ୍ମାନ ଦିଅନ୍ତୁ ।

ସେମାନେ କେବେ ନିଜ ବିବେକକୁ ପଚାରିଛନ୍ତି କି ? ସେମାନେ ଯେଉଁ ଗ୍ରାମରେ ଜନ୍ମ ହେଲେ, ଯେଉଁ ପାଣି ପବନରେ ବଢ଼ିଲେ, ଯେଉଁଠି ତାଙ୍କର ଚରିତ୍ର ଗଠିତ ହେଲା, ଯେଉଁଠି ତାଙ୍କର ବ୍ୟକ୍ତିତ୍ୱର ବିକାଶ ହେଲା, ଯେଉଁ ଲୋକମାନଙ୍କର ସ୍ନେହ ଆଦରରେ ବୋଲି ହୋଇ ସେମାନେ ମଣିଷ ହେଲେ, ଯେଉଁ ଦରିଦ୍ର ଗ୍ରାମବାସୀ ତାଙ୍କ ଜମିରେ ଖଟି ତାଙ୍କୁ ଉତ୍ପାଦନ ଦିଅନ୍ତି - ସେଇ ଦରିଦ୍ର ଭାଇଭଉଣୀଙ୍କ ପାଇଁ

ସେମାନେ କ'ଣ କରିଛନ୍ତି ? ବର୍ଷରେ ସପ୍ତାହଟେ ଆସି ଗାଁରେ ରହନ୍ତି କି ? ଗ୍ରାମବାସୀଙ୍କ ପାଇଁ ସ୍ୱାର୍ଥ ତ୍ୟାଗ କରିଛନ୍ତି କି ? ତାଙ୍କ ପାଇଁ କଷ୍ଟ ସ୍ୱୀକାର କରିଛନ୍ତି କି ? ତାଙ୍କର ଉନ୍ନତି ପାଇଁ କାମ କରିଛନ୍ତି କି ? ଯଦି ଏସବୁ କିଛି କରିନାହାନ୍ତି, ତେବେ ଲୋକେ ତାଙ୍କୁ ଶ୍ରଦ୍ଧା କରିବେ କିପରି ? ସମ୍ମାନ କରିବେ କିପରି ? ଯେଉଁମାନେ ଶିକ୍ଷିତ, ଅବସ୍ଥାସମ୍ପନ୍ନ ସେମାନେ ସମାଜ ପାଇଁ ସ୍ୱାର୍ଥ ତ୍ୟାଗ କରିବେ ନାହିଁ । ଆଉ କ'ଣ ଦରିଦ୍ର ଲୋକେ କରିବେ ? ହଁ, ଦରିଦ୍ର ଲୋକେ ସ୍ୱାର୍ଥ ତ୍ୟାଗ କରି ଚାଲିଛନ୍ତି । ସେମାନେ ଅନେକାଂଶରେ ଉଦାରମନା- ନଚେତ୍ ଆଜି ଗାଁରେ ଗୋଷ୍ଠି ଜୀବନ ନଥାନ୍ତା ।

ଗ୍ରାମରୁ ଆସିଥିବା ଶିକ୍ଷିତ କର୍ମଚାରୀମାନଙ୍କୁ ମୁଁ ଯେତେବେଳେ ପଚାରେ, ଆପଣ ଅବସର ଗ୍ରହଣ ପରେ କାହିଁକି ଗାଁକୁ ଯିବେନାହିଁ, ସେମାନେ ଯୁକ୍ତି ବାଢ଼ନ୍ତି : ଗ୍ରାମରେ ଆଧୁନିକ ଜୀବନଧାରଣ ପାଇଁ ସୁଯୋଗ ନାହିଁ । ଗାଁକୁ ବସ୍ ଯାଏନାହିଁ । ଇଲେକ୍‌ଟ୍ରିସିଟି ନାହିଁ । ଡାକ୍ତରଖାନା ନାହିଁ । ସ୍କୁଲକଲେଜ ନାହିଁ । ବଜାର ନାହିଁ । ସମୟ କଟାଇବାକୁ କ୍ଲବ୍, ପାଠାଗାର, ଅବସର ବିନୋଦନ କେନ୍ଦ୍ର ନାହିଁ । ଅବସର କାଳରେ କିଛି ରୋଜଗାର କରିବାର ପନ୍ଥା ନାହିଁ, ଯାହାକି ଜଣେ ଚାହିଁଲେ ସହରରେ ପାଇପାରେ । ଏଥିରୁ କେତେକ ସୁବିଧା ଗାଁରେ ସୃଷ୍ଟିହେଲାଣି । ଅନେକ ଗାଁକୁ ବିଜୁଳି ଗଲାଣି । ରାସ୍ତାର ଉନ୍ନତି ହେଲାଣି । ପାଖଆଖରେ ସ୍କୁଲ, କଲେଜ, ଡାକ୍ତରଖାନା ହେଲାଣି । ଗୋଟିଏ ନିର୍ଦ୍ଦିଷ୍ଟ ଦିଗ ପ୍ରତି ଆମକୁ ଦୃଷ୍ଟି ଦେବାକୁ ପଡ଼ିବ । ଭାରତରୁ ଆମେରିକା, ଇଉରୋପକୁ ଆମ ବୁଦ୍ଧିଜୀବୀମାନେ ଚାଲିଯିବାରୁ ଆମେ ଉଦ୍‌ବିଗ୍ନ । କାରଣ ଏତଦ୍ୱାରା ଆମ ଜାତୀୟ ଜୀବନର ଗୁଣାତ୍ମକ ମାନ ହ୍ରାସ ପାଉଛି । କିନ୍ତୁ ଗ୍ରାମରୁ ନଗରକୁ ବ୍ରେନ୍ ଡ୍ରେନ୍ ହେବା ଦ୍ୱାରା କେତେଜଣ ଉଦ୍‌ବିଗ୍ନ ? ଗ୍ରାମରୁ ବୁଦ୍ଧିମାନ୍ ଶକ୍ତିମାନ୍, କର୍ମଠ ଲୋକମାନେ ସହରକୁ ଚାଲିଗଲେ, ଗ୍ରାମ୍ୟ ଜୀବନର ଗୁଣାତ୍ମକ ଅଭିବୃଦ୍ଧି ହେବ କିପରି ?

ଆଜି ଗାଁଗଣ୍ଡାର ଶିରୀ ତୁଟିବାର ଏକ ପ୍ରଧାନ କାରଣ ଗାଁ ଗାଁରେ ମକଦ୍ଦମା । ଆମର ଦୁଇଟି ପଡ଼ିଶା ଗ୍ରାମ ପାଟୁଳି ସାହି ଓ ସାନଗୋରଡ଼ା । ମକଦ୍ଦମାରେ ଯଥାକ୍ରମେ ଟ.୮୦,୦୦୦ ଓ ଟ.୪୦,୦୦୦ ନିକଟ ଅତୀତରେ ଖର୍ଚ୍ଚ କଲେଣି । କିଛି ବର୍ଷ ପରେ ପାଟୁଳି ସାହି ଗ୍ରାମ ଦୁଇ ଭାଗ ହୋଇ ଗୋଟିଏ ପକ୍ଷ ଲକ୍ଷେ ଓ ଅନ୍ୟପକ୍ଷ ଟ.୯୦,୦୦୦ଙ୍କା ଖର୍ଚ୍ଚ କଲେ ମକଦ୍ଦମାରେ । ତା'ର ଜବନୀକା ପଡ଼ିଲା ୧୯୮୩ରେ । କିନ୍ତୁ ସେ ଗ୍ରାମର ସ୍କୁଲଘର ଛପର କରିବାକୁ ଜଣପିଛା ଟ.୫.୦୦ ମାଗିଲେ, କେହି ଦେବାକୁ ପ୍ରସ୍ତୁତ ନୁହଁନ୍ତି । କେତେକ ଓକିଲ ଓ ପୋଲିସ ବସିଛନ୍ତି,

ଗ୍ରାମବାସୀଙ୍କୁ ସର୍ବସ୍ୱାନ୍ତ କରିବାକୁ । ତାଙ୍କୁ ଇନ୍ଧନ ଯୋଗାଉଛନ୍ତି ଗାଁର କେତେକ ଟାଉଟର ।  ଏ ପଙ୍ଗପାଳ ଦଳକୁ ଜବତ କରିବ କିଏ ? ଯଦି ଶିକ୍ଷିତ ଲୋକମାନେ ମଝିରେ ମଝିରେ  ନିଜ ଗାଁକୁ ଯାଇ ସମସ୍ୟା ସମ୍ପର୍କରେ ଅବହିତ ହୁଅନ୍ତେ, ଯଦି ଅବସର ଗ୍ରହଣ ପରେ ଗାଁରେ ବସବାସ କରନ୍ତେ, ପଙ୍ଗପାଳ  ଦଳ ପରାଙ୍ଗପୁଷ୍ଟ ଦଳ, ତାଙ୍କ କାର୍ଯ୍ୟକଳାପକୁ ସଙ୍କୁଚିତ କରିବାକୁ ବାଧ୍ୟ ହୁଅନ୍ତେ । ଗାଁ ପ୍ରତି  ସରକାରୀ କର୍ମଚାରୀଙ୍କର ଦୃଷ୍ଟି ଆକର୍ଷିତ ହୁଅନ୍ତା । ଗାଁକୁ ତା'ର ପ୍ରାପ୍ୟରୁ ବଞ୍ଚିତ କରିବାକୁ, ସରକାରୀ ଅର୍ଥ ତୋଷାରପାତ କରିବାକୁ, ସରକାରୀ କର୍ମଚାରୀ ଦ୍ୱିଧା ପ୍ରକାଶ କରନ୍ତେ । ଆଚାର୍ଯ୍ୟ କୃପାଳିନୀ କହନ୍ତି ଯେ, ଯୋଜନା ଖର୍ଚ୍ଚର ଶତକଡ଼ା ୩୦ ଭାଗ କାମରେ ଲାଗେ । ଗ୍ରାମ୍ୟ ରାସ୍ତା ପାଇଁ ଯେଉଁ ଟଙ୍କା ଆସୁଛି, ସେଥିରୁ ଶତକଡ଼ା ୪୦ ଭାଗ ଖର୍ଚ୍ଚ ହେଉଛି କି ନା ସନ୍ଦେହ । ଥରେ ଖୋର୍ଦ୍ଧା ଅଞ୍ଚଳର ଜଣେ ଛୋଟ କଣ୍ଟ୍ରାକ୍ଟର ଜଣେ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟରଙ୍କର ଉଚ୍ଛ୍ୱସିତ ପ୍ରଶଂସା କରୁଥିଲେ । କାରଣ, ମାତ୍ର ଟ.୩୦୦୦ର ରାସ୍ତା କାମ କରିଥିଲେ ମଧ୍ୟ, ତାଙ୍କର ଟ.୨୨,୦୦୦ ବିଲ୍ ସେ ପାଶ୍ କରିଦେଇଥିଲେ । ଗାଁରେ ଶିକ୍ଷିତ ଲୋକ ରହିଲେ, ଅସଙ୍ଗତି ପ୍ରତି ଅଫିସରଙ୍କ ଦୃଷ୍ଟି ଆକର୍ଷଣ କରିପାରିବେ । ସେ ନ ଶୁଣିଲେ ଉପରିସ୍ଥ ହାକିମ ବା ମନ୍ତ୍ରୀଙ୍କୁ ଜଣାଇପାରିବେ । ଏପରି  ସଚେତନାର ପରିବେଶରେ ଅଧିକାଂଶ ଅଫିସର ସର୍ବସାଧାରଣଙ୍କ ଅର୍ଥ ଆତ୍ମସାତ୍ କରିବାକୁ ଦ୍ୱିଧାବୋଧ କରିବେ ।

ସରକାରଙ୍କ ପକ୍ଷରୁ ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ଗାଁକୁ ସାହାଯ୍ୟ ମିଳିବାର ସୁଯୋଗ ରହିଛି । ଶିକ୍ଷିତ ଲୋକେ ଏ ସମ୍ପର୍କରେ ନିଜର ଗ୍ରାମବାସୀଙ୍କୁ  ଖବର ଦେଇପାରିବେ । ବିଭିନ୍ନ ସୂତ୍ରରୁ ସାହାଯ୍ୟ ପାଇଁ ଚେଷ୍ଟା କରିପାରିବେ । ସେମାନେ ଅବସର ଗ୍ରହଣ ପରେ ଗାଁରେ ରହିଲେ, ତାଙ୍କର ଅର୍ଥ ବିନିଯୋଗ ଗାଁରେ ହେବ । ଶ୍ରମଜୀବୀ କାମ ପାଇବେ । ମୋର ଦଦା ମେଡିକାଲ କଲେଜର ପ୍ରଫେସର ଚାକିରୀରୁ ଅବସର ଗ୍ରହଣ ପରେ ଗାଁରେ ରହୁଛନ୍ତି ।  ସେ ଗାଁରେ ଘର କରିବାରେ ଯେଉଁ ଅର୍ଥ ବିନିଯୋଗ କରୁଛନ୍ତି, ତଦ୍ୱାରା ଶ୍ରମଜୀବୀ କାମ ପାଉଛନ୍ତି । ସାଧାରଣତଃ ସହରରେ ଅର୍ଥ ଖଟା ଯାଉଥିବାରୁ, ସହରର ଶ୍ରୀ ଦିନକୁ ଦିନ ବୃଦ୍ଧିପାଉଛି । ଗାଁ ଯେଉଁ ତିମିର ସେହି ତିମିର ମଧ୍ୟରେ ସଢୁଛି ।

ଆମ ଦେଶର ଶତକଡ଼ା ୮୦ ଭାଗ ଲୋକ ଗାଁରେ ରହନ୍ତି । ଗ୍ରାମର ଉନ୍ନତି ନ ହେଲେ ଭାରତର ଉନ୍ନତି ଅସମ୍ଭବ । ଗ୍ରାମର ପ୍ରଗତି ପାଇଁ ଗ୍ରାମର ଶିକ୍ଷିତ, ସଂସ୍କୃତିସମ୍ପନ୍ନ, ସ୍ୱଚ୍ଛଳ ବ୍ୟକ୍ତିବୃନ୍ଦ ଅବସର ଗ୍ରହଣ ପରେ ଗାଁକୁ ଫେରି ଆସିବାକୁ ପଡ଼ିବ । ଫଳରେ ଗ୍ରାମର ଆର୍ଥିକ, ରାଜନୀତିକ, ସାମାଜିକ, ସାଂସ୍କୃତିକ, ବୌଦ୍ଧିକ,

ମାନବିକ, ନୈତିକ ଓ  ଆଧ୍ୟାତ୍ମିକ ଜୀବନ ସମୁନ୍ନତ ହେବ । ସେମାନଙ୍କ ଅର୍ଥ, ଧୀଶକ୍ତି, ଧାରଣା, ପ୍ରେରଣା ଦ୍ୱାରା ଗାଁରେ ଜଳସେଚନର ସୁବିଧା ହେବ, ଜଙ୍ଗଲ ସମ୍ପଦର ସୁରକ୍ଷା ହେବ, କୁଟୀର ଶିଳ୍ପ ଗଢ଼ିଉଠିବ, ଲୋକସଂଖ୍ୟା ନିୟନ୍ତ୍ରିତ ହେବ ଓ ନଗରର ଦୂଷିତ  ଜଳବାୟୁ, ଅସ୍ଥିରତା, ସଂଘର୍ଷ, ନିମ୍ନତର ଜୀବନର ମାନ ସମ୍ପର୍କରେ ସଚେତନତା ବୃଦ୍ଧି ପାଇବ । ଗ୍ରାମରୁ ନଗରକୁ ପାଗଳ ଦୌଡ଼ ଅନେକାଂଶରେ ରୋକାଯାଇପାରିବ । ସମ୍ପୂର୍ଣ୍ଣ ବିପ୍ଳବ ସାଧିତ ହେବ । ଯୁବକମାନେ ନିଜ ଘରଦ୍ୱାର, ଗାଁ ଛାଡ଼ି, ଦୂରଦୂରାନ୍ତରେ ଅସନ୍ତୋଷରେ ରହିବା ଅପେକ୍ଷା, ଗାଁର କୃଷି ଓ କୁଟୀର ଶିଳ୍ପରେ କାମ କରି ଜୀବନରେ ଅପେକ୍ଷାକୃତ ଅଧିକ ପୂର୍ଣ୍ଣତା ଲାଭ କରିବେ ।

କ୍ରାନ୍ତିପଥ, ଜୁନ୍, ୧୯୮୦

# ଗ୍ରାମେ ଗ୍ରାମେ ପରିବେଶ

-ନାରାୟଣ ହଜାରୀ
ଶରତ କୁମାର ଦୋରା

ପୁରୀ ଜିଲ୍ଲାର ନୟାଗଡ଼ ଓ ଓଡ଼ଗାଁ ବ୍ଲକ୍‌ର ୨୨ଖଣ୍ଡ ଗ୍ରାମକୁ ନେଇ ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ୧୯୮୩ ମସିହାରୁ କାର୍ଯ୍ୟକରୁଛି । ଏହାର ନାମ "ବୃକ୍ଷ ଓ ଜୀବର ବନ୍ଧୁ ପରିଷଦ" । ଏହାର କାର୍ଯ୍ୟାଳୟ ବୁଦ୍ଧଗିରି ପାହାଡ଼ର ପାଦଦେଶରେ ଥିବା ବୁଦ୍ଧଗ୍ରାମ (କେଶରପୁର)ରେ ଅବସ୍ଥିତ । ୧୯୮୩ ଫେବୃୟାରୀ ୨୨, ୨୩, ୨୪ ତାରିଖରେ ଓଡ଼ଗାଁ ଓ ନୟାଗଡ଼ ବ୍ଲକ୍‌ର ୩୨ ଖଣ୍ଡ ଗ୍ରାମରେ ପରିବେଶ ସମ୍ପର୍କରେ ସଚେତନତା ବୃଦ୍ଧି କରିବାକୁ ଓ ବନରକ୍ଷା କରିବାକୁ ଏହି ପରିଷଦର ସଭ୍ୟବୃନ୍ଦ (୧୦୮ ଜଣ) ପଦଯାତ୍ରା କରିଥିଲେ । ୧୯୮୪ ଜୁନ୍, ୮, ୯, ୧୦ ତାରିଖରେ ରଣପୁର, ଓଡ଼ଗାଁ ବ୍ଲକ୍‌ର ୨୬ ଖଣ୍ଡ ଗ୍ରାମରେ ମଧ୍ୟ ପଦଯାତ୍ରା କରିଥିଲେ । ଓଡ଼ିଶା ସରକାରଙ୍କର 'ପରିବେଶ ବିଭାଗ' ଓ ଓଡ଼ିଶାର ବିଶିଷ୍ଟ ସମାଜସେବୀ ଅଧ୍ୟାପକ ରାଧାମୋହନଙ୍କ ଦ୍ୱାରା ପ୍ରତିଷ୍ଠିତ ଫୁଲବାଣୀର ସେବାସଂସ୍ଥା "ନିପୀଡ଼ିତ" ଏଥିରେ ସହଯୋଗ କରିଥିଲା । ସେ ମହାଶୟ ଏଥିରେ ଯୋଗଦାନ କରି ଆନ୍ଦୋଳନକୁ ଦିଗ୍‌ଦର୍ଶନ ଦେଇଥିଲେ । "ନିପୀଡ଼ିତ"ର ନିଃସ୍ୱାର୍ଥପର ନିଷ୍ଠାପର କର୍ମୀ ଶ୍ରୀ ରଘୁନାଥ ଏହି କାର୍ଯ୍ୟକ୍ରମରେ ଯୋଗଦେଇ ପଦଯାତ୍ରୀଙ୍କର ଆନନ୍ଦ ଓ ଉତ୍ସାହ ବର୍ଦ୍ଧନ କରିଥିଲେ ।

(୧)

ପଦଯାତ୍ରୀମାନେ ଗ୍ରାମେ ଗ୍ରାମେ ନିମ୍ନଲିଖିତ ବାର୍ତ୍ତା ପ୍ରଚାର କରିଥିଲେ । "ଆଜି ପୃଥିବୀ ଧ୍ୱଂସର ଦ୍ୱାରଦେଶରେ ଉପସ୍ଥିତ । ବାୟୁ, ପାଣି ଓ ମାଟି ଦୂଷିତ ହେବା ଯୋଗୁଁ ମଣିଷ ସମାଜ, ସଭ୍ୟତା ଓ ସଂସ୍କୃତିର ଭବିଷ୍ୟତ ନେଇ ଉଦ୍‌ବେଗ ପ୍ରକାଶ ପାଉଛି । ଆମେ ଜୀବନ-ମରଣର ସନ୍ଧିକ୍ଷଣରେ ପହଞ୍ଚିଛୁ । ଆଜିର ଶିଳ୍ପ ଓ ନଗର ସଭ୍ୟତା ଭୋଗ ଉପରେ ପ୍ରତିଷ୍ଠିତ । ଏଥିପାଇଁ ପରିବେଶର ଦ୍ରୁତ ଓ ନିର୍ମମ ଅବକ୍ଷୟ ଚାଲିଛି । ପ୍ରତି ମିନିଟ୍‌ରେ ୩୨ ହେକ୍ଟର ଜଙ୍ଗଲ ନଷ୍ଟ ହୋଇଯାଉଛି । ପ୍ରତିବର୍ଷ ଅଜସ୍ର ମାଟି ସମୁଦ୍ରକୁ

ଧୋଇହୋଇ ଚାଲିଯାଉଛି । ଅଥଚ ୧ ସେ.ମି. ସର ମାଟି ତିଆରି ହେବା ପାଇଁ ୬୦୦ ବର୍ଷ ଲାଗେ । ମହାନଗରୀମାନଙ୍କର ରାକ୍ଷସୀ କ୍ଷୁଧାର ପରିତୃପ୍ତି ନାହିଁ । ଆଜି ସେମାନେ ଭସ୍ମାସୁର ସାଜି ନିଜର ବିନାଶ ପାଇଁ ଦୃଢ଼ ଓ ନିଶ୍ଚିତ ପଦକ୍ଷେପ ନେଉଛନ୍ତି । ବାୟୁ, ଜଳ ଓ ମାଟି ଦ୍ରୁତଗତିରେ ବିଷାକ୍ତ ହୋଇଯାଉଛି । ଜୀବଗଣ ଏହି ବିଷର ଜ୍ୱାଳାରେ ଅତିଷ୍ଠ ହେଲେଣି । ଏହି ବିଷପାନ କରିବାର ସାମର୍ଥ୍ୟ ଅଛି କେବଳ ବୃକ୍ଷର । ବୃକ୍ଷ ହିଁ ନୀଳକଣ୍ଠ ରୂପେ ଆଜି ପ୍ରତିଭାତ । ସେ ହିଁ ଆମର ଜୀବନଦାତା ଓ ତ୍ରାଣକର୍ତ୍ତା । ବୃକ୍ଷ ଆମକୁ ବାୟୁ, ଜଳ, ମାଟି, ଖାଦ୍ୟ, ବସ୍ତ୍ର, ବାସଗୃହ, ଜାଳ, ଗୋଖାଦ୍ୟ, ଔଷଧ ଓ ଛାୟା ପ୍ରଦାନ କରେ । ବୃକ୍ଷ ଓ ଅରଣ୍ୟ ବର୍ଷା କରାଏ ଓ ଭୂମିତଳ ଜଳପତ୍ତନକୁ ଊର୍ଦ୍ଧ୍ୱଗାମୀ କରାଏ । ବୃକ୍ଷ ଜୀବର ଜୀବନ । ତା'ର ଜୀବନର ଏକମାତ୍ର ସନ୍ଦେଶ 'ପରୋପକାରାୟ ସ୍ୱର୍ଗାୟ' । ତେଣୁ ଭାରତବର୍ଷରେ ବୃକ୍ଷକୁ ଦେବତା ଜ୍ଞାନ କରି ପୂଜା କରାଯାଏ । ବର, ଅଶ୍ୱତ୍ଥ, ବେଲ, ତୁଳସୀ ଆଦିକୁ ପବିତ୍ର ମନେକରାଯାଏ । ତୁଳସୀ ମୂଳରେ ଆମେ ପ୍ରତିଦିନ ପାଣି ଢାଳୁ ଓ ପ୍ରଣାମ କରୁ ।

ମଣିଷ ପ୍ରକୃତିର ସନ୍ତାନ । ତା'ର ବିକାଶ ଏପରି ଭାବରେ ହେବା ଉଚିତ, ଯେପରି ପ୍ରକୃତି ବକ୍ଷରେ କ୍ଷତ ସୃଷ୍ଟି ନହୁଏ । ପ୍ରକୃତି ବକ୍ଷରେ ବେଦନାସିକ୍ତ ଅଳିଭାଗାର ପଡ଼ିଲେ, ସେ ହିଂସ୍ର ହୋଇଉଠିବ ଓ ତା'ର ପ୍ରତିଶୋଧ ନେବ । ମଣିଷ ତା'ର ପରିବେଶର ଅଲଙ୍ଘନୀୟ ନିୟମ ସଂପର୍କରେ ସଚେତନ ନ ହେଲେ ତା'ର ଧ୍ୱଂସ ଅବଶ୍ୟମ୍ଭାବୀ ।"

୧୯୮୪ ଫେବୃୟାରୀ ୨୨, ୨୩, ୨୪ ତାରିଖରେ ପଦଯାତ୍ରୀ ଦଳ ଜଙ୍ଗଲ ସୁରକ୍ଷା ସହିତ ପରିବାର ନିୟନ୍ତ୍ରଣ, ହୁକ୍ ୱାର୍ମରୁ ରକ୍ଷା ପାଇବା ପାଇଁ ବରପାଲି ପାଇଖାନାର ପ୍ରଚଳନ, କୋର୍ଟକଚେରୀକୁ ନଯାଇ ଗାଁର ବିବାଦ ଗାଁରେ ତୁଟାଇବାକୁ, ନିଶାପାନ ବର୍ଜନ କରିବାକୁ, ଛୁଆଁ ଅଛୁଆଁ ଭେଦଭାବ ଦୂର କରିବାକୁ, ଯୌତୁକ ପ୍ରଥା ବର୍ଜନ କରିବାକୁ, ସରକାରୀ ସାହାଯ୍ୟ ଉପରେ ବିଶେଷ ଭାବରେ ନିର୍ଭର ନ କରି ଗ୍ରାମବାସୀମାନଙ୍କର ସ୍ୱକୀୟ ଉଦ୍ୟମରେ ପ୍ରଗତି ପାଇଁ ପଦକ୍ଷେପ ନେବାକୁ, ଲୋକମାନଙ୍କୁ ପ୍ରବର୍ତ୍ତାଇଥିଲେ । ଶହ ଶହ ସଂଖ୍ୟାରେ ଗ୍ରାମବାସୀ ହରିବୋଲ, ହୁଳହୁଳି ଦେଇ ସଂକୀର୍ତ୍ତନ ସହ ପଦଯାତ୍ରୀମାନଙ୍କୁ ସ୍ୱାଗତ କରିଥିଲେ ଓ ସଭାରେ ଯୋଗ ଦେଇଥିଲେ । ଏହି ଅଞ୍ଚଳରେ ସାଧାରଣତଃ ସ୍ତ୍ରୀଲୋକମାନେ ସଭାରେ ଯୋଗଦେବା ପରମ୍ପରା ନଥିଲେ ମଧ୍ୟ ମାନପୁର ଗ୍ରାମର ସ୍ତ୍ରୀଲୋକମାନେ ସଭାରେ ଯୋଗଦେଇ ପଦଯାତ୍ରୀଙ୍କର ଉତ୍ସାହ ଓ ଆନନ୍ଦ ବର୍ଦ୍ଧନ କରିଥିଲେ । ଯେଉଁ ସମସ୍ତ ସ୍ଲୋଗାନ ଦିଆଯାଉଥିଲା ସେମାନଙ୍କ ମଧ୍ୟରୁ ଗୋଟିଏ ବିଶେଷତଃ ମହିଳାମାନଙ୍କ ଦ୍ୱାରା ଆଦୃତ ହେଉଥିଲା । ତାହା ହେଉଛି "ଯୌତୁକ ପ୍ରଥାର ନିରାକରଣ" । ପଦଯାତ୍ରୀବୃନ୍ଦ ନିମ୍ନଲିଖିତ ସଙ୍ଗୀତ ଗ୍ରାମେଗ୍ରାମେ ଗାନ କରୁଥିଲେ-

ବୃକ୍ଷ ବିନା ବଞ୍ଚିବା ନାହିଁ,
ବୃକ୍ଷ ଆମର ଜୀବନ, ଭାଇ ।

ପବନ, ମାଟି ଆଉ ପାଣି,
ବୃକ୍ଷ ଦେବତା ଦିଏ ଆଣି ।

ଖାଦ୍ୟ, ବସ୍ତ୍ର ଓ ବାସଗୃହ,
ବୃକ୍ଷ ଦେବତା ଅନୁଗ୍ରହ ।

ଜାଳେଣୀ, ଔଷଧ ଓ ଛାୟା,
ପ୍ରକାଶ କରେ ବୃକ୍ଷ ଦୟା ।

ବୃକ୍ଷକୁ ଭାଇ ଯତ୍ନ କର,
ହୋଇବ ବର୍ଷା ଝର ଝର ।

ବୃକ୍ଷ ଦେବତା କଲେ ଦୟା,
ଅଭାବ ନ ରହିବ କାହା ।

ଗଛପତ୍ରର ସାର ସାର,
କୃତ୍ରିମ ସାର ପରିହର ।

ଗଛକୁ ଫୋପାଡ଼ିଲେ ଟେକା,
ପାଚିଲା ଫଳ ଦିଏ ଏକା ।

ବୃକ୍ଷ ଛାୟାରେ ଆମେ ରହି,
ବୃକ୍ଷକୁ କାଟୁ ଅନ୍ଧ ହୋଇ ।

ତଥାପି ବୃକ୍ଷ ହୁଏ ସାହା,
କୃତଘ୍ନ ନରେ କରେ ଦୟା ।

ପରୋପକାର ତା'ର ଧର୍ମ,
ପରାର୍ଥେ ଧରିଛି ଜୀବନ ।

ବୃକ୍ଷ ଦେବତା କଲେ ରୋଷ,
ଅବଶ୍ୟ ଆମେ ଯିବା ନାଶ ।

ବୁଦ୍ଧର ବାଣୀ ଭାଇ ଶୁଣ,
ବୃକ୍ଷରୋପଣ ଯେ ନିର୍ବାଣ ।

ବୃକ୍ଷଙ୍କ ମଧ୍ୟେ ମୁଁ ଅଶ୍ୱତ୍‌ଥ,
ବୋଲନ୍ତି ପ୍ରଭୁ ଯେ ଶ୍ରୀକୃଷ୍ଣ ।

୧୯୮୩ ଫେବୃୟାରୀ ୨୦, ୨୩, ୨୪ ତାରିଖରେ ପଦଯାତ୍ରୀ ଦଳ ଚିନ୍ନରା, କାଳିକାପ୍ରସାଦ, ବିଞ୍ଝଗିରି, ମାନପୁର, ଆଡ଼ଚେର, ଡ଼ିମିଶର, ନାଗମୁଣ୍ଡଳୀ, ବୁଦ୍ଧଗ୍ରାମ, ସାନଗୋରଡ଼ା, ବଡ଼ଗୋରଡ଼ା, ଭାଲିଆଡିହ, ଗୋଲଗାଁ, ଧୁକ୍ଷୁମା, ଅଙ୍ଘିସିଙ୍ଗି, ପୁଆଣିଆ, ଗମ୍ଭାରୀଡିହ, କଣ୍ଟାବଣିଆ, ଗମେଇ, ଅଶ୍ୱସ୍ତପଡ଼ା, ନଡ଼ିଆଳି, ଉଦୟପୁର, ଗବନଳ, ହିଞ୍ଜିଳିଗାଡ଼ିଆ, ବଢ଼ିଆସାହି, ଅସୁରଢ଼ିପା, ଖୁଣ୍ଟବନ୍ଧ, ଜାମୁସାହି, ସଠିଆପଲ୍ଲୀ, ଗୋଡ଼ିଅଳି, ରାଜପାଟଣା, ବେଗୁନିଆଁ ପାଟଣା ଆଦି ୩୧ଟି ଗ୍ରାମ ପରିଦର୍ଶନ କରିଥିଲେ । ଅଧ୍ୟାପକ ରାଧାମୋହନ ଓ ଲେଖକ ପଦଯାତ୍ରୀ ଦଳରେ ଥିଲେ । ଗ୍ରାମମାନଙ୍କରେ ଗ୍ରାମବାସୀ ଭାତଡାଲମା ପଦଯାତ୍ରୀ ଦଳଙ୍କୁ ଖୁଆଉଥିଲେ । ରାଧାମୋହନ ଓ ଲେଖକ ନିରାମିଷାଷୀ ଥିଲେ । ଧୁକ୍ଷୁମା ଗ୍ରାମବାସୀ ଚିଙ୍ଗୁଡ଼ି ପକାଇଥିଲେ । ତେଣୁ ରାଧାମୋହନ ଓ ଲେଖକ ଭାତରେ ଲୁଣ ଲଗାଇ ଖାଇଥିଲେ । ୧୯୮୪ ଜୁନ୍ ତା୮, ୯, ୧୦ରିଖରେ ପଦଯାତ୍ରୀ ଦଳ ପ୍ରଥମେ ରନ୍‌ମାଳା ପାହାଡ଼ର ପାଦଦେଶରେ ଥିବା ଢ଼ଲାରୀ ବନ୍ଧ ଗ୍ରାମରେ ପହଞ୍ଚିଥିଲେ । ଗ୍ରାମବାସୀମାନେ ପଦଯାତ୍ରୀମାନଙ୍କ ଆଗରେ ଅଭିଯୋଗ କରିଥିଲେ ଯେ ସରକାରଙ୍କର "ଉଦ୍ୟାନ ବିଭାଗ"ଏହି ଗ୍ରାମର ପାହାଡ଼ରେ ଥିବା ଗଛ କାଟି ଜଙ୍ଗଲ ସଫାକଲା, ଫଳ ଗଛ ଲଗାଇଲା। କିନ୍ତୁ ଜଗୁଆଳି ନ ରହିବାରୁ, ସାର ନ ଦେବାରୁ, ଓ ଗଛଗୁଡ଼ିକର ରକ୍ଷଣାବେକ୍ଷଣ ନ କରିବାରୁ, ସମସ୍ତ ଗଛ ନଷ୍ଟ ହୋଇଗଲା । ଏଥିରେ ଫଳଗଛ ତ ହେଲାନାହିଁ, ଆଗରୁ ଜଙ୍ଗଲରେ ଥିବା ସମସ୍ତ ଗଛ ମଧ୍ୟ ଗଲା । ସରକାରୀ କାର୍ଯ୍ୟ ସମୟେ ସମୟେ କିପରି ହୁଏ, ଏହା ଥିଲା ତା'ର ଏକ ନମୁନା । ଏଥିରେ ଗ୍ରାମବାସୀ ଘୋର ଦୁଃଖ ପ୍ରକାଶ କରିଥିଲେ ।

ଲୁଣିସାହି ଗ୍ରାମବାସୀ ବହୁସଂଖ୍ୟାରେ ସଭାରେ ଯୋଗଦେଇ ଜଙ୍ଗଲ ରକ୍ଷା ପାଇଁ ନିଜର ବ୍ୟାକୁଳତା ପଦଯାତ୍ରୀମାନଙ୍କ ଆଗରେ ପ୍ରକାଶ କରିଥିଲେ । ପଡ଼ୋଶୀ ଗ୍ରାମବାସୀମାନେ ଜଙ୍ଗଲକୁ ନଷ୍ଟ କରୁଛନ୍ତି ବୋଲି ସେମାନେ ଅଭିଯୋଗ କଲେ । ପଦଯାତ୍ରୀଦଳ ତାଙ୍କୁ କହିଥିଲେ ଯେ ନିଜେ ଜଙ୍ଗଲ ରକ୍ଷା କରିବା ସଙ୍ଗେ ପଡ଼ୋଶୀ ଗ୍ରାମମାନଙ୍କୁ ଯାଇ ଏ ସମ୍ପର୍କରେ ବୁଝାଇବାକୁ ହେବ ଏବଂ ସେମାନଙ୍କର ସହଯୋଗ ଭିକ୍ଷା କରିବାକୁ ହେବ । ୫/୧୦ ଖଣ୍ଡ ଗ୍ରାମ ସଂଗଠିତ ହୋଇ ଉଦ୍ୟମ କଲେ ଜଙ୍ଗଲର କିଛି ଅଂଶ ନିଶ୍ଚୟ ରକ୍ଷା କରାଯାଇପାରିବ ।

ତା୧୦ରିଖ ଦିନ ପଦଯାତ୍ରୀ ଦଳ ଖଡିଆ ଗ୍ରାମର ଶାଳବନରେ ସଭାକାର୍ଯ୍ୟ କରିଥିଲେ । ସେଠାରେ ପ୍ରାୟ ୨୦୦ ଲୋକ ଯୋଗଦେଇଥିଲେ । ସଭାପରେ

ପଦଯାତ୍ରୀ ଦଳ ଓ ବିଭିନ୍ନ ଗ୍ରାମର ପ୍ରତିନିଧିବୃନ୍ଦ ୮୦୦ ଏକର ଶାଳ ଜଙ୍ଗଲ ପରିଦର୍ଶନ କରି ଆତ୍ମହରା ହୋଇଥିଲେ । ମୁଣ୍ଡଫଟା ଖରାରେ ୨ ଘଣ୍ଟା ବୁଲିଲା ପରେ ଭଲ ଅସ୍ରାଏ ବର୍ଷା ହୋଇ ଚାଷୀର ମନରେ ନୂତନ ଆଶାର ସଂଚାର କରିଥିଲା । ପଦଯାତ୍ରୀ ଦଳ ବର୍ଷାକୁ ପଦଯାତ୍ରା ପ୍ରତି ଈଶ୍ୱରଙ୍କ ସ୍ୱୀକୃତି ରହିଛି ବୋଲି ବିଶ୍ୱାସ କରିଥିଲେ । ଖଡିଆ ଗ୍ରାମର ସଭାରେ ଲୋକମାନେ ଉଦ୍ୟୋକ୍ତାମାନଙ୍କୁ ଯେଉଁ ସବୁ ପ୍ରଶ୍ନ ପଚାରିଥିଲେ ସେଥିରୁ ନିମ୍ନଲିଖିତ ୩ଟି ପ୍ରଶ୍ନ ବିଶେଷ ପ୍ରଣିଧାନଯୋଗ୍ୟ ।

ସେମାନଙ୍କର ପ୍ରଥମ ପ୍ରଶ୍ନ ଥିଲା - ଆମେ ଖଡିଆ, ମହୁଲିଆ, ବେଗୁନିଆଁ ପାଟଣା, ଗୋଡ଼ିମଡ଼ା, ଏହି ଚାରିଖଣ୍ଡ ଗାଁ, ଯେଉଁ ୮୦୦ ଏକର ଶାଳ ଜଙ୍ଗଲ ସାତବର୍ଷ ହେଲା ରକ୍ଷାକରିଛୁ, ତାହା ସରକାର ନେଇଯିବେ ନାହିଁକି ? ଉଦ୍ୟୋକ୍ତାମାନଙ୍କ ପକ୍ଷରୁ ତା'ର ଉତ୍ତର ଥିଲା, "ଯେଉଁଠାରେ ଲୋକମାନେ ଜଙ୍ଗଲ ରକ୍ଷା କରିଛନ୍ତି, ସେଠାରେ ସରକାର କେବେ ଜଙ୍ଗଲ ନେଇଯାଇଛନ୍ତି କି ?" - ତା'ପରେ ଉଦ୍ୟୋକ୍ତମାନେ ବୁଝାଇଥିଲେ ଆମେ ଭାବିବା ଉଚିତ ନୁହେଁ ଯେ, ଜଙ୍ଗଲ କେବଳ ଆମକୁ କାଠଦିଏ । ଜଙ୍ଗଲ ଦ୍ୱାରା ବର୍ଷା ହୁଏ, ଭୂମିତଳେ ଥିବା ଜଳପତ୍ତନ ଉପରକୁ ଉଠେ, ମୃତ୍ତିକା କ୍ଷୟ ବନ୍ଦ ହୁଏ, ବନ୍ୟା ଦାଉରୁ ରକ୍ଷା ମିଳେ, ଚାଷଜମିର ଉର୍ବର ଶକ୍ତି ବଢ଼େ । ଗୃହପାଳିତ ପଶୁମାନେ ଖାଦ୍ୟପାଆନ୍ତି । ଫଳ, ଫୁଲ, ମୂଳ, ପତ୍ର ମିଳେ । ଶୁଖିଲାପତ୍ର ଓ ଶୁଖିଲା ଡାଳ ଜାଳ ହୁଏ । ଜଙ୍ଗଲଜାତ ଦ୍ରବ୍ୟରେ କୁଟୀରଶିଳ୍ପମାନ ଗଢ଼ିଉଠିଥାଏ ।"

ସେମାନଙ୍କର ଦ୍ୱିତୀୟ ପ୍ରଶ୍ନ ଥିଲା - "ଆମ ଜଙ୍ଗଲ ସୁରକ୍ଷା ନିମିତ୍ତ ସରକାର ଫରେଷ୍ଟ ଗାର୍ଡ଼ ଦେବା ପାଇଁ ବ୍ୟବସ୍ଥା କରିପାରିବେକି ?" ଉଦ୍ୟୋକ୍ତାମାନେ ପ୍ରତ୍ୟୁତ୍ତର ଦେଇଥିଲେ ଯେ ଫରେଷ୍ଟ ଗାର୍ଡ଼ ଦ୍ୱାରା ଯଦି ଜଙ୍ଗଲ ସୁରକ୍ଷା କରାଯାଇପାରୁଥାନ୍ତା, ତା'ହେଲେ ଆଜି ଦେଶର ବନ୍ୟ ସମ୍ପଦର ବିପୁଳ କ୍ଷତି କାହିଁକି ଘଟୁଥାଆନ୍ତା ? କେବଳ ଯେଉଁଠାରେ ଲୋକମାନେ ଜଙ୍ଗଲ ରକ୍ଷା କରିଛନ୍ତି, ସେହିଠାରେ ଜଙ୍ଗଲ ରହିଛି । କେବଳ ସରକାର ଜଙ୍ଗଲ ରକ୍ଷା କରିପାରିବେ ନାହିଁ । ଏଥିପାଇଁ ଜନସହଯୋଗ ଅତ୍ୟନ୍ତ ଅପରିହାର୍ଯ୍ୟ ।

ତୃତୀୟ ପ୍ରଶ୍ନ ଥିଲା, ଯଦି ନିଜ ଗାଁ ବା ଅନ୍ୟ କୌଣସି ଗ୍ରାମର ଲୋକେ ସଂରକ୍ଷିତ ଜଙ୍ଗଲ ନଷ୍ଟ କରନ୍ତି, ସେମାନଙ୍କ ବିରୁଦ୍ଧରେ କେସ୍ କରିବୁ କି ? ଉଦ୍ୟୋକ୍ତାମାନଙ୍କର ଉତ୍ତର ଥିଲା, "କେସ୍ ହେଲେ ତିକ୍ତତା ବଢ଼ିବ ଓ ନିଆଁ ଜଳିବ । ଗ୍ରାମବାସୀଙ୍କ ହାତରୁ ଜିନିଷଟି ବାହାରକୁ ଚାଲିଯିବ । କଥା ଅଣାୟତ୍ତ ହୋଇଯିବ । ଗାଁଲୋକେ ନିଜ ରକ୍ତକୁ ପାଣି ଫଟାଇ, ମୁଣ୍ଡ ଝାଳ ତୁଣ୍ଡରେ ମାରି ଯେଉଁ କଷ୍ଟଲବ୍ଧ

ଅର୍ଥ ରୋଜଗାର କରନ୍ତି, ତାହା ବାହାରକୁ ଚାଲିଯିବ । ଥରେ କେସ୍ ହେଲେ ହିଂସା ଓ ବିଦ୍ୱେଷରେ ଗ୍ରାମ୍ୟ ଜୀବନ ବିଷାକ୍ତ ହୋଇଯିବ । ଯେଉଁମାନେ ଦଣ୍ଡିତ ହେବେ, ସେମାନେ ପ୍ରତିହିଂସା ପରାୟଣ ହେବେ । ପରିଶେଷରେ ଜଙ୍ଗଲ ସମ୍ପଦ ସମୂଳେ ନଷ୍ଟ ହୋଇଯିବ ।" ଉଦ୍ୟୋକ୍ତାମାନେ ବୁଝାଇଥିଲେ ଯେ, ଦଣ୍ଡଭୟଦ୍ୱାରା ଜଙ୍ଗଲ ରକ୍ଷା କରାଯାଇପାରିବ ନାହିଁ । ହୃଦୟର ପରିବର୍ତ୍ତନ ଦ୍ୱାରା ହିଁ ତାହା ସମ୍ଭବ ।

(୩)

୯ ତାରିଖ ସକାଳେ ଗୋପୀନାଥପୁର, ଦର୍ପନାରାୟଣପୁର ଓ ବାପୁଜୀପଲ୍ଲୀ ପଦଯାତ୍ରୀ ଦଳ ପରିକ୍ରମା କରି ପରିବେଶର ସୁରକ୍ଷା ସମ୍ପର୍କରେ ବୁଝାଇଥିଲେ । ପ୍ରତ୍ୟେକ ଗ୍ରାମରେ ବହୁ ଗ୍ରାମବାସୀ ଆୟୋଜିତ ସଭାରେ ଯୋଗଦାନ କରି ସକ୍ରିୟ ଅଂଶଗ୍ରହଣ କରିଥିଲେ । ଦର୍ପନାରାୟଣପୁର ଗ୍ରାମର ଜଣେ ଶିକ୍ଷିତ ଯୁବକ କହିଲେ, "ଗାଁଲୋକେ ନଷ୍ଟ ହୋଇଗଲେଣି । ସେମାନେ ଆଉ ଭଲ ହୋଇପାରିବେ ନାହିଁ । ତେଣୁ ମୁଁ ସଭାକୁ ଯିବିନାହିଁ ।" ଗ୍ରାମ୍ୟଜୀବନର ମାନ ଉନ୍ନତି ପାଇଁ ଯେ ଶିକ୍ଷିତ ଲୋକଙ୍କର ନୈତିକ ଦାୟିତ୍ୱ ରହିଛି, ତାହା ଉକ୍ତ ଯୁବକ ଉପଲବ୍ଧି କରୁଥିବା ଭଳି ଜଣାପଡ଼ିଲା ନାହିଁ । ଦେଶରେ ବର୍ତ୍ତମାନ ପ୍ରଚଳିତ ଶିକ୍ଷା ପଦ୍ଧତିରେ ଯୁବକମାନେ କିପରି ଶୀକାର ହୋଇ ଆତ୍ମକୈନ୍ଦ୍ରିକ ହୋଇ ଭାରସାମ୍ୟ ହରାଇ ବସୁଛନ୍ତି । ସେମାନଙ୍କର ସାମାଜିକ ଚେତନାର ବିକାଶ ହେଉନାହିଁ । ଏହି ଯୁବକଥିଲେ, ତା'ର ଏକ ଜ୍ୱଳନ୍ତ ନିଦର୍ଶନ । ଅନେକ ଶିକ୍ଷିତ ଲୋକଙ୍କଠାରୁ ଗ୍ରାମବାସୀଙ୍କ ବିରୁଦ୍ଧରେ ଖାଲି ଅଭିଯୋଗ ନୁହେଁ, ବିଷୋଦ୍‌ଗାର ଶୁଣାଯାଏ । ସେମାନଙ୍କ ମତରେ ଗାଁ ଲୋକେ ସ୍ୱାର୍ଥପର, କ୍ଷୁଦ୍ରମନା, ଅଭଦ୍ର । ସେମାନେ ଶିକ୍ଷିତ ଲୋକଙ୍କୁ ସମ୍ମାନ ଦେବା ଜାଣନ୍ତି ନାହିଁ । ଗାଁରେ ଟାଉଟର ଭର୍ତ୍ତି ହୋଇଗଲେଣି । ଗ୍ରାମ୍ୟ ଜୀବନ ବିଷାକ୍ତ ହୋଇଗଲାଣି । ଯେତେବେଳେ ଶିକ୍ଷିତ ଅବସ୍ଥାସମ୍ପନ୍ନ ଲୋକେ ଏତେ ଆତ୍ମକୈନ୍ଦ୍ରିକ, ସ୍ୱାର୍ଥପର, କ୍ଷୁଦ୍ରମନା, ଦରିଦ୍ର ଗ୍ରାମବାସୀ ତାହା ହେବା ଅପ୍ରତ୍ୟାଶିତ କି ? ଅନେକ ଶିକ୍ଷିତ ଲୋକେ ଗାଁକୁ ଗଲେ କାହାକୁ ପଚାରନ୍ତି ନାହିଁ । କାହା ସୁଖଦୁଃଖରେ ଭାଗୀ ହୁଅନ୍ତି ନାହିଁ । ଦୁଆରରୁ ଓହ୍ଲାନ୍ତି ନାହିଁ । ପୋଖରୀହୁଡ଼ା ବା ନଦୀକୂଳରେ ବସିଲେ, କାନବନ୍ଧା ଦେଇଥାନ୍ତି ରେଡିଓକୁ । ଗ୍ରାମରେ ସମାଜର ସମୂହ ମଙ୍ଗଳ ପାଇଁ ତାଙ୍କ ହୃଦୟରେ ସ୍ପନ୍ଦନ ନାହିଁ । ସମାଜର ଦରିଦ୍ର, ନିଷ୍ପେସିତ ଓ ଦଳିତଙ୍କ ପାଇଁ ତାଙ୍କ ହୃଦୟରେ ବ୍ୟାକୁଳତା ନାହିଁ । ସେମାନଙ୍କ ହୃଦୟ ନିଦାରୁଣ । ସେମାନେ ଚାହାନ୍ତି, ଗ୍ରାମବାସୀ, ସମାଜ ତାଙ୍କୁ ଶ୍ରଦ୍ଧା କରନ୍ତୁ, ଭକ୍ତି କରନ୍ତୁ ।

ସେମାନେ କେବେ ବିବେକକୁ ପଚାରିଛନ୍ତି କି ? ସେମାନେ ଯେଉଁ ଗ୍ରାମରେ ଜନ୍ମହେଲେ, ଯେଉଁ ପାଣି ପବନରେ ବଢ଼ିଲେ, ଯେଉଁଠି ତାଙ୍କର ଚରିତ୍ର ଗଠିତ

ହେଲା, ଯେଉଁଠି ତାଙ୍କର ବ୍ୟକ୍ତିତ୍ୱର ବିକାଶ ହେଲା, ଯେଉଁ ହତଭାଗାମାନଙ୍କର ସ୍ନେହ ଆଦରରେ ବୋଲି ହୋଇ ସେମାନେ ମଣିଷ ହେଲେ, ଯେଉଁ ଦରିଦ୍ର ଗ୍ରାମବାସୀ ତାଙ୍କ ଜମିରେ ଖଟି ତାଙ୍କୁ ଉତ୍ପାଦିତ ଦ୍ରବ୍ୟ ଦିଅନ୍ତି - ସେଇ ଅସହାୟ ଭାଇଭଉଣୀଙ୍କ ପାଇଁ ସେମାନେ କ'ଣ କରିଛନ୍ତି ? ବର୍ଷରେ ସପ୍ତାହଟେ ଆସି ଗାଁରେ ରହନ୍ତି କି ? ଗ୍ରାମବାସୀଙ୍କ ପାଇଁ ସ୍ୱାର୍ଥତ୍ୟାଗ କରନ୍ତି କି ? ତାଙ୍କ ପାଇଁ କଷ୍ଟ ସ୍ୱୀକାର କରନ୍ତି କି ? ତାଙ୍କର ଉନ୍ନତି ପାଇଁ କାମ କରନ୍ତି କି ? ଯଦି ଏସବୁ କିଛି କରିନାହାନ୍ତି, ଲୋକେ ତାଙ୍କୁ ଶ୍ରଦ୍ଧା, ସମ୍ମାନ କରିବେ କିପରି ? ଯେଉଁମାନେ ଶିକ୍ଷିତ, ଅବସ୍ଥାସମ୍ପନ୍ନ ସେମାନେ ସମାଜ ପାଇଁ ସ୍ୱାର୍ଥ ତ୍ୟାଗ କରିବେ ନାହିଁ, ଆଉ କ'ଣ ଦରିଦ୍ର ଲୋକେ କରିବେ ? ହଁ, ଦରିଦ୍ର ଲୋକେ ସ୍ୱାର୍ଥ ତ୍ୟାଗ କରିଚାଲିଛନ୍ତି । ସେମାନେ ଅନେକାଂଶରେ ଉଦାରମନା । ନଚେତ୍ ଗାଁରେ ଆଜି ଗୋଷ୍ଠୀ ଜୀବନ ନଥାନ୍ତା ।

ଶିକ୍ଷିତ କର୍ମଚାରୀମାନେ ଅବସର ପରେ ମଧ୍ୟ ଗ୍ରାମକୁ ଆସନ୍ତିନାହିଁ । ସେମାନେ ଦର୍ଶାନ୍ତି ଯେ, ଗ୍ରାମରେ ଆଧୁନିକ ଜୀବନ ଧାରଣ ପାଇଁ ସୁଯୋଗ ନାହିଁ । ଗାଁ'କୁ ବସ୍ ଯାଏ ନାହିଁ, ଗାଁ'ରେ ଇଲେକ୍‌ଟ୍ରିସିଟି ନାହିଁ, ଡ଼ାକ୍ତରଖାନା ନାହିଁ, ସ୍କୁଲ କଲେଜ ନାହିଁ, ବଜାର, ବ୍ୟାଙ୍କ ନାହିଁ, ଅବସର ବିନୋଦନ ପାଇଁ କ୍ଲବ୍, ପାଠାଗାର, ଟିଭି ନାହିଁ । କିନ୍ତୁ ସମସ୍ତେ ଜାଣନ୍ତି ଯେ, ଉପରୋକ୍ତ ଅଭାବ ଅସୁବିଧାଗୁଡ଼ିକରୁ, କେତେକ ଆବଶ୍ୟକତା ପୂରଣ ହେଲାଣି । ଶିକ୍ଷିତ ଲୋକମାନେ ଅବସର ଗ୍ରହଣ ପରେ ଗ୍ରାମକୁ ଆସିଲେ, ଗ୍ରାମ୍ୟ ଜୀବନର ଗୁଣାତ୍ମକମାନ ବୃଦ୍ଧିଲାଭ କରନ୍ତା । ଖଳ ପ୍ରକୃତିର ଲୋକେ ଗା'କୁ ନଚାଇବାକୁ ଶଙ୍କିତ ହୁଅନ୍ତେ । ଗାଁଗଣ୍ଡାର ଗଣ୍ଡୋଗୋଳ ଗାଁରେ ତୁଟିବାରେ ସେମାନେ ସହାୟକ ହୁଅନ୍ତେ । ବର୍ତ୍ତମାନ ଗାଁଗଣ୍ଡାର ଶିରୀ ତୁଟିଯିବାର ପ୍ରଧାନ କାରଣ ହେଉଛି, ମକଦ୍ଦମା ହୋଇ, ଗାଁ ଧନ ବାହାରକୁ ଚାଲି ଯାଉଛି । ଶିକ୍ଷିତ ଲୋକେ ଚାକିରୀରେ ଥିଲାବେଳେ, ମଝିରେ ମଝିରେ ଗାଁ'କୁ ଯାଇ ସମସ୍ୟା ସମ୍ପର୍କରେ ଅବହିତ ହେଲେ, ଚାକିରୀରୁ ଅବସର ପରେ ଗାଁ'ରେ ସ୍ଥାୟୀ ଭାବରେ ରହିଲେ, ଗାଁ ପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷିତ ହୁଅନ୍ତା । ଗାଁ'କୁ ତା'ର ପ୍ରାପ୍ୟରୁ ବଞ୍ଚିତ କରିବାକୁ, ସରକାରୀ ଅର୍ଥ ତୋଷାରପାତ କରିବାକୁ, ରାଜନୀତିକ କର୍ମକର୍ତ୍ତା, ସରକାରୀ କର୍ମଚାରୀ ଦ୍ୱିଧାବୋଧ କରନ୍ତେ ।

ସରକାରଙ୍କ ପକ୍ଷରୁ ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ଗାଁ,କୁ ସାହାଯ୍ୟ ମିଳିବାର ସୁଯୋଗ ରହିଛି । ଶିକ୍ଷିତ ଲୋକେ ଏ ସମ୍ପର୍କରେ ନିଜର ଗ୍ରାମବାସୀଙ୍କୁ ଖବର ଦେଇ ପାରିବେ । ବିଭିନ୍ନ ସୂତ୍ରରୁ ସାହାଯ୍ୟ ପାଇ ଚେଷ୍ଟା କରିପାରିବେ । ଅବସର ପରେ ଗାଁ'ରେ ରହିଲେ, ତାଙ୍କ ଅର୍ଥ ଗାଁରେ ଚାଷ, ଗୃହ ନିର୍ମାଣ ଆଦି କାର୍ଯ୍ୟରେ ବିନିଯୋଗ

ହୋଇ ଶ୍ରମଜୀବୀଙ୍କୁ କାମଧନ୍ଦା ଯୋଗାଇବ । ଏ ସମ୍ପର୍କରେ ବୁଦ୍ଧଗ୍ରାମର ଅବସରପ୍ରାପ୍ତ ପୋଲିସ୍ ଇନିସ୍‌ପେକ୍ଟର ଶ୍ରୀ ଲିଙ୍ଗରାଜ ହଜାରୀ ଓ ଅବସରପ୍ରାପ୍ତ ମେଡ଼ିକାଲ କଲେଜର ପ୍ରଫେସର ଡ଼ାକ୍ତର ସତ୍ୟବଦୀ ହଜାରୀଙ୍କର ଆଦର୍ଶ ଅନୁକରଣୀୟ । ଡାକ୍ତର ହଜାରୀ ଗ୍ରାମର ଓ ଅଞ୍ଚଳବାସୀଙ୍କର ବିନା ପାରିଶ୍ରମିକରେ ଚିକିତ୍ସା କରି, ସେମାନଙ୍କର କୃତଜ୍ଞତା ଭାଜନ ହୋଇଛନ୍ତି ।

ଗମ୍ଭାରୀଡ଼ିହ ଗ୍ରାମରେ ଲୋକମାନେ ପୋଷ୍ଟଅଫିସ ଓ ହାଇସ୍କୁଲର ଆବଶ୍ୟକତା ଅନୁଭବ କରୁଛନ୍ତି । କିନ୍ତୁ ଏ ଦିଗରେ ଉପଯୁକ୍ତ ନେତୃତ୍ୱର ଅଭାବ ଯୋଗୁଁ ଗ୍ରାମବାସୀ କିଛି କରିବା ପାଇଁ ପ୍ରୟାସୀ ହୋଇ ପାରୁନାହାନ୍ତି । ଗ୍ରାମରେ ଅନେକ ଶିକ୍ଷିତ ଓ ପଦସ୍ଥ କର୍ମଚାରୀ ଅଛନ୍ତି । କିନ୍ତୁ ସାରା ଦେଶରେ ଶିକ୍ଷିତ ଲୋକଙ୍କ ପରି ଏମାନେ ସ୍ୱାର୍ଥସର୍ବସ୍ୱ ହୋଇପଡ଼ିଛନ୍ତି । ସେମାନେ ଭାବୁଛନ୍ତି ଏତେ ବଡ଼ ସଂସାରରେ ନିଜ ସ୍ତ୍ରୀ ଓ ପିଲାଙ୍କ ଛଡ଼ା ଆଉ କେହି ତାଙ୍କର ନୁହେଁ । ବର୍ତ୍ତମାନର ଶିକ୍ଷାପଦ୍ଧତି ସାମାଜିକ ଚେତନାର ବିକାଶ ଘଟାଇବାରେ ସହାୟକ ହୋଇ ପାରୁନାହିଁ । ଏହାର କାରଣ ଆଧୁନିକ ଶିକ୍ଷାପଦ୍ଧତି ଈଶ୍ୱର ବିଶ୍ୱାସର ସଂପୂର୍ଣ୍ଣ ରୂପେ ମୂଳୋତ୍ପାଟନ କରୁଛି । ଯଦି ପ୍ରତ୍ୟେକ ବ୍ୟକ୍ତି ଭାବିବ ଯେ, ଈଶ୍ୱର ଅଛନ୍ତି ଏବଂ ପ୍ରତ୍ୟେକଙ୍କ ମଧ୍ୟରେ ସେ ବିଦ୍ୟମାନ, ତାହାହେଲେ ସେ ସମସ୍ତଙ୍କୁ ନିଜର ଭାଇ ଭଉଣୀ ସଦୃଶ ବିଚାର କରିବ । ଯାହା ଆୟ କରିବ, ନିଜର ମୌଳିକ ଆବଶ୍ୟକତାର ପୂରଣ ପରେ, ଉଦ୍‌ବୃତ୍ତ ଧନ ସମାଜର ଦୁଃଖୀ, ଦରିଦ୍ର, ଅବହେଳିତଙ୍କ ମଙ୍ଗଳ ପାଇଁ ବିନିଯୋଗ କରିବ ।

ନାଗମୁଣ୍ଡଳୀ ଗ୍ରାମରେ ପ୍ରାୟ ୨୦ ଜଣ ପ୍ରାଥମିକ ଶିକ୍ଷକ ଥିବାଯୋଗୁଁ ପଦଯାତ୍ରୀ ଦଳ ବିଶେଷ ଆଶାୟୀ ହୋଇଥିଲେ । କିନ୍ତୁ ବଡ଼ କ୍ଷୋଭର ସହିତ ଲକ୍ଷ୍ୟ କରାଯାଇଥିଲା ଯେ, ଅଧିକାଂଶ ଶିକ୍ଷକ ତାସ୍ ଖେଳରେ ନେତୃତ୍ୱ ନେଉଛନ୍ତି । ପଦଯାତ୍ରୀ ଦଳ ପ୍ରତି ଗ୍ରାମରେ ଦଳଦଳ ହୋଇ ଯୁବକମାନେ ତାସ୍ ଖେଳିବା ଦେଖିଥିଲେ । ସମୟ ଓ ଶକ୍ତିର ଏପରି ଅପଚୟ ଦେଖି ମର୍ମାହତ ହୋଇଥିଲେ । କୃଷକମାନେ ହାଡ଼ଭଙ୍ଗା ପରିଶ୍ରମ ପରେ ଦ୍ୱିପ୍ରହରରେ ବିଶ୍ରାମ ନ ନେଇ ତାସ୍ ଖେଳିବା ଦେଖି ପଦଯାତ୍ରୀ ଦଳ ବିସ୍ମିତ ହୋଇଥିଲେ । ନୟାଗଡ଼ ଓ ଓଡ଼ଗାଁ ବ୍ଲକର ୨୨ଖଣ୍ଡ ଗ୍ରାମରେ ୩ଟି ହାଇସ୍କୁଲ, ୬ଟି ମାଇନର ସ୍କୁଲ ଓ ପ୍ରାଥମିକ ସ୍କୁଲମାନଙ୍କରେ ଥିବା ଶିକ୍ଷକମାନେ ନିଜ ଗ୍ରାମ ଓ ଅଞ୍ଚଳର ଉନ୍ନତି ସକାଶେ ନେତୃତ୍ୱ ଦେବା ପାଇଁ ଆଶା କରିବା କଥା । ଶିକ୍ଷକମାନେ ଅବସର ସମୟରେ ସ୍ୱେଚ୍ଛାସେବୀ କାର୍ଯ୍ୟ କରିପାରିବେ । ସେମାନଙ୍କର ପ୍ରତିମାସ ଦରମାରେ ଆଞ୍ଚ ଆସିବ ନାହିଁ । ସେମାନେ ଗ୍ରାମମାନଙ୍କର ଆର୍ଥିକ, ସାମାଜିକ, ସାଂସ୍କୃତିକ ଓ ନୈତିକ ପ୍ରଗତିର ପ୍ରାଣବିନ୍ଦୁ ହୋଇପାରିବେ । ସେମାନେ ଛାତ୍ରଛାତ୍ରୀଙ୍କ

ମଧ୍ୟରେ ଚିରନ୍ତନ ମୂଲ୍ୟବୋଧର ବୀଜ ବପନ କରିପାରିବେ ଓ ଗ୍ରାମବାସୀଙ୍କୁ ଗଠନମୂଳକ କାର୍ଯ୍ୟରେ ନେତୃତ୍ୱ ଦେଇପାରିବେ । ମାତ୍ର ମୁଷ୍ଟିମେୟ ଶିକ୍ଷକଙ୍କୁ ଛାଡ଼ିଦେଲେ ଅନ୍ୟମାନେ ଲୋକମାନଙ୍କ ଦୁଃଖ, କଷ୍ଟ ସମ୍ପର୍କରେ ନିସ୍ପୃହ ଥିଲା ପରି ଜଣାପଡ଼ିଲା । ଗ୍ରାମର ଚାଷୀ, ମୁଲିଆ, ଖଟିଖିଆ, ଗ୍ରାମର ଉନ୍ନତି ପାଇଁ କିଛିଦିନ ବେଠି ଖଟିପାରିବେ । କିନ୍ତୁ ସେମାନେ ନିରବଚ୍ଛିନ୍ନ ଭାବରେ, ସ୍ୱେଚ୍ଛାସେବୀ ଭାବରେ କାମ କରିବା ପାଇଁ ତାଙ୍କର ଆର୍ଥିକ ପରିସ୍ଥିତି ତାଙ୍କୁ ସୁଯୋଗ ଦିଏନାହିଁ । କିନ୍ତୁ ଶିକ୍ଷକମାନଙ୍କ କଥା ଭିନ୍ନ । ସେମାନେ ଧାରାବାହିକ ଭାବେ ସ୍ୱେଚ୍ଛାସେବୀ କାମ କରିପାରିବେ । ଜଗନ୍ନାଥ ଦାସ ଭାଗବତର ନବମ ସ୍କନ୍ଧରେ (ଏକାଦଶ ଅଧ୍ୟାୟ, ୧୦୭-୧୦୮) କହନ୍ତି -

"ପ୍ରାଣୀର ଦୁଃଖରେ ଦୁଃଖିତ
ସର୍ବଦା ହେଉ ମୋର ଚିତ୍ତ ।
ହେ ପଭୁ ! ମୋତେ ଦୟା କର
ମୁଁ କରେ ପର ଉପକାର ।"

ଏହି ବିଶ୍ୱାସ ପ୍ରଚଳିତ ଶିକ୍ଷା ସୃଷ୍ଟି କରିପାରୁ ନାହିଁ । ଏହି ପରିସ୍ଥିତିରେ ଦରିଦ୍ର, ଅଜ୍ଞ, ଅସହାୟ ଗ୍ରାମବାସୀମାନଙ୍କୁ ନେତୃତ୍ୱ ଦେବ କିଏ ? ଜନସାଧାରଣ ସମ୍ବଳ, ଶକ୍ତି ଓ ସାହସ ପାଇବେ କେଉଁଠୁ ? ଶିକ୍ଷିତ ଲୋକମାନେ ଦେଶପ୍ରାଣ ହେଲେ, ସମାଜର ଉପକାର ପାଇଁ ନିଜର ଶକ୍ତି, ସମୟ ଓ ସମ୍ବଳ ବିନିଯୋଗ କଲେ ସେହି ଆଦର୍ଶ ଜନମାନସକୁ ପ୍ରଭାବିତ କରିବ । ଏହି ପରିପ୍ରେକ୍ଷୀରେ ଜଗନ୍ନାଥ ଦାସଙ୍କର (୬ଷ୍ଠ ସ୍କନ୍ଧ, ୨ୟ ଅଧ୍ୟାୟ : ପୃଷ୍ଠା ୮) ନିମ୍ନଲିଖିତ ବାଣୀ ପ୍ରଣିଧାନଯୋଗ୍ୟ ....

"ମହତେ ଯାହା ଆଚରିବେ
ଇତରେ ତାହାହିଁ କରିବେ ।"

ଏହି ପରିପ୍ରେକ୍ଷୀରେ ମାନପୁର ଗ୍ରାମର ଶ୍ରୀଯୁକ୍ତ ଯୋଗୀନାଥ ସାହୁଙ୍କ (ବୁଦ୍ଧଗ୍ରାମ ଗ୍ରାମର ମାଇନର ସ୍କୁଲର ପ୍ରଧାନଶିକ୍ଷକ) କଥା ପ୍ରଣୀଧାନଯୋଗ୍ୟ । ୧୯୮୩ ମସିହା ଜୁଲାଇ ମାସରେ ସେ ତାଙ୍କ ଗ୍ରାମ ନିକଟବର୍ତ୍ତୀ ମାଳତୀ ପାହାଡ଼ରେ ବୃକ୍ଷରୋପଣ ପାଇଁ ଗ୍ରାମସ୍କୁଲର ପିଲାମାନଙ୍କ ସାହାଯ୍ୟରେ ମାଳତୀରେ ବୃକ୍ଷରୋପଣ ପାଇଁ ଗାତ ଖୋଳିଥିଲେ । ବର୍ଷା ନଥିବାରୁ ମାଟି ଖୁବ୍ ଟାଣଥିଲା । ସେଦିନ ମୁଣ୍ଡଫଟା ଖରା ଥିଲା । କିନ୍ତୁ ପିଲାମାନେ ଅତ୍ୟନ୍ତ କଷ୍ଟ ସ୍ୱୀକାର କରି ସକାଳୁ ଗାତ ଖୋଳିବାରେ ଲାଗିଥିଲେ । ନିଷ୍ଠାପର ସତ୍‌କର୍ମ ସବୁବେଳେ ପୁରସ୍କୃତ ହୁଏ । ଅପରାହ୍ନ ବେଳକୁ

ହଠାତ୍ ଭୀଷଣ ବର୍ଷା ଆରମ୍ଭ ହୋଇ ପିଲାମାନଙ୍କ ମନରେ ଗଭୀର ଆନନ୍ଦ ଓ ଉତ୍ସାହ ସୃଷ୍ଟିକଲା । ପିଲାମାନେ ଦ୍ୱିଗୁଣ ଉତ୍ସାହରେ ଗାତ ଖୋଳିବାରେ ଲାଗିପଡ଼ିଲେ । ଏହା ଥିଲା ଏକ ଦେବଦୁର୍ଲ୍ଲଭ ଦୃଶ୍ୟ । ଏହାପୂର୍ବରୁ ପ୍ରାୟ ୫ ମାସ ହେବ ଏ ଅଞ୍ଚଳରେ ବର୍ଷା ନଥିଲା । ସତେ ଯେପରି ପିଲାଙ୍କର କଷ୍ଟ ସହ୍ୟ ନ କରିପାରି ଓ ସେମାନଙ୍କ ସାଧୁ ଉଦ୍ୟମରେ ପ୍ରୀତ ହୋଇ ଈଶ୍ୱର ବର୍ଷା ଭାବରେ ଅଜାଡ଼ି ହୋଇପଡ଼ିଥିଲେ । ଏହି ଘଟଣାଟି ଏ ଅଞ୍ଚଳର ଗ୍ରାମମାନଙ୍କରେ ବିଦ୍ୟୁତ୍ ବେଗରେ ପ୍ରଚାରିତ ହୋଇଥିଲା ଓ ଲୋକମାନଙ୍କୁ ବିଶେଷ ଅନୁପ୍ରାଣୀତ କରିଥିଲା । ଏହାପରେ ସ୍ଥାନୀୟ ବିଭିନ୍ନ ସ୍କୁଲର ପିଲା, ଶିକ୍ଷକ ଓ ଗ୍ରାମବାସୀ ଆସି ଗାତ ଖୋଳିଥିଲେ ଏବଂ ବୃକ୍ଷରୋପଣ କରିଥିଲେ ।

୧୯୮୪ ଜୁଲାଇ ମାସରେ ଶ୍ରୀଯୁକ୍ତ ସାହୁ ମାଳତୀରେ ବୃକ୍ଷରୋପଣ ପାଇଁ ପୁନଶ୍ଚ ଉଦ୍ୟମ କରିଥିଲେ । କିନ୍ତୁ ଗ୍ରାମବାସୀ କେହି ନ ଆସିବାରୁ, ତାଙ୍କର ମାଆ, ସ୍ତ୍ରୀ, ଭାଇ-ବୋହୂ, ଭଉଣୀ ଓ ଭାଇଙ୍କୁ ନେଇ ବୃକ୍ଷରୋପଣ ପାଇଁ ପାହାଡ଼ତଳକୁ ଯାଇଥିଲେ । ପାହାଡ଼ର ପାଦଦେଶରେ ନୟାଗଡ଼ ପାଟୁଳି ସାହି ରାସ୍ତା । ରାସ୍ତାର ଉଭୟ ପଟୁ ଯେଉଁ ଯାତ୍ରୀମାନେ ଆସୁଥିଲେ, ଶ୍ରୀଯୁକ୍ତ ସାହୁ ସେମାନଙ୍କର ପାଦ ସ୍ପର୍ଶ କରି ୫ଟି ଲେଖାଏଁ ଚାରା ଲଗାଇବାକୁ ବିନୀତ ପ୍ରାର୍ଥନା କରିଥିଲେ । ଏଥିରେ ଯାତ୍ରୀମାନେ ଅଭିଭୂତ ହୋଇ ପଡ଼ିଥିଲେ ଓ ଅଳ୍ପ ସମୟ ମଧ୍ୟରେ ଅନେକ ଶଗଡ଼, ସାଇକେଲ, ସ୍କୁଟର, ମଟରସାଇକେଲ ଓ ବହୁ ବାଟୋଇ ଠୁଳ ହୋଇଯାଇଥିଲେ ଓ ସେ ଜାଗାରେ ଏକ ଯାତ୍ରାର ଦୃଶ୍ୟ ଦେଖାଯାଇଥିଲା । ଶେଷରେ ଜଣେ ଆଗନ୍ତୁକ କୁଷ୍ଠରୋଗୀକୁ ପ୍ରଣାମ କରିବା ପରେ, ସେ ଭାବବିହ୍ୱଳ ହୋଇଯାଇଥିଲେ ଓ ଆନନ୍ଦାଶ୍ରୁ ଅର୍ପଣ କରିବା ସଙ୍ଗେ ସଙ୍ଗେ ବୃକ୍ଷରୋପଣ କରିଥିଲେ । ସେ ଦୃଶ୍ୟ ଥିଲା ଅନିର୍ବଚନୀୟ । ଏହାର ପ୍ରଭାବ ବିଜୁଳି ବେଗରେ ଚାରିଆଡ଼େ ଖେଳିଯାଇଥିଲା ଓ ବହୁ ଗ୍ରାମବାସୀ ଆସି ବୃକ୍ଷରୋପଣ କରିଥିଲେ ।

ଶ୍ରୀଯୁକ୍ତ ଯୋଗୀନାଥ ସାହୁ "ବୃକ୍ଷ ଓ ଜୀବର ବନ୍ଧୁ" କାମ କରୁଥିବା, ୨୨ ଖଣ୍ଡ ଗ୍ରାମର ମୁକୁଟ ବିହୀନ ସମ୍ରାଟ ଥିଲେ । ଲୋକମାନେ ନିଜର ଅଭାବ, ଅସୁବିଧା ନେଇ ଏହି ମହାଶୟଙ୍କ ପାଖକୁ ଦୌଡ଼ି ଆସୁଥିଲେ । ସେ ଉଚ୍ଚପଦସ୍ଥ କର୍ମଚାରୀ ନଥିଲେ ବା ଲୋକ ପ୍ରତିନିଧି ନଥିଲେ । କିନ୍ତୁ ତାଙ୍କର ଦେଶ ପ୍ରାଣତାରେ ଲୋକଙ୍କର ଅଟଳ ବିଶ୍ୱାସ ଦେଖିଲେ ସ୍ତମ୍ଭୀଭୂତ ହେବାକୁ ପଡ଼େ । ତାଙ୍କର ନିରଳସ, କର୍ମମୟ, ତ୍ୟାଗପୂତ, ନିଃସ୍ୱାର୍ଥପର, ନିଷ୍କଳଙ୍କ ଜୀବନ ଏ ଅଞ୍ଚଳର ଲୋକମାନଙ୍କ ପାଇଁ ପ୍ରେରଣାର ଏକ ଦୀପସ୍ତମ୍ଭ ହୋଇରହିଛି ।

ସ୍ୱାଧୀନତା ଆନ୍ଦୋଳନ ସମୟରେ ପୁନାରେ ସ୍କୁଲ ଶିକ୍ଷକ ଭାବେ କାମ କରୁଥିବା ଲୋକମାନ୍ୟ ବାଳ ଗଙ୍ଗାଧର ତିଳକଙ୍କୁ ଜନୈକ ବ୍ୟକ୍ତି ପ୍ରଶ୍ନ କରିଥିଲେ, "ସ୍ୱାଧୀନ ଭାରତରେ ଆପଣ କେଉଁ ମନ୍ତ୍ରୀ ପଦ ଗ୍ରହଣ କରିବେ?" ତିଳକ ଉତ୍ତର ଦେଇଥିଲେ, "ମୁଁ କୌଣସି ମନ୍ତ୍ରୀପଦ ଗ୍ରହଣ କରିବି ନାହିଁ ।" ତାଙ୍କୁ ପଚରାଯାଇଥିଲା, "କାହିଁକି?" ତିଳକ ଉତ୍ତର ଦେଇଥିଲେ, "ମନ୍ତ୍ରୀ ହେବାଠାରୁ ମନ୍ତ୍ରୀ ଗଢ଼ିବା ଅଧିକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ବୋଲି ମୁଁ ମନେକରେ ।" ଶ୍ରୀଯୁକ୍ତ ସାହୁ ଲୋକମାନ୍ୟ ତିଳକଙ୍କ ଚିନ୍ତା, ଚେତନାର ସମଦର୍ଶୀ ଥିଲେ ।

(୪)

ପ୍ରାୟ ୧୨୦୦ ଲୋକ ଥିବା ଗମେଇ ଗ୍ରାମରେ ବହୁଦିନ ହେଲା କୋର୍ଟରେ କେସ୍ ଲାଗିଛି । ଗ୍ରାମର କୋଠରେ ଥିବା ଭାଗବତ ଜମି ୫ ଏକର ବିକ୍ରି ସରିଲାଣି । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଏହି ଗ୍ରାମର ୧ ଏକର ଜମିର ମୂଲ୍ୟ ପ୍ରାୟ ୪୫ ହଜାର ଟଙ୍କା । ଏହି ଗ୍ରାମରେ ଏକତା ନାହିଁ ଓ ଦୁଇସାହି ଦୁଇଟି ଗ୍ରାମରେ ପରିଣତ ହୋଇ ଗ୍ରାମବାସୀଙ୍କର ଘୋର କ୍ଷତିକରୁଛି । ଗୋଟିଏ ସାହିର ଜଣେ ଅବିବାହିତ ଯୁବତୀ ଅନ୍ୟ ସାହିର ଜଣେ ଅବିବାହିତ ଯୁବକଙ୍କର ପ୍ରେମପାଶରେ ପଡ଼ି, ଏକ ସନ୍ତାନ ୨ ବର୍ଷ ହେଲା ଜନ୍ମଦେଇଛି । ଦୁଇସାହି ମଧ୍ୟରେ ଥିବା ତିକ୍ତତା ପରିବେଶକୁ ଏପରି ବିଷାକ୍ତ କରିଛି ଯେ, ଯୁବକ ତା'ର ପ୍ରଣୟ ସ୍ୱୀକାର କରୁନାହିଁ । ଯୁବତୀ ଓ ତା'ର ପୁଅଟି ପରିତ୍ୟକ୍ତ ଓ ଲାଞ୍ଛିତ ହୋଇ ଘୋର ଦୁଃଖରେ କାଳାତିପାତ କରୁଛନ୍ତି । ଅଞ୍ଚଳର ହୃଦୟବାନ ଓ ଚିନ୍ତାଶୀଳ ଲୋକମାନେ ଯୁବତୀର ଆତ୍ମହତ୍ୟାର ଆଶଙ୍କା ସବୁବେଳେ କରୁଛନ୍ତି । ଗୋଟିଏ ନିରୀହ ଶିଶୁ, ଏକ ଅସହାୟା ନାରୀ, ଏକ ଅବ୍ୟବସ୍ଥିତ ଚିତ୍ତ ଯୁବକର ଭାଗ୍ୟକୁ ନେଇ ଗ୍ରାମବାସୀ ଖେଳ ଖେଳୁଛନ୍ତି । ଯୁବତୀର ପ୍ରଚଳିତ ଆଇନ ଓ ପୋଲିସ ବ୍ୟବସ୍ଥା ଉପରେ ବିଶ୍ୱାସ ନାହିଁ । ଥରେ କେସ୍ ପୋଲିସ୍ କୋର୍ଟକଚେରୀକୁ ଗଲେ ପରିଣତି ଯେ କ'ଣ ହେବ କିଏ କହିପାରିବ? ପାଣି ଚାଲୁଥିବା ନଦୀର ଉଭୟ ପାର୍ଶ୍ୱର କଡ଼ରେ ଗାତ ହୋଇଥାଏ । ସେଥିରେ ଚେଙ୍ଗା ମାଛ ଆଶ୍ରୟ ନେଇଥାନ୍ତି । କିନ୍ତୁ ସେ ଗାତରେ ହାତ ପୁରାଇଲେ, ଯଦି ମାଛ ଥାଏ, ତାକୁ ମୁଠାରେ ଧରି ଆଣିବାକୁ ହୁଏ । ଗାତରେ ହାତ ପଶିଯାଏ। ହାତ ମୁଠା କରି ମାଛ ଆଣିବାବେଳେ ହାତ ଆଣିହୁଏ ନାହିଁ । ହାତ ବାହାରକୁ ଆଣିବାକୁ ହେଲେ, ମାଛଟି ଛାଡ଼ିବାକୁ ହୁଏ । ସେହିପରି ପୋଲିସ ଓ କୋର୍ଟରେ କେସ୍ କରିବା ସହଜ । କିନ୍ତୁ କେସ୍‌ରୁ ବାହାରିବା ପ୍ରାୟ ଅସମ୍ଭବ । ଅର୍ଥ ଶ୍ରାଦ୍ଧ କରି ସର୍ବସ୍ୱାନ୍ତ ହେଲେ କେସ୍‌ରୁ ମୁକୁଳିବା ସମ୍ଭବ । ତେଣୁ ଲୋକକଥା ଅଛି, କେସ୍‌ରେ ଯିଏ ଜିତିଲା, ସେ ହାରିଲା । କେସ୍‌ରେ ଯିଏ ହାରିଲା, ସେ ମଲା ।

ଏହି ଗ୍ରାମର ସବୁଠାରୁ ଧନୀବ୍ୟକ୍ତି ଅନ୍ୟ ଜଣେ ଲୋକକୁ ତାଙ୍କର ବାଛୁରୀକୁ ଭାଗ ଦେଇଥିଲେ । ଏହି ଦୁଇଜଣ ବିବଦମାନ ଦୁଇସାହିର । କିଛିବର୍ଷ ପରେ ବାଛୁରୀର ମାଲିକ ଯେତେବେଳେ ବାଛୁରୀ ମାଗିଲେ, ବାଛୁରୀ ଭାଗ ନେଇଥିବା ବ୍ୟକ୍ତି ତାହା ଦେବାକୁ ମନାକଲେ । ମାଲିକ ନିକଟସ୍ଥ ପୋଲିସ୍ ଷ୍ଟେସନରେ ଅଭିଯୋଗ କଲେ । ବହୁ ଅନୁରୋଧ ପରେ ଓ ୪୦୦ ଟଙ୍କା ଉତ୍କୋଚ ଦେଲାପରେ ପୋଲିସ୍ ଗ୍ରାମକୁ ଆସି ଭାଗ ଧରିଥିବା ବ୍ୟକ୍ତିକୁ ଥାନାକୁ ନେଇଗଲେ । ଥାନାରେ ସେ ୯୦୦ ଟଙ୍କା ମାଲିକଙ୍କୁ ଦେଲେ ଓ କିଛି ଉତ୍କୋଚ ମଧ୍ୟ ପୋଲିସକୁ ଦେଲେ । ଗ୍ରାମବାସୀଙ୍କର କଷ୍ଟ ଉପାର୍ଜିତ ଧନ ଏହିପରି ବାହାରକୁ ଚାଲିଯାଉଛି । ଗ୍ରାମଲୋକେ ନିଜର ଗ୍ରାମବାସୀ ଭାଇଙ୍କର ହାତ ଧରି ବିବାଦ ତୁଟାଇବେ ନାହିଁ, କିନ୍ତୁ କୋର୍ଟକଚେରୀର ଅମଲାଙ୍କଠାରୁ ବହୁ ନିର୍ଯାତନା ଓ ଲାଞ୍ଛନା ଭୋଗକରିବେ । ଗ୍ରାମମାନଙ୍କରୁ ହଜାର ହଜାର ଟଙ୍କା ଯାଇ ସହରର ଶ୍ରୀବୃଦ୍ଧି ହେଉଛି ଏବଂ ଗ୍ରାମଗୁଡ଼ିକ ଶ୍ରୀହୀନ ହେଉଛନ୍ତି ।

ଏହି ଗ୍ରାମରେ ଦୁଇଟି ନାଚଦଳ ରହିଛି । ପ୍ରତିବର୍ଷ ଦୁଇସାହିରେ ହଜାର ହଜାର ଟଙ୍କା ଖର୍ଚ୍ଚ କରି ଦୁଇଟି ନାଚ ଓ ଦୁଇଟି ଯଜ୍ଞ ଅନୁଷ୍ଠିତ ହୁଏ । ଗ୍ରାମର ଉନ୍ନତିମୂଳକ କାମ ପାଇଁ ୫ ଟଙ୍କା ଦେବାକୁ ନାରାଜ କିନ୍ତୁ ଗ୍ରାମ ବିବାଦରେ ଓ ଭାଇ ବିରୁଦ୍ଧରେ ଦାଉସାଧିବାରେ ୫ ହଜାର ଟଙ୍କା ସାରିବାକୁ ପ୍ରସ୍ତୁତ । "ବୃକ୍ଷ ଓ ଜୀବର ବନ୍ଧୁ ପରିଷଦ" ସବୁବେଳେ କହିଆସିଛି -

"ବିବାଦ ଗାଁରେ ତୁଟାଅ
କୋର୍ଟ କଚେରୀକୁ ନଯାଅ ।"

ଦୁଇଟି ପଡ଼ୋଶୀ ଗ୍ରାମ ପାଟୁଳି ସାହି ଓ ସାନଗୋରଡ଼ା ମଧ୍ୟରେ ପ୍ରାୟ ୨୦ ବର୍ଷ ତଳେ ମକଦ୍ଦମା ହୋଇ ଯଥାକ୍ରମେ ୮୦ ହଜାର ଓ ୪୦ ହଜାର ଟଙ୍କା ଖର୍ଚ୍ଚ ହୋଇଥିଲା । ପାଟୁଳି ସାହି ଗ୍ରାମରେ ୫ ବର୍ଷ ତଳେ ଦୁଇ ବିବଦମାନ ଗୋଷ୍ଠୀ ମଧ୍ୟରେ ବିବାଦ ଲାଗି ମକଦ୍ଦମାରେ ଗୋଟିଏ ପକ୍ଷ ଲକ୍ଷେ ଓ ଅନ୍ୟ ପକ୍ଷ ୯୦ ହଜାର ଟଙ୍କା ଖର୍ଚ୍ଚ କରିଥିଲେ ।

(୫)

ଜୁନ୍ ୯ ତାରିଖରେ ପଦଯାତ୍ରୀଦଳ ଡେଙ୍ଗାଝରି ଗ୍ରାମ ପରିଦର୍ଶନ କରିଥିଲେ । ଗ୍ରାମଟି ଆଦିବାସୀ, ହରିଜନ ଲୋକ ଅଧ୍ୟୁଷିତ । ଗ୍ରାମରେ ପ୍ରାୟ ୩୦ ଘର । ଗୋଟିଏ ନଳକୂପ ଅଛି । ନଳକୂପରୁ ପାଣି ନେବାପାଇଁ ଆଦିବାସୀମାନେ ହରିଜନମାନଙ୍କୁ

ବାଧା ଦେବାରୁ, ବର୍ତ୍ତମାନ ଗ୍ରାମରେ ବିବାଦ ହୋଇ ନଳକୂପଟିକୁ ଅକାମୀ କରି ଦିଆଯାଇଛି । ପଦଯାତ୍ରୀ ଦଳ ଗ୍ରାମବାସୀଙ୍କର ସଂକୀର୍ଣ୍ଣତା ଦେଖି ଦୁଃଖିତ ଓ ସ୍ତମ୍ଭୀଭୂତ ହୋଇଯାଇଥିଲେ ।

ବୁଦ୍ଧଗ୍ରାମ ବହୁ ବିଷୟରେ ଅଗ୍ରଣୀ ହେଲେ ମଧ୍ୟ ଛୁଆଁ ଅଛୁଆଁ ଭେଦଭାବ ଏହି ଗ୍ରାମର ଅଧିକାଂଶ ଲୋକଙ୍କର ମନରୁ ଯାଇନାହିଁ । ୧୯୮୨ ମସିହାରେ ସରକାରଙ୍କ ପକ୍ଷରୁ ଏହି ଗ୍ରାମରେ ଏକ ନଳକୂପ ପ୍ରତିଷ୍ଠିତ ହୋଇଛି । ହରିଜନମାନେ ଏହି ନଳକୂପରୁ ପାଣି ନେବାରୁ ଗ୍ରାମବାସୀ ନ୍ୟାୟ କରିଥିଲେ । ହରିଜନମାନଙ୍କର କୌଣସି ଦୋଷ ନଥିଲେ ମଧ୍ୟ ସେମାନେ ଦୋଷ ସ୍ୱୀକାର କରି କ୍ଷମାଭିକ୍ଷା କରିଥିଲେ । ଏହି ଗ୍ରାମର ସୁଯୋଗ୍ୟ ସନ୍ତାନ, ସୁନାମଧନ୍ୟ ଅଧ୍ୟାପକ ଡ. ସୁବାସ ଚନ୍ଦ୍ର ହଜାରୀ ଲୋକମାନଙ୍କୁ ସାମ୍ବିଧାନିକ ଓ ଆଇନଗତ ବ୍ୟବସ୍ଥା ସଂପର୍କରେ ସଚେତନ କରାଇଥିଲେ । ମାନବିକ, ନୈତିକ ଓ ଆଧ୍ୟାତ୍ମିକ ଦିଗରୁ ମଧ୍ୟ ହରିଜନମାନଙ୍କର ପାଣି ନେବାର ମୌଳିକ ଅଧିକାର ରହିଛି ବୋଲି ସେ ନିବେଦନ କରିଥିଲେ ମଧ୍ୟ ଗ୍ରାମର ଅଧିକାଂଶ ଲୋକ ତାଙ୍କ ସହ ଏକମତ ହୋଇନଥିଲେ । ଲେଖକ ଏଥିରେ ମର୍ମାହତ ହୋଇ ଘୋଷଣା କରିଥିଲେ ଯେ ସେ ମରିଗଲା ପରେ ତାଙ୍କ ଚିତାରେ ଜଣେ ହରିଜନ ଅଗ୍ନି ସଂଯୋଗ କରିବ । ପଦଯାତ୍ରୀ ଦଳଙ୍କର ନିବେଦନରେ ଗ୍ରାମବାସୀ ହରିଜନମାନଙ୍କୁ ପାଣିଦେବାକୁ ସମ୍ମତ ହୋଇଥିଲେ । ପୁଆଣିଆଁ ଗ୍ରାମରେ ହରିଜନମାନଙ୍କୁ ନଳକୂପରୁ ପାଣିଦେବାର ସୁଯୋଗ ଦିଆଯାଉନାହିଁ । ସାନଗୋରଡ଼ା ଓ ଆଙ୍ଗିସିଙ୍ଗି ଗ୍ରାମରେ ଗୋଟିଏ ନଳକୂପରୁ ହରିଜନ ଓ ସବର୍ଣ୍ଣମାନ ପାଣି ନେଉଥିବା ଦେଖି ପଦଯାତ୍ରୀମାନେ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ।

(୬)

ଅଗ୍ରଣୀ ଗ୍ରାମ ବୁଦ୍ଧଗ୍ରାମରେ କେତେକ ଲୋକ ଗୁଲି ଓ ମଦ ଖାଉଥିବା ଯୋଗୁଁ ପଦଯାତ୍ରୀ ଦଳ ବ୍ୟଥିତ ହୋଇଥିଲେ । ନିଶା ସେବନ କରୁଥିବା ବ୍ୟକ୍ତିମାନଙ୍କର ଅସହାୟତାର ସୁଯୋଗ ନେଇ, ଏହି ଗ୍ରାମର ଜଣେ ବ୍ୟକ୍ତି ଅଫିମ ଓ ମଦ ବିକ୍ରି କରୁଥିଲେ ଅର୍ଥାତ୍ ଆତ୍ମହତ୍ୟା ପାଇଁ ଉଦ୍ୟମୀ ବ୍ୟକ୍ତିମାନଙ୍କୁ ସେ ବିଷପାତ୍ର ବଢ଼ାଇ ଦେଉଥିଲେ । ପଦଯାତ୍ରୀ ଦଳ ଏହି ଦୋକାନ ବନ୍ଦ କରିବାକୁ ଅନୁରୋଧ କରିଥିଲେ । ବାହାର ଗ୍ରାମର କେତେକ ଲୋକ ଆସି ଗୁଲି ଖଟିରେ ଗୁଲି ଖାଉଥିବା ଯୋଗୁଁ ଗ୍ରାମର ଅପକୀର୍ତ୍ତି ଚାରିଆଡ଼େ ରଟୁଥିଲା । ଏହା ବାହାର ଲୋକଙ୍କୁ ଓ ଗୁଲି ଖଟିକୁ ବନ୍ଦ କରିବାକୁ ନିବେଦନ କରାଯାଉଥିଲା । ସଭାରେ ଏହି ସମ୍ପର୍କରେ ସବିଶେଷ ଆଲୋଚନା ହେଉଥିଲା । ଏକ ଦୃଷ୍ଟିକୋଣ ଉପସ୍ଥିତ ହେଉଥିଲାଯେ ଯେଉଁମାନେ ନିଶାସେବନ କରୁଛନ୍ତି, ସେମାନେ

ଯେହେତୁ ନିଜର ଧନ ଖର୍ଚ୍ଚ କରୁଛନ୍ତି, ତେଣୁ ତାଙ୍କୁ କହିବାର କାହାର ଅଧିକାର ନାହିଁ । କିନ୍ତୁ ପଦଯାତ୍ରୀ ଦଳ ଯୁକ୍ତି ବାଢ଼ିଥିଲେ ଯେ ବ୍ୟକ୍ତି ସମାଜର ସନ୍ତାନ । ସମ୍ପତ୍ତି ବ୍ୟକ୍ତିର ନୁହେଁ, ସମାଜର । ସମ୍ପତ୍ତି ଅପବ୍ୟୟ କରି କ୍ଷତି ସାଧନ କରିବାକୁ କାହାର ଅଧିକାର ନାହିଁ । ବ୍ୟକ୍ତିଗତ ସମ୍ପତ୍ତି ଏପରି ବିନିଯୋଗ ହେବା ଉଚିତ ଯଦ୍ୱାରା ସମାଜର ସମସ୍ତଙ୍କର ମଙ୍ଗଳ ହେବ । ବିପଥଗାମୀ ବ୍ୟକ୍ତିମାନଙ୍କୁ ଠିକ୍ ବାଟକୁ ଆଣିବା ପାଇଁ ସମାଜର ନୈତିକ ଦାୟିତ୍ୱ ରହିଛି, ଏକଥା ପଦଯାତ୍ରୀ ଦଳ ଚେତାଇ ଦେଇଥିଲେ । ଏହି ଗ୍ରାମର କେତେକ ଯୁବକ ଚାକିରୀରୁ ଛୁଟିରେ ଆସି ଭୋଜିଭାତ କରନ୍ତି । ସେଥିରେ ମଦ ପରିବେଷଣ ହେଉଥିବାର ସମ୍ବାଦ ପ୍ରକାଶ ପାଇଥିଲା । ଯେଉଁମାନେ ମଦ ପିଉଥିଲେ ସେମାନେ ମଦ ପିଇବା ଏକ ଫେସନ ବା ଆଭିଜାତ୍ୟର ଚିହ୍ନ ବୋଲି ଧରି ନେଇଥିଲେ । ଏହିପରି ମାରାତ୍ମକ ଦୃଷ୍ଟିକୋଣ ଯୋଗୁଁ ପଦଯାତ୍ରୀ ଦଳ ଉଦ୍‌ବେଗ ପ୍ରକାଶ କରିଥିଲେ ଓ ଗ୍ରାମବାସୀ ସମୂହ ଭାବରେ ଏହାର ପ୍ରତିବାଦ କରିବାକୁ ନିବେଦନ କରିଥିଲେ । ପଦଯାତ୍ରୀ ଦଳ ଏହି ଗ୍ରାମର ନିଷ୍ଠାପର କର୍ମୀ ଶ୍ରୀ ଉଦୟନାଥ ଖଟେଇ ଓ ଶ୍ରୀ ଭିକ୍ଷାକାରୀ ହଜାରୀଙ୍କର ସାନିଧ୍ୟ ଲାଭ କରିଥିଲେ । ବର୍ତ୍ତମାନ ଭୋଗ ବିଳାସ ସର୍ବସ୍ୱ ସମାଜରେ ସେମାନଙ୍କ ପରି ନିଃସ୍ୱାର୍ଥପର ଜନସେବକ ବିରଳ । ସେମାନଙ୍କ ତ୍ୟାଗପୂତ ଜୀବନ, ପଦଯାତ୍ରୀଙ୍କ ପାଇଁ ପ୍ରେରଣାର ଉତ୍ସ ଥିଲା ।

(୭)

ଭାରତର ଗାଁଗହଳିରେ ଲୋକମାନଙ୍କର ସ୍ୱାସ୍ଥ୍ୟହାନୀ, ଦୁର୍ବଳତା ଓ ରୋଗର ଏକ ପ୍ରଧାନ କାରଣ ହେଲା ହୁକ୍‌ୱାର୍ମ । ହୁକ୍‌ୱାର୍ମ ଅନ୍ତଃନଳୀରେ ଲାଗି ରହି ରକ୍ତ ଶୋଷିନିଅନ୍ତି । ମଣିଷ ଦୁର୍ବଳ ହୋଇ କାମ କରିବାର ଶକ୍ତି ହରାଇ ରୋଗର ଶୀକାର ହୁଏ । ଗାଁ ଗହଳିରେ ଲୋକମାନେ ଖାଲି ପାଦରେ ଝାଡ଼ା ଯାଆନ୍ତି । ହୁକ୍‌ୱାର୍ମ ପାଦରେ ପଶିଯାନ୍ତି, କିନ୍ତୁ ଆକ୍ରାନ୍ତ ବ୍ୟକ୍ତିକୁ କଷ୍ଟ ଜଣାପଡ଼େ ନାହିଁ । ପଦଯାତ୍ରୀ ଦଳ ଘରେ ଘରେ ବରପାଲି ପାଇଖାନା କରିବାକୁ ଗ୍ରାମବାସୀଙ୍କୁ ପ୍ରବର୍ତ୍ତାଇଥିଲେ । କେତେକ ବ୍ୟକ୍ତିଙ୍କ ଘରେ ପାଇଖାନା ଥିଲେ ମଧ୍ୟ ସେମାନେ ଏହାକୁ କାର୍ଯ୍ୟକାରୀ ନକରି ବାହାରେ ମଳତ୍ୟାଗ କରନ୍ତି । ସେମାନଙ୍କୁ ପଚାରିବାରେ ସେମାନେ କହିଥିଲେ ଯେ "ପାଇଖାନା ବ୍ୟବହାର କରିବାକୁ ସେମାନଙ୍କୁ ଭଲ ଲାଗୁନି ।" ଅଜ୍ଞତା ଓ ଅଭ୍ୟାସର ଅଭାବ ଯୋଗୁଁ ଏପରି ମନୋଭାବ ସୃଷ୍ଟି ହୋଇଛି ।

(୮)

ପଦଯାତ୍ରୀ ଦଳ ଗ୍ରାମେ ଗ୍ରାମେ ପରିବାର ନିୟନ୍ତ୍ରଣର ବାର୍ତ୍ତା ପହଞ୍ଚାଇଥିଲେ । ଲୋକ ସଂଖ୍ୟାର ନିୟନ୍ତ୍ରଣ ନ ହେଲେ ପରିବେଶର ସୁପରିଚାଳନା ଅସମ୍ଭବ । ଲୋକ

ସଂଖ୍ୟାର ଅଭିବୃଦ୍ଧି ଯୋଗୁଁ ଆମର ସମସ୍ତ ପ୍ରାକୃତିକ ସଂପଦର ଦ୍ରୁତ କ୍ଷୟ ଘଟୁଛି । ବୁଦ୍ଧଗ୍ରାମରେ ଶତକଡ଼ା ୮୦ ଭାଗ ପରିବାର ଅସ୍ତ୍ରୋପଚାର କରି ପରିବାର ନିୟନ୍ତ୍ରଣ କରିବା ଯୋଗୁଁ ପଦଯାତ୍ରୀ ଦଳ ଆନନ୍ଦ ଲାଭ କରିଥିଲେ ।

(୯)

ଭାରତର ଶତକଡ଼ା ୭୫ ଭାଗ ଲୋକ ଗାଁରେ ରହନ୍ତି । ଗାଁଗହଳିର ଉନ୍ନତି ନହେଲେ ଦେଶର ଉନ୍ନତି ଅସମ୍ଭବ । ଗ୍ରାମର ଉନ୍ନତି ପାଇଁ ଗ୍ରାମବାସୀମାନେ ସରକାରୀ ସାହାଯ୍ୟ ଉପରେ ସବୁବେଳେ ନିର୍ଭର ନ କରି ନିଜେ ଉଦ୍ୟମ କରିବା ଉଚିତ । ଗ୍ରାମମାନଙ୍କରେ ଏକତା ରହିଲେ ସେମାନେ ଅନେକ କିଛି କରିପାରିବେ । ଗ୍ରାମବାସୀମାନଙ୍କର ସମୂହ ଉଦ୍ୟମରେ, ଲୋକଶକ୍ତିର ପ୍ରୟୋଗରେ, ବୁଦ୍ଧଗ୍ରାମ, ନାଗମୁଣ୍ଡଳୀ ଓ ବଡ଼ ଗୋରଡ଼ାରେ ହାଇସ୍କୁଲ ପ୍ରତିଷ୍ଠିତ ହୋଇପାରିଛି । କାଳିକା ପ୍ରସାଦ ପଞ୍ଚାୟତର ୧୦ ଖଣ୍ଡ ଗ୍ରାମର ମିଳିତ ଉଦ୍ୟମରେ ଓ ଜନସାଧାରଣଙ୍କର ତ୍ୟାଗ ବଳରେ ଏକ ଡ଼ାକ୍ତରଖାନା ୧୯୮୧ ମସିହାରୁ କାର୍ଯ୍ୟ କରୁଛି । ଏହି ଡ଼ାକ୍ତରଖାନା ପ୍ରତିଷ୍ଠା ପାଇଁ ସର୍ବଶ୍ରୀ ଯୋଗୀନାଥ ସାହୁ, ଶଙ୍କର ଭଞ୍ଚ ଓ ଅନ୍ୟ କେତେକଙ୍କର ନିଷ୍ଠାପର ଶ୍ରମ, ଜନମାନସରେ ଚିର ଦିନ ପାଇଁ ଅମର ହୋଇ ରହିବ ।

ଗ୍ରାମର ପ୍ରଗତି ପାଇଁ - ଗ୍ରାମର ଶିକ୍ଷିତ, ସଂସ୍କୃତିସମ୍ପନ୍ନ, ସ୍ୱଚ୍ଛଳ ବ୍ୟକ୍ତିବୃନ୍ଦଙ୍କୁ ଅବସର ପରେ ଗାଁ'କୁ ଫେରି ଆସିବାକୁ ପଡ଼ିବ । ଫଳରେ ଗ୍ରାମର ଆର୍ଥିକ, ରାଜନୀତିକ, ସାମାଜିକ, ସଂସ୍କୃତିକ, ବୌଦ୍ଧିକ, ମାନବିକ, ନୈତିକ ଓ ଆଧ୍ୟାତ୍ମିକ ଜୀବନ ସମୁନ୍ନତ ହେବ । ସେମାନଙ୍କ ଅର୍ଥ, ଧୀଶକ୍ତି, ଧାରଣା, ପ୍ରେରଣା ଦ୍ୱାରା ଗାଁ'ରେ ଜଳସେଚନର ସୁବିଧା ହେବ, ଜଙ୍ଗଲ ସଂପଦର ସୁରକ୍ଷା ହେବ, କୁଟୀର ଶିଳ୍ପ ଗଢ଼ି ଉଠିବ । ଲୋକସଂଖ୍ୟା ନିୟନ୍ତ୍ରିତ ହେବ ଓ ନଗରର ଦୂଷିତ ଜଳବାୟୁ, ଅସ୍ଥିରତା, ସଂଘର୍ଷ ନିମ୍ନତର ଜୀବନର ମାନ ସଂପର୍କରେ ସଚେତନତା ବୃଦ୍ଧି ପାଇବ । ଗାଁ'ରୁ ସହରକୁ "ପାଗଳ ଦୌଡ଼" ଅନେକାଂଶରେ ରୋକାଯାଇ ପାରିବ । ସଂପୂର୍ଣ୍ଣ ବିପ୍ଳବ ସାଧିତ ହେବ । ଯୁବକମାନେ ନିଜର ପରିବାର, ଗାଁ ଓ ପରିବାର ଛାଡ଼ି ଦୂରଦୂରାନ୍ତରେ ଅସନ୍ତୋଷରେ ରହିବା ଅପେକ୍ଷା ଗାଁ'ର କୃଷି ଓ କୁଟୀର ଶିଳ୍ପରେ କାମ କରି ଜୀବନରେ ଅପେକ୍ଷାକୃତ ପୂର୍ଣ୍ଣତା ଲାଭ କରିବେ ।

କ୍ରାନ୍ତିପଥ , ଜୁଲାଇ, ଡିସେମ୍ବର, ୧୯୮୪

# ଗ୍ରାମେ ଗ୍ରାମେ ପରିବେଶ

-ନାରାୟଣ ହଜାରୀ
ଶରତ କୁମାର ଦୋରା

କେଶରପୁର ଏକ କ୍ଷୁଦ୍ର ପଲ୍ଲୀ । ଲୋକସଂଖ୍ୟା ୭୦୦ ଭିତରେ । ପୁରୀ ଜିଲ୍ଲା ନୟାଗଡ଼ ବ୍ଲକ୍‌ର ଏହି ଗ୍ରାମରେ ୧୯୫୪ ମସିହାରୁ ଲୋକଶକ୍ତିର ସଂଗଠନ କେତେକ ଦେଶପ୍ରାଣ ଉତ୍ସାହୀ ଯୁବକଙ୍କ ଦ୍ୱାରା ହୋଇଥିଲା । ପରିବାର ନିୟନ୍ତ୍ରଣ, ଜଳସେଚନ, ଶିକ୍ଷା, ସ୍ୱାସ୍ଥ୍ୟ ଓ ସାମାଜିକ ବନୀକରଣ ଆଦି କ୍ଷେତ୍ରରେ ଉଲ୍ଲେଖନୀୟ ପ୍ରଗତି ହୋଇଥିଲା । ଗ୍ରାମର ୮୦ ଭାଗ ଦମ୍ପତି ପରିବାର ନିୟନ୍ତ୍ରଣ ପାଇଁ ଅସ୍ତ୍ରୋପଚାର କରିଛନ୍ତି । ୧୯୫୮ ମସିହା ବେଳକୁ ଗ୍ରାମରେ ସ୍କୁଲଟିଏ ନଥିଲା । ୧୯୭୦ ମସିହା ବେଳକୁ ନିମ୍ନ ପ୍ରାଥମିକ, ଉଚ୍ଚ ପ୍ରାଥମିକ, ମଧ୍ୟ ଇଂରାଜୀ ଓ ଉଚ୍ଚ ବିଦ୍ୟାଳୟ ହୋଇସାରିଥିଲା ।

ବୁଦ୍ଧଗିରି ପାହାଡ଼ତଳେ ଏହି ଗ୍ରାମଟି । ପାହାଡ଼ଟିର ପ୍ରଭୂତ କ୍ଷତି ହୋଇସାରିଲା ପରେ, ଗ୍ରାମବାସୀ ଦେଖିଲେ ଯେ ପାହାଡ଼ ତଳ ସବୁ ଧୋଢ଼ା ହୋଇଯାଇଛି ଓ ପାହାଡ଼ର ମାଟି, ଗୋଡ଼ି, ପଥର ସବୁ ଜମି ଉପରେ ମାଡ଼ିଯାଇଛି । ଜାଳେଣି ମିଳିଲା ନାହିଁ । ଅନ୍ୟାନ୍ୟ ବହୁ କ୍ଷତି ଘଟିଲା ପରେ ସାମାଜିକ ଚେତନା ଥିବା କେତେକ ଶିକ୍ଷିତ ଯୁବକଙ୍କ ଦ୍ୱାରା ଉଦ୍‌ବୁଦ୍ଧ ହୋଇ ଗ୍ରାମବାସୀ ସ୍ଥିରକଲେ ଯେ ଜଙ୍ଗଲର ରକ୍ଷଣାବେକ୍ଷଣ କରିବେ । ୧୯୭୦ ମସିହାରୁ ଏଥିପାଇଁ ଉଦ୍ୟମ ହୋଇଥିଲା । ୧୯୭୪ ମସିହା ବେଳକୁ ଜଙ୍ଗଲର ସୁରକ୍ଷା କାର୍ଯ୍ୟ ଆରମ୍ଭ ହେଲା । ୧୯୭୮ ମସିହା ବେଳକୁ ଜଙ୍ଗଲର ସୁରକ୍ଷା କଡ଼ାକଡ଼ି ରୂପେ କରାଗଲା । ଗ୍ରାମବାସୀମାନେ ଠେଙ୍ଗା ପାଳି କରି ଜଙ୍ଗଲର ସୁରକ୍ଷାଭାର ନେଲେ ।

ପରେ ପରେ ଜଣାପଡ଼ିଲା ଯେ, ନୂତନ ଭାବରେ ସୃଷ୍ଟି ହେଉଥିବା ଗଛ, ଲତା, ଗୁଳ୍ମର ପ୍ରଧାନ ଶତ୍ରୁ ହେଉଛନ୍ତି ଛେଳି । ଗ୍ରାମବାସୀ ନିଷ୍ପତ୍ତି ନେଇ ଛେଳି ବିକ୍ରି କରିଦେଲେ । ପ୍ରକୃତି ତା'ର ଭାରସାମ୍ୟ ରଖିବାକୁ ସତତଃ ତତ୍ପର । ଜଙ୍ଗଲରେ ଓ

ତା'ର ପାଦଦେଶରେ ଗଛ, ଲତା, ଗୁଳ୍ମ ବଢ଼ିବାକୁ ଲାଗିଲେ । ପାଖ ପଡ଼ିଶା ଗାଁ ଲୋକଙ୍କର ଏ ସବୁ ଦେଖି ଲୋଭହେଲା । ସେମାନେ ଜାଳେଣି ସଂଗ୍ରହ କରିବାକୁ ଆସିଲେ । କେଶରପୁର ଗ୍ରାମର କେତେକ ଦେଶପ୍ରାଣ ବ୍ୟକ୍ତି ମାଳତୀବୁଦ୍ଧଗିରି ପାହାଡ଼ର ଚାରିପଟେ ଥିବା ଅନ୍ୟ ବାରଖଣ୍ଡ ଗ୍ରାମକୁ ଯାଇ ଜଙ୍ଗଲ ସଂରକ୍ଷଣ ଓ ବୃକ୍ଷରୋପଣ ସଂମ୍ପର୍କରେ ବୁଝାଇଲେ । ସେଥିରେ ସଫଳ ନହେବାରୁ ଅନଶନ କଲେ । ଯଦ୍ଵାରା ପଡ଼ୋଶୀ ଗ୍ରାମମାନଙ୍କରେ ନୈତିକ ଚେତନା ସୃଷ୍ଟି ହେଲା । ଜାତୀୟ ସେବାସଂସ୍ଥା, ଜଙ୍ଗଲ ବିଭାଗ ଓ ଗ୍ରାମବାସୀଙ୍କ ମିଳିତ ଉଦ୍ୟମରେ ବୃକ୍ଷରୋପଣ କରାଗଲା । ସ୍ୱିଡ଼େନ ଦେଶରୁ ଆଗ୍ରହୀ ବ୍ୟକ୍ତିମାନେ ଏହି ଅଭିନବ ବିପ୍ଳବକୁ ଦେଖିବାକୁ ଆସିଲେ । ହିମାଳୟର ଚିପ୍‌କୋ ଆନ୍ଦୋଳନର ମହାରଥୀ ଶ୍ରୀ ସୁନ୍ଦରଲାଲ ବହୁଗୁଣା, ଓଡ଼ିଶା ସରକାରଙ୍କର ଉଚ୍ଚପଦସ୍ଥ କର୍ମଚାରୀବୃନ୍ଦ ଏହାକୁ ଦେଖିବାକୁ ଆସିଲେ । ଲୋକମାନେ ଉତ୍ସାହିତ ହୋଇ ଆଗନ୍ତୁକ ଅତିଥିମାନଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା କଲେ ।

ଜଙ୍ଗଲରେ ନୂତନ ଜୀବର ସଂଚାର ହେଲା । ମରିଯାଇଥିବା ଝରଣା ପୁନର୍ଜନ୍ମ ଲାଭକଲା । ମୃତ୍ତିକା କ୍ଷୟ ବନ୍ଦ ହେଲା । ଭୂମିତଳେ ଥିବା ଜଳପତ୍ତନ ଉପରକୁ ଉଠିଲା । ସ୍କୁଲପିଲାମାନେ ଖେଳଛୁଟିରେ ଯାଇ ପ୍ରଚୁର କୋଳି ଖାଇଲେ । ଦରିଦ୍ର ହରିଜନ ସ୍ତ୍ରୀଲୋକମାନେ ପାଖ ପଡ଼ିଶା ଗାଁରେ କୋଳି ବିକ୍ରି କଲେ । ଗୃହପାଳିତ ପଶୁମାନେ ପ୍ରଚୁର ପରିମାଣରେ ଘାସ ପାଇଲେ ।

ଏହି ଆନ୍ଦୋଳନକୁ ପାଖଆଖ ଅନ୍ୟଗ୍ରାମରେ ପ୍ରସାର ପାଇଁ ଚିନ୍ତା କରାଗଲା । ୧୯୮୩ରେ "ବୃକ୍ଷ ଓ ଜୀବବର ପରିଷଦ" ନାମରେ ଏକ ସଂଗଠନ ଗଠନ କରାଗଲା । ଓଡ଼ିଶା ସରକାରଙ୍କ ବିଜ୍ଞାନ, କାରିଗରୀ ଓ ପରିବେଶ ବିଭାଗ ସାହାଯ୍ୟ କରିବାକୁ ଆଗେଇ ଆସିଲେ । ୧୯୮୪ ଫେବୃଆରୀ ୨୨, ୨୩, ୨୪ ତାରିଖରେ ଓଡ଼ଗାଁ, ନୟାଗଡ଼ ବ୍ଲକ୍‌ର ୭ଟି ପଞ୍ଚାୟତର ୩୨ ଖଣ୍ଡ ଗ୍ରାମରେ ବନରକ୍ଷା ଓ ଗ୍ରାମଯାତ୍ରା ଆରମ୍ଭ କରାଗଲା । ପ୍ରତ୍ୟେକ ଗ୍ରାମରୁ ୪ ଜଣ ଲେଖାଏଁ ପଦଯାତ୍ରୀ ଭାଗ ନେଇଥିଲେ । ଏହିପରି ୧୦୮ ଜଣ ପଦଯାତ୍ରୀ ଯୋଗ ଦେଇଥିଲେ । ସେମାନେ ନିମ୍ନଲିଖିତ ବାର୍ତ୍ତାମାନ ପ୍ରଚାର କରୁଥିଲେ:-

"ଆଜି ପୃଥିବୀ ଧ୍ୱଂସର ଦ୍ୱାରଦେଶରେ ଉପସ୍ଥିତ । ବାୟୁ, ପାଣି ଓ ମାଟି ଦୂଷିତ ହେବା ଯୋଗୁଁ ମଣିଷ ସଭ୍ୟତାର ଭବିଷ୍ୟତ ନେଇ ଉଦ୍‌ବେଗ ପ୍ରକାଶ ପାଉଛି । ଆମର ଶିଳ୍ପ ଓ ନଗର ସଭ୍ୟତା ଭୋଗ ଉପରେ ପ୍ରତିଷ୍ଠିତ । ଏଥିପାଇଁ ପରିବେଶର ଦ୍ରୁତ ଓ ନିର୍ମମ ଅବକ୍ଷୟ ଚାଲିଛି । ପ୍ରତି ମିନିଟ୍‌ରେ ୩୨ ହେକ୍ଟର ଜଙ୍ଗଲ ନଷ୍ଟ କରାଯାଉଛି । ଏହି ବିଷପାନ କରିବାର ସାମର୍ଥ୍ୟ ଅଛି କେବଳ ବୃକ୍ଷର ।

'ବୃକ୍ଷ ହିଁ ନୀଳକଣ୍ଠ ରୂପେ ପ୍ରତିଭାତ । ସେହିଁ ହିଁ ଆମର ରକ୍ଷାକର୍ତ୍ତା ଓ ଜୀବନଦାତା । ବୃକ୍ଷ ଆମକୁ ବାୟୁ, ଜଳ, ମାଟି, ଖାଦ୍ୟ, ବସ୍ତ୍ର, ବାସଗୃହ, ଜାଳ, ଗୋଖାଦ୍ୟ, ଔଷଧ ଓ ଛାୟା ପ୍ରଦାନ କରେ । ବୃକ୍ଷ ଓ ଅରଣ୍ୟ ବର୍ଷା କରାଏ ଓ ଭୂମିତଳ ଜଳପତ୍ତନକୁ ଉର୍ଦ୍ଧ୍ୱଗାମୀ କରାଏ । ସେ ଜୀବର ଜୀବନ ।' ତା'ର ଜୀବନର ଏକମାତ୍ର ସନ୍ଦେଶ ।"

ଜଙ୍ଗଲ ସୁରକ୍ଷା ସହିତ ପରିବାର ନିୟନ୍ତ୍ରଣ, ହୁକ୍ ଓ୍ୱାର୍ମରୁ ରକ୍ଷାପାଇବା ପାଇଁ ବରପାଲି ପାଇଖାନା ପ୍ରଚଳନ, କୋର୍ଟକଚେରୀକୁ ନ ଯାଇ ଗାଁର ବିବାଦ ଗାଁରେ ତୁଟାଇବାକୁ, ନିଶାପାନ ବର୍ଜନ କରି ଗାଁରୁ ଛୁଆଁଅଛୁଆଁ ଭେଦଭାବ ଦୂର କରିବାକୁ, ଯୌତୁକ ପ୍ରଥା ବର୍ଜନ କରିବାକୁ, ସରକାରୀ ସାହାଯ୍ୟ ଉପରେ ବିଶେଷ ଭାବରେ ନିର୍ଭର ନ କରି ଗ୍ରାମବାସୀମାନଙ୍କର ସ୍ୱକୀୟ ଉଦ୍ୟମରେ ପ୍ରଗତି ପାଇଁ ପଦକ୍ଷେପ ନେବାକୁ ଲୋକମାନଙ୍କୁ ପ୍ରବର୍ତ୍ତିତ କରାଯାଇଥିଲା । ବିଭିନ୍ନ ଗ୍ରାମରେ ମାନପୁରର ଶ୍ରୀ ଯୋଗୀନାଥ ସାହୁ ଓ ଭଗବାନ ସାହୁ ପଦଯାତ୍ରୀଙ୍କର ମର୍ମସ୍ପର୍ଶୀ ସ୍ଲୋଗାନ୍ ଚହଳ ପକାଇ ଦେଇଥିଲା । ଶହ ଶହ ସଂଖ୍ୟାରେ ଗ୍ରାମବାସୀ ହରିବୋଲ, ହୁଳହୁଳି ଦେଇ ସଂକୀର୍ତ୍ତନ ସହ ପଦଯାତ୍ରୀମାନଙ୍କୁ ସ୍ୱାଗତ କରିଥିଲେ ଓ ସଭାରେ ଯୋଗ ଦେଇଥିଲେ । ଏହି ଅଞ୍ଚଳରେ ସାଧାରଣତଃ ସ୍ତ୍ରୀଲୋକମାନେ ସଭାରେ ଯୋଗଦେବା ପରମ୍ପରା ନଥିଲେ ମଧ୍ୟ ମାନପୁର ଗ୍ରାମର ସ୍ତ୍ରୀଲୋକମାନେ ସଭାରେ ଯୋଗଦେଇ ପଦଯାତ୍ରୀମାନଙ୍କର ଉତ୍ସାହ ବର୍ଦ୍ଧନ କରିଥିଲେ । ଯେଉଁ ସମସ୍ତ ସ୍ଲୋଗାନ୍ ଦିଆଯାଉଥିଲା, ସେମାନଙ୍କ ମଧ୍ୟରୁ ଗୋଟିଏ ବିଶେଷ ଭାବରେ ମହିଳାମାନଙ୍କ ଦ୍ୱାରା ଆଦୃତ ହେଉଥିଲା । ତାହା ହେଲା 'ଯୌତୁକ ପ୍ରଥାର ନିରାକରଣ' ।

ଏହି ପଦଯାତ୍ରାର କେତେକ ସଭା କାର୍ଯ୍ୟକ୍ରମରେ ଯୋଗଦେବା ପାଇଁ ସ୍ଥାନୀୟ ସରକାରୀ କର୍ମଚାରୀମାନଙ୍କୁ ନିମନ୍ତ୍ରଣ କରାଯାଇଥିଲା । କିନ୍ତୁ ଅତ୍ୟନ୍ତ ଦୁଃଖ ଓ ପରିତାପର ବିଷୟ ଯେ, କେତେକ ବୈଷୟିକ କର୍ମଚାରୀଙ୍କୁ ବାଦ୍ ଦେଲେ ଅନ୍ୟାନ୍ୟ କର୍ମଚାରୀମାନେ ଯୋଗଦେଇ ନଥିଲେ । ସେମାନେ ଯୋଗଦେଇଥିଲେ ପଦଯାତ୍ରୀଙ୍କର ଓ ଗ୍ରାମବାସୀମାନଙ୍କର ଉତ୍ସାହ ଯେ କେତେ ବଢ଼ିଯାଇଥାଆନ୍ତା, ତାହା ସେମାନେ ଉପଲବ୍ଧି କରିପାରିନଥିଲେ । ସେମାନେ ଯାଇଥିଲେ ଜନସାଧାରଣଙ୍କର ହିତ ହୋଇଥାନ୍ତା ଓ ଜନତାର ହୃଦୟର ସ୍ପନ୍ଦନ ଅନୁଭବ କରିପାରିଥାନ୍ତେ ।

ଧରିତ୍ରୀ, ତା ୧.୪.୮୪ରେ ପ୍ରକାଶିତ

# ଗ୍ରାମେ ଗ୍ରାମେ ପରିବେଶ

-ନାରାୟଣ ହଜାରୀ
ଶରତ କୁମାର ଦୋରା

ପୁରୀ ଜିଲ୍ଲାର ନୟାଗଡ଼ ଓ ଓଡ଼ଗାଁ ବ୍ଲକ୍‌ର ୨୨ଖଣ୍ଡ ଗ୍ରାମକୁ ନେଇ ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ୧୯୮୩ ରୁ ଗଢ଼ାଯାଇଛି । ଏହାର ନାମ "ବୃକ୍ଷ ଓ ଜୀବର ବନ୍ଧୁ ପରିଷଦ" । ଏହାର ମୁଖ୍ୟ କାର୍ଯ୍ୟାଳୟ କେଶରପୁର ଗ୍ରାମରେ ଅବସ୍ଥାପିତ । ୧୯୮୪ ଜୁନ୍ ୮, ୯, ୧୦ ତାରିଖରେ ରଣପୁର ଓ ଓଡ଼ଗାଁ ବ୍ଲକ୍‌ର ୧୫ ଖଣ୍ଡ ଗ୍ରାମରେ ଏହି ପରିଷଦ ପକ୍ଷରୁ ପଦଯାତ୍ରା କରାଯାଇଥିଲା । ଏଥିରେ ଓଡ଼ିଶାର ବିଶିଷ୍ଟ ସମାଜସେବୀ, ଅଧ୍ୟାପକ ରାଧାମୋହନଙ୍କ ଦ୍ୱାରା ପ୍ରତିଷ୍ଠିତ ଫୁଲବାଣୀର ସେବା ସଂସ୍ଥା "ନିପୀଡ଼ିତ"ସହଯୋଗ କରିଥିଲା । "ନିପୀଡ଼ିତ"ର ନିଷ୍ଠାପର ଓ ନିଃସ୍ୱାର୍ଥପର କର୍ମୀ ଶ୍ରୀ ରଘୁନାଥ ଏହି କାର୍ଯ୍ୟକ୍ରମରେ ଯୋଗଦେଇ ଆନ୍ଦୋଳନକୁ ଦିଗ୍‌ଦର୍ଶନ ଦେଇଥିଲେ ।

କେଶରପୁର ଗ୍ରାମରୁ ପଦଯାତ୍ରୀ ଦଳ ୮ ତାରିଖ ଦିନ ଯାତ୍ରା ଆରମ୍ଭ କରିଥିଲେ । ପ୍ରାୟ ୬ ମାସ ହେଲା ବର୍ଷା ନଥିଲା । ପଦଯାତ୍ରୀ ଦଳ ଯେତେବେଳେ ଗୋଡ଼ିପଡ଼ା ଗ୍ରାମରୁ ପଦଯାତ୍ରାର ଶୁଭାରମ୍ଭ କରନ୍ତି, ସେତେବେଳେ ବର୍ଷା ଆରମ୍ଭ ହୋଇଥିଲା । ପଦଯାତ୍ରୀଙ୍କ ମଧ୍ୟରେ ବିପୁଳ ଆନନ୍ଦ ଓ ଉତ୍ସାହ ଖେଳିଯାଇଥିଲା । ସେମାନଙ୍କର ବିଶ୍ୱାସ ହୋଇଥିଲା ଯେ ତାଙ୍କର କାର୍ଯ୍ୟକ୍ରମ ପ୍ରତି ଈଶ୍ୱରଙ୍କର ଆଶୀର୍ବାଦ ରହିଛି । ତା'ପରେ ରତ୍ନମାଳା ପାହାଡ଼ର ପାଦଦେଶରେ ଥିବା ତଲାରୀବନ୍ଧ ଗ୍ରାମରେ ପଦଯାତ୍ରୀ ଦଳ ସନ୍ଧ୍ୟାବେଳେ ପହଞ୍ଚିଥିଲେ । ଗ୍ରାମବାସୀବୃନ୍ଦ ପଦଯାତ୍ରୀମାନଙ୍କୁ ବିପୁଳ ସମ୍ବର୍ଦ୍ଧନା ଦେଇଥିଲେ । ଏହି ଗ୍ରାମର ଲୋକମାନେ ଅଭିଯୋଗ କରିଥିଲେ ଯେ, ସରକାରଙ୍କର ଉଦ୍ୟାନ ବିଭାଗ ଏହି ଗ୍ରାମର ପାହାଡ଼ରେ ଥିବା ଗଛକୁ କାଟି ଜଙ୍ଗଲ ସଫାକଲା, ଫଳ ଗଛ ଲଗାଇଲା, କିନ୍ତୁ ଜଗୁଆଳି ନ ରହିବାରୁ ରକ୍ଷଣାବେକ୍ଷଣ ନ କରିବାରୁ ସମସ୍ତ ଗଛ ନଷ୍ଟହୋଇ ଯାଇଥିଲା । ଏଥିରେ ଫଳଗଛ ତ ହେଲା ନାହିଁ, ଆଗରୁ ଜଙ୍ଗଲରେ ଥିବା ସମସ୍ତ ଗଛ ମଧ୍ୟ ଗଲା ।

ସରକାରୀ କାର୍ଯ୍ୟ ସମୟେ ସମୟେ କିପରି ହୁଏ ଏହା ତା'ର ଏକ ନମୁନା । ଏଥିରେ ଗ୍ରାମବାସୀ ଘୋର ଦୁଃଖପ୍ରକାଶ କରିଥିଲେ ।

ତା'ପରେ ପଦଯାତ୍ରୀ ଦଳ ସନ୍ଧ୍ୟା ୮ ଘଣ୍ଟା ସମୟରେ ଡମସାହି ଗ୍ରାମରେ ପହଞ୍ଚିଥିଲେ । ଅନ୍ୟ ଗ୍ରାମମାନଙ୍କ ପରି ଏହି ଗ୍ରାମରେ ମଧ୍ୟ ଛୋଟ ଛୋଟ ପିଲାମାନେ ପଦଯାତ୍ରୀଙ୍କ ସହ ନିମ୍ନଲିଖିତ ଜୟଧ୍ୱନିମାନ ଦେଇ ବୁଲିଥିଲେ-

"ବୃକ୍ଷ ବିନା ବଞ୍ଚିବା ନାହିଁ,
ବୃକ୍ଷ ଆମର ଜୀବନ ଭାଇ ।
ପବନ, ମାଟି ଆଉ ପାଣି,
ବୃକ୍ଷଦେବତା ଦିଏ ଆଣି ।
ଖାଦ୍ୟ, ବସ୍ତ୍ର ଓ ବାସଗୃହ,
ବୃକ୍ଷଦେବତା ଅନୁଗ୍ରହ ।
ଜାଳେଣି ଔଷଧ ଓ ଛାୟା,
ପ୍ରକାଶ କରେ ବୃକ୍ଷ ଦୟା ।"

ତିନି ହଜାର ଲୋକସଂଖ୍ୟାବିଶିଷ୍ଟ ଏହି ଗ୍ରାମର ମାତ୍ର ୬୦ ଜଣ ସଭାରେ ଯୋଗଦେଇଥିଲେ । ଏହାଥିଲା ଗ୍ରାମର ଏକତା ଅଭାବର ଫଳ । ଏହି ଗ୍ରାମଟି ମଧ୍ୟ ରତ୍ନମାଳାର ପାଦଦେଶରେ ଅବସ୍ଥିତ । ପାହାଡ଼ର ପାଦଦେଶରେ ପ୍ରାୟ ୭୦୦ ଏକର ଶାଳ ଜଙ୍ଗଲ ରହିଥିଲା । ଏହି ଅଞ୍ଚଳଟି 'ମୃଗମଣି' ବା 'ମିରୀଗବଣି' ଭାବରେ ଲୋକମାନଙ୍କ ମୁଖରେ କଥିତ । ଏ ପର୍ଯ୍ୟନ୍ତ ଏ ବଣରେ  କୁଟୁରା, ବାର୍‌ହା ପ୍ରଭୃତି ବନ୍ୟଜନ୍ତୁ ଅଛନ୍ତି । ଗ୍ରାମ ଏକତାର ଅଭାବର ସୁଯୋଗ ନେଇ ପଡ଼ୋଶୀ ଗ୍ରାମବାସୀ ଓ ଏହି ଗ୍ରାମର କେତେକ ଲୋକ ଶାଳବଣକୁ ପ୍ରତିବର୍ଷ ନଷ୍ଟ କରି ଦେଉଛନ୍ତି । କିନ୍ତୁ ଏ ପର୍ଯ୍ୟନ୍ତ ମୂଳ ରହିଛି । ଜଗିଲେ ପୁଣି ପୁରୁଣା ଜଙ୍ଗଲ ହସିଉଠିବ । ଏହି ଗ୍ରାମବାସୀ, ପାଖଆଖର ଆଉ ୫ଟି ଗ୍ରାମ ମିଶି ଏକ ହାଇସ୍କୁଲ ଓ ଡାକ୍ତରଖାନା କରିଛନ୍ତି । ଲୋକଶକ୍ତିର ପ୍ରୟୋଗରେ କ'ଣ କରାଯାଇପାରେ, ଏହି ଅନୁଷ୍ଠାନଗୁଡ଼ିକ ତାହାର ଜ୍ୱଳନ୍ତ ଉଦାହରଣ । ଅନ୍ୟାନ୍ୟ ଗ୍ରାମ ପରି ଏହି ଗ୍ରାମରେ ଲୋକମାନେ ଜଳସେଚନତର ଅଭାବ ଦର୍ଶାଇଥିଲେ ।

ରାତ୍ର ଘ୯.୩୦ ସମୟରେ ପଦଯାତ୍ରୀ ଦଳ ମାଳିସାହି ଗ୍ରାମରେ ପହଞ୍ଚିଥିଲେ । ଗାଁରେ ପ୍ରାୟ ୮୦ଟି ଘର । ଏହି ଗ୍ରାମରେ ପ୍ରାୟ ୯୦ ଜଣ କୁଷ୍ଠ ରୋଗରେ ଆକ୍ରାନ୍ତ ବୋଲି ଶୁଣାଗଲା । ଗ୍ରାମବାସୀ ପଦଯାତ୍ରୀଦଳଙ୍କୁ ହାର୍ଦ୍ଦିକ ସମ୍ବର୍ଦ୍ଧନା ଦେଇ ଜଙ୍ଗଲ ରକ୍ଷା କାର୍ଯ୍ୟରେ ସହାୟତା କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ ।

ରାତ୍ର ଘ ୧ ୧.୩୦ ସମୟରେ ଗୋଡ଼ିପଡ଼ା ଗ୍ରାମରେ ପହଞ୍ଚିଥିଲେ । ଏହି ଗ୍ରାମବାସୀଙ୍କ ସଙ୍ଗେ ଖଡିଆ, ବେଗୁନିଆପାଟଣା ଓ ମହୁଲିଆ ଗ୍ରାମବାସୀ ସହଯୋଗ କରି ୭ ବର୍ଷ ହେଲା ୮୦୦ ଏକର ଶାଳ ଜଙ୍ଗଲ ରକ୍ଷା କରିଛନ୍ତି ।

୯ ତାରିଖ ସକାଳେ ଗୋପୀନାଥପୁର, ଦର୍ପନାରାୟଣପୁର ଓ ବାପୁଜୀପଲ୍ଲୀ ପଦଯାତ୍ରୀ ଦଳ ପରିକ୍ରମା କରି ପରିବେଶର ସୁରକ୍ଷା ସମ୍ପର୍କରେ ବୁଝାଇଥିଲେ । ପ୍ରତ୍ୟେକ ଗ୍ରାମରେ ବହୁ ଗ୍ରାମବାସୀ ଆୟୋଜିତ ସଭାରେ ଯୋଗଦାନ କରି ସକ୍ରିୟ ଅଂଶଗ୍ରହଣ କରିଥିଲେ । ଦର୍ପନାରାୟଣପୁର ଗ୍ରାମରେ ଜଣେ ଶିକ୍ଷିତ ଯୁବକ କହିଲେ "ଗାଁଲୋକେ ନଷ୍ଟ ହୋଇଗଲେଣି । ସେମାନେ ଆଉ ଭଲ ହୋଇପାରିବେ ନାହିଁ । ତେଣୁ ମୁଁ ସଭାକୁ ଯିବିନାହିଁ ।" ଗ୍ରାମ୍ୟଜୀବନର ମାନ ଉନ୍ନତି ପାଇଁ ଯେ ଶିକ୍ଷିତଲୋକଙ୍କର ନୈତିକ ଦାୟିତ୍ୱ ରହିଛି, ତାହା ଉକ୍ତ ଯୁବକ ଉପଲବ୍ଧି କରୁଥିବା ଭଳି ଜଣାପଡ଼ିଲା ନାହିଁ । ଦେଶରେ ବର୍ତ୍ତମାନ ପ୍ରଚଳିତ ଶିକ୍ଷାପଦ୍ଧତିରେ ଯୁବକମାନେ କିପରି ଶିକାର ହୋଇ ଆତ୍ମକୈନ୍ଦ୍ରିକ ହୋଇ ପଡୁଛନ୍ତି ଓ ସେମାନଙ୍କର ସାମାଜିକ ଚେତନାର ବିକାଶ ହେଉନାହିଁ, ଏହି ଯୁବକ ଥିଲେ ତା'ର ଏକ ଜ୍ୱଳନ୍ତ ନିଦର୍ଶନ । ଏହି ଗ୍ରାମରେ ଏକତା ନଥାଇ ୨ ବର୍ଷ ହେଲା ୫ ଏକର କୋଠ ଜମି ପଡ଼ିଆ ପଡ଼ିଥିବା କଥା ଜଣାଗଲା । ପ୍ରତିବର୍ଷ ୮ ହଜାର ଟଙ୍କା କ୍ଷତି ହେଉଛି । ଦର୍ପନାରାୟଣପୁର ଗ୍ରାମଟି ୧୯୫୦ ପରେ ଗଢ଼ିଉଠିଛି । ଏଠାରେ ହାଇସ୍କୁଲ, ଡାକ୍ତରଖାନା, ପଶୁଡାକ୍ତରଖାନା ଆଦି ସ୍ଥାପିତ ହୋଇଛି । ଏହିସବୁ ଅନୁଷ୍ଠାନର ଗଠନ ପଛରେ ସ୍ୱାଧୀନତା ସଂଗ୍ରାମୀ, ସର୍ବୋଦୟ କର୍ମୀ ସୁକୁର ବେହେରାଙ୍କର ପ୍ରେରଣା, ତ୍ୟାଗ, ଉଦ୍ୟମ ଓ ନିଷ୍ଠାପର ଶ୍ରମ ରହିଛି ।

ଅପରାହ୍ଣ ଓ ସନ୍ଧ୍ୟାରେ ପଦଯାତ୍ରୀ ଦଳ ଡେଙ୍ଗାଝରି, ଲୁଣିସାହି, ମର୍ଦ୍ଦକୋଟ ଓ କାକଳମା ଗ୍ରାମ ପରିଦର୍ଶନ କରିଥିଲେ । ଡେଙ୍ଗାଝରି ଗ୍ରାମଟି ଆଦିବାସୀ, ହରିଜନ ଅଧ୍ୟୁଷିତ । ଗ୍ରାମରେ ପ୍ରାୟ ୩୦ ଘର । ଗୋଟିଏ ନଳକୂଅ ଅଛି । ନଳକୂଅରୁ ପାଣି ନେବା ପାଇଁ ଆଦିବାସୀମାନେ ହରିଜନମାନଙ୍କୁ ବାଧା ଦେବାରୁ ବର୍ତ୍ତମାନ ଗ୍ରାମରେ ବିବାଦ ହୋଇ ନଳକୂଅଟିକୁ ଅକାମୀ କରି ଦିଆଯାଇଛି । ପଦଯାତ୍ରୀଦଳ ଗ୍ରାମବାସୀଙ୍କର ସଂକୀର୍ଣ୍ଣତା ଦେଖି ଦୁଃଖିତ ଓ ସ୍ତମ୍ଭୀଭୂତ ହୋଇ ଯାଇଥିଲେ ।

ଲୁଣିସାହି ଗ୍ରାମବାସୀ ବହୁସଂଖ୍ୟାରେ ସଭାରେ ଯୋଗଦେଇ ଜଙ୍ଗଲ ରକ୍ଷା ପାଇଁ ନିଜର ବ୍ୟାକୁଳତା ପ୍ରକାଶ କରିଥିଲେ । ପଡ଼ୋଶୀ ଗ୍ରାମବାସୀମାନେ ଜଙ୍ଗଲକୁ ନଷ୍ଟ କରୁଛନ୍ତି ବୋଲି ସେମାନେ ଅଭିଯୋଗ କଲେ । ପଦଯାତ୍ରୀ ଦଳ ତାଙ୍କୁ କହିଥିଲେ ଯେ ନିଜେ ଜଙ୍ଗଲ ରକ୍ଷା କରିବା ସଙ୍ଗେ ସଙ୍ଗେ ପଡ଼ୋଶୀ ଗ୍ରାମମାନଙ୍କୁ ଯାଇ ଏ

ସଂପର୍କରେ ବୁଝାଇବାକୁ ହେବ ଏବଂ ସେମାନଙ୍କର ସହଯୋଗ ଭିକ୍ଷା କରିବାକୁ ହେବ । ୫/୧୦ ଖଣ୍ଡ ଗ୍ରାମ ସଂଗଠିତ ହୋଇ ଉଦ୍ୟମ କଲେ ଜଙ୍ଗଲର କିଛି ଅଂଶ ନିଶ୍ଚୟ ରକ୍ଷା କରାଯାଇପାରିବ ବୋଲି ପଦଯାତ୍ରୀ ଦଳ ବୁଝାଇଥିଲେ ।

୧୦ ତାରିଖରେ ପଦଯାତ୍ରୀ ଦଳ ଖଡିଆ ଗ୍ରାମର ଶାଳବନରେ ସଭାକାର୍ଯ୍ୟ କରିଥିଲେ । ସେଠାରେ ପ୍ରାୟ ୨୦୦ ଲୋକ ଯୋଗଦେଇଥିଲେ । ସଭାପରେ ପଦଯାତ୍ରୀ ଦଳ ଓ ବିଭିନ୍ନ ଗ୍ରାମର ପ୍ରତିନିଧିବୃନ୍ଦ ୮୦୦ ଏକର ଶାଳଜଙ୍ଗଲ ପରିଦର୍ଶନ କରି ଆତ୍ମହରା ହୋଇଥିଲେ । ମୁଣ୍ଡଫଟା ଖରାରେ ୨ ଘଣ୍ଟା ବୁଲିଲା ପରେ ଭଲ ଅସ୍ରାଏ ବର୍ଷା ଚାଷୀର ମନରେ ନୂତନ ଆଶାର ସଂଚାର କରିଥିଲା । ମହୁଲିଆଠାରେ ଅପରାହ୍ନରେ ସଭା ହୋଇଥିଲା । ଖଡିଆ ଗ୍ରାମସଭାରେ ଲୋକମାନେ ଉଦ୍ୟୋକ୍ତାମାନଙ୍କୁ ଯେଉଁ ସବୁ ପ୍ରଶ୍ନ ପଚାରିଥିଲେ ସେଥିରୁ ନିମ୍ନଲିଖିତ ୩ଟି ପ୍ରଶ୍ନ ପ୍ରଣିଧାନଯୋଗ୍ୟ ।

ସେମାନଙ୍କର ପ୍ରଥମ ପ୍ରଶ୍ନ ଥିଲା, ଆମେ ଖଡିଆ, ମହୁଲିଆ, ବେଗୁନିଆପାଟଣା ଓ ଗୋଡ଼ିମଡ଼ା, ଏହି ୪ ଖଣ୍ଡ ଗାଁ, ଯେଉଁ ୮୦୦ ଏକର ଶାଳଜଙ୍ଗଲ ୭ ବର୍ଷ ହେଲା ରକ୍ଷା କରିଛୁ, ତାହା ସରକାର ନେଇଯିବେ ନାହିଁ ତ ? ଉଦ୍ୟୋକ୍ତାମାନଙ୍କ ପକ୍ଷରୁ ପ୍ରଶ୍ନ ଛଳରେ ତା'ର ଉତ୍ତର ଥିଲା-ଯେଉଁଠାରେ ଲୋକମାନେ ଜଙ୍ଗଲ ରକ୍ଷା କରିଛନ୍ତି, ସେଠାରେ ସରକାର କେବେ ଜଙ୍ଗଲ ନେଇ ଯାଇଛନ୍ତି କି ? ତା'ପରେ ଉଦ୍ୟୋକ୍ତାମାନେ ବୁଝାଇଥିଲେ- ଆମେ ଭାବିବା ଉଚିତ ନୁହେଁ ଯେ, ଜଙ୍ଗଲ ଆମକୁ କେବଳ କାଠ ଦିଏ, ଜଙ୍ଗଲ ଦ୍ୱାରା ବର୍ଷା ହୁଏ, ଭୂମିତଳେ ଥିବା ଜଳପତ୍ତନ ଉପରକୁ ଉଠେ, ମୃତ୍ତିକାକ୍ଷୟ ବନ୍ଦ ହୁଏ, ଗୃହପାଳିତ ପଶୁମାନେ ଖାଦ୍ୟ ପାଆନ୍ତି, ଫଳ, ଫୁଲ, ମୂଳ, ପତ୍ର ମିଳେ । ଶୁଖିଲା ପତ୍ର ଓ ଶୁଖିଲା ଡାଳ ଜାଳ ହୁଏ ।

ସେମାନଙ୍କର ଦ୍ୱିତୀୟ ପ୍ରଶ୍ନ ଥିଲା - "ଆମ ଜଙ୍ଗଲ ସୁରକ୍ଷା ନିମିତ୍ତ ସରକାର ଫରେଷ୍ଟ ଗାର୍ଡ଼ ଦେବା ପାଇଁ ବ୍ୟବସ୍ଥା କରିପାରିବେକି ?" ଉଦ୍ୟୋକ୍ତାମାନେ ପ୍ରତ୍ୟୁତ୍ତର ଦେଇଥିଲେ ଯେ ଫରେଷ୍ଟ ଗାର୍ଡ଼ ଦ୍ୱାରା ଯଦି ଜଙ୍ଗଲ ସୁରକ୍ଷା କରାଯାଇପାରୁଥାନ୍ତା, ତା'ହେଲେ ଆଜି ଦେଶର ବନ୍ୟ ସମ୍ପଦର ବିପୁଳ କ୍ଷତି କାହିଁକି ଘଟୁଥାଆନ୍ତା ? କେବଳ ଯେଉଁଠାରେ ଲୋକମାନେ ଜଙ୍ଗଲ ରକ୍ଷା କରିଛନ୍ତି, ସେହିଠାରେ ଜଙ୍ଗଲ ରହିଛି । କେବଳ ସରକାର ଜଙ୍ଗଲ ରକ୍ଷା କରିପାରିବେ ନାହିଁ । ଏଥିପାଇଁ ଜନସହଯୋଗ ଅପରିହାର୍ଯ୍ୟ ।

ତୃତୀୟ ପ୍ରଶ୍ନ ଥିଲା, ଯଦି ନିଜ ଗାଁ ବା ଅନ୍ୟ କୌଣସି ଗ୍ରାମର ଲୋକେ ସଂରକ୍ଷିତ ଜଙ୍ଗଲ ନଷ୍ଟ କରନ୍ତି, ସେମାନଙ୍କ ବିରୁଦ୍ଧରେ କେସ୍ କରିବୁ କି ?

ଉଦ୍ୟୋକ୍ତାମାନଙ୍କର ଉତ୍ତର ଥିଲା, "କେସ୍ ହେଲେ ତିକ୍ତତା ବଢ଼ିବ ଓ ନିଆଁ ଜଳିବ । ଗ୍ରାମବାସୀଙ୍କ ହାତରୁ ଜିନିଷଟି ବାହାରକୁ ଚାଲିଯିବ । କଥା ଅଣାୟତ୍ତ ହୋଇଯିବ । ଗାଁଲୋକେ ନିଜ ରକ୍ତକୁ ପାଣି ଫଟାଇ, ମୁଣ୍ଡ ଝାଳ ତୁଣ୍ଡରେ ମାରି ଯେଉଁ କଷ୍ଟଲବ୍ଧ ଅର୍ଥ ରୋଜଗାର କରନ୍ତି, ତାହା ବାହାରକୁ ଚାଲିଯିବ । ଥରେ କେସ୍ ହେଲେ ହିଂସା ଓ ବିଦ୍ୱେଷରେ ଗ୍ରାମ୍ୟ ଜୀବନ ବିଷାକ୍ତ ହୋଇଯିବ । ଯେଉଁମାନେ ଦଣ୍ଡିତ ହେବେ, ସେମାନେ ପ୍ରତିହିଂସା ପରାୟଣ ହେବେ । ପରିଶେଷରେ ଜଙ୍ଗଲ ସମ୍ପଦ ସମୂଳେ ନଷ୍ଟ ହୋଇଯିବ ।" ଉଦ୍ୟୋକ୍ତାମାନେ ବୁଝାଇଥିଲେ ଯେ, ଦଣ୍ଡଭୟଦ୍ୱାରା ଜଙ୍ଗଲ ରକ୍ଷା କରାଯାଇପାରିବ ନାହିଁ । ହୃଦୟର ପରିବର୍ତ୍ତନ ଦ୍ୱାରା ହିଁ ତାହା ସମ୍ଭବ । କୋର୍ଟ କଚେରୀକୁ ନ ଯାଇ ଗାଁର ବିବାଦ ଗାଁରେ ତୁଟାଇବାକୁ 'ବୃକ୍ଷ ଓ ଜୀବର ବନ୍ଧୁ ପରିଷଦ' ସମସ୍ତଙ୍କୁ ନିବେଦନ କରିଥିଲା । ଉଦ୍ୟୋକ୍ତାମାନେ କହିଥିଲେ ଯେ, ଗ୍ରାମମାନଙ୍କରେ ଏକତା ସ୍ଥାପିତ ନ ହେଲେ, ଜନସଂଖ୍ୟାର ନିୟନ୍ତ୍ରଣ ନ ହେଲେ, ଗ୍ରାମବାସୀମାନେ ସରକାରଙ୍କ ଉପରେ ବିଶେଷ ଭାବେ ନିର୍ଭର ନ କରି ସ୍ୱକୀୟ ଉଦ୍ୟମରେ ପ୍ରଗତି ପାଇଁ ପଦକ୍ଷେପ ନ ନେଲେ ଜଙ୍ଗଲ ସଂପଦ ତଥା ପରିବେଶର ଗୁଣାତ୍ମକ ଉନ୍ନତି ସାଧିତ ହୋଇପାରିବ ନାହିଁ ।

ପରିଶେଷରେ 'ବୃକ୍ଷ ଓ ଜୀବର ବନ୍ଧୁ ପରିଷଦ' ନିମ୍ନଲିଖିତ ବାର୍ତ୍ତା ଦେଇଥିଲା-

'ଅରଣ୍ୟରୁ ବର୍ଷା
ବର୍ଷାରୁ ଅନ୍ନ
ଅନ୍ନରୁ ଜୀବନ
ଜୀବନରୁ ସଭ୍ୟତାର ବିକାଶ ।'

**ଧରତ୍ରୀ ତା ୪.୦୯.୮୪ରେ ପ୍ରକାଶିତ**

# ଗ୍ରାମେ ଗ୍ରାମେ ପରିବେଶ

-ନାରାୟଣ ହଜାରୀ
ଶରତ କୁମାର ଦୋରା

ପୁରୀ ଜିଲ୍ଲାର ନୟାଗଡ଼ ଓ ଓଡ଼ଗାଁ ବ୍ଲକ୍‌ର ୨୨ଖଣ୍ଡ ଗ୍ରାମକୁ ନେଇ ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଏକ ନୂତନ ବାର୍ତ୍ତାର ପ୍ରଚାର କରିବା ସଙ୍ଗେ ସଙ୍ଗେ ଗ୍ରାମମାନଙ୍କରେ ଏକ ନୂତନ ଜୀବନ ସଂଚାର କରିଛି । ଏହି ପରିଷଦର ଶତାଧିକ ସଭ୍ୟ ୧୯୮୪ ଫେବୃଆରୀ ମାସରେ ୩ ଦିନ ଧରି ୩୨ ଖଣ୍ଡ ଗ୍ରାମରେ ପଦଯାତ୍ରା କରିଥିଲେ । ୧୯୮୪ ଜୁନ୍ ମାସରେ ତିନି ଦିନ ଧରି ରଣପୁର ଓ ଓଡ଼ଗାଁ ବ୍ଲକ୍‌ର ୧୫ ଖଣ୍ଡ ଗ୍ରାମରେ ପଦଯାତ୍ରା କରିଥିଲେ ।

ପରିଷଦର ଆନୁକୂଲ୍ୟରେ ନୟାଗଡ଼ ବ୍ଲକ୍‌ର ମାଳତୀ-ବୁଢ଼ଗିରି ପାହାଡ଼ର ଚାରିପଟେ ଥିବା ୧୧ ଖଣ୍ଡ ଗ୍ରାମରେ ଭାଗବତ ପାରାୟଣ କରାଯିବା ସଙ୍ଗେ ସଙ୍ଗେ ପରିବେଶର ସୁରକ୍ଷା ପାଇଁ ସଚେତନତା ସୃଷ୍ଟି କରିବାକୁ ଉଦ୍ୟମ ହୋଇଥିଲା ।

ଉତ୍କଳ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ନାରାୟଣ ହଜାରୀ ଦିନରେ ଗୋଟିଏ ବଖତ୍ ଖାଇ ପାଟୁଳି ସାହି, ସାନଗୋରଡ଼ା, ବଡ଼ଗୋରଡ଼ା, ଆଙ୍ଗିସିଙ୍ଗି ପୁଆଣିଆଁ, ଗମେଇ, ବିଞ୍ଝଗିରି, କାଳିକାପ୍ରସାଦ, ମାନପୁର, ନାଗମୁଣ୍ଡଳୀ ଓ କେଶରପୁର ଆଦି ୧୧ଟି ଗ୍ରାମରେ ପୂଣ୍ୟଶ୍ଳୋକ ଜଗନ୍ନାଥ ଦାସଙ୍କ କୃତ ଭାଗବତର ପ୍ରଥମ ସ୍କନ୍ଧରୁ ଦ୍ୱାଦଶ ସ୍କନ୍ଧ ପର୍ଯ୍ୟନ୍ତ ପାରାୟଣ କରିଥିଲେ । ପାଟୁଳି ସାହି ଓ ବଡ଼ଗୋରଡ଼ା ଗ୍ରାମରେ ଦେଖାଯାଇଥିଲା ଯେ ଭାଗବତ ଗୃହରେ ଭାଗବତ ଆଉ ପୂଜା ହେଉନାହାନ୍ତି ଓ ଭାଗବତ ବୋଲାଯାଉନାହିଁ । କିନ୍ତୁ ଅନ୍ୟ ୯ଟି ଗ୍ରାମରେ ଭାଗବତର ପରମ୍ପରା କେତେକାଂଶରେ ସୁରକ୍ଷିତ ରହିଛି । କିନ୍ତୁ ଲକ୍ଷ୍ୟ କରାଯାଇଥିଲା ଯେ ପ୍ରାୟ କୌଣସି ଗ୍ରାମରେ ଭାଗବତ ପାଠ ହେବା ସମୟରେ କେହି ଶ୍ରୋତା ଉପସ୍ଥିତ ରହନ୍ତି ନାହିଁ ।

ପାଟୁଳି ସାହି ଗ୍ରାମରେ ନିକଟ ଅତୀତରେ କୋର୍ଟରେ କେସ୍ କରି ଗ୍ରାମବାସୀ ପ୍ରାୟ ୨ ଲକ୍ଷ ଟଙ୍କା ଖର୍ଚ୍ଚ କରି ସର୍ବସ୍ୱାନ୍ତ ହୋଇଛନ୍ତି । ରଣପୁର ଶରଣକୁଳ ରାସ୍ତା

ଏହି ଗ୍ରାମବାଟେ ଯାଇଛି ଓ ଏହାର ଦୈର୍ଘ୍ୟ ୩୦ କି.ମି. । ଏହା ଏକ ପୂର୍ତ୍ତବିଭାଗ ରାସ୍ତା ହେଲେ ମଧ୍ୟ ସ୍ୱାଧୀନତା ପରଠାରୁ ଏହି ରାସ୍ତାର ପ୍ରାୟ କୌଣସି ଉନ୍ନତି ହୋଇନଥିଲା । କିନ୍ତୁ ଆନନ୍ଦର କଥା ଯେ ଗତ ୨ ବର୍ଷ ମଧ୍ୟରେ ଓଡ଼ିଶା ସରକାରଙ୍କର ନିର୍ମାଣ ବିଭାଗର ସେକ୍ରେଟାରୀ ଦେଶପ୍ରାଣ ଇଂଜିନିୟର ଶ୍ରୀଯୁକ୍ତ ପ୍ରହ୍ଲାଦ ପଟ୍ଟନାୟକଙ୍କର ସହଯୋଗରୁ ଏହି ରାସ୍ତାର ଉନ୍ନତି ପାଇଁ ୪୭ ଲକ୍ଷ ଟଙ୍କା ମଞ୍ଜୁର ହୋଇ ଖର୍ଚ୍ଚ ହୋଇଛି । ଏହା ଏହି ଅଞ୍ଚଳର ଆବଶ୍ୟକତା ପୂରଣ କରିଛି । ଯାତାୟାତର ସୁବିଧା ନଥିବା ଯୋଗୁଁ ଏହି ଅଞ୍ଚଳ ଆଜକୁ ୩୭ ବର୍ଷ ହେଲା ଘୋର ଅବହେଳା ମଧ୍ୟରେ ବୁଡ଼ିରହିଥିଲା । ପାର୍ଶ୍ୱବର୍ତ୍ତୀ ବଡ଼ଗୋରଡ଼ା ଗ୍ରାମରେ ଜଣେ ଶିକ୍ଷକ ରାସ୍ତାର ଉପରୋକ୍ତ ଉନ୍ନତିରେ ଆନନ୍ଦିତ ନ ହୋଇ ଥରେ "ବୃକ୍ଷ ଓ ଜୀବର ବଂଧୁ ପରିଷଦ'ର ଉଦ୍ୟୋକ୍ତାମାନଙ୍କୁ ପ୍ରଶ୍ନ କରିଥିଲେ ଯେ, ରାସ୍ତାର ଉନ୍ନତି ହେବା ଦ୍ୱାରା ଆମେ ଗ୍ରାମବାସୀ କ'ଣ ପାଇଲୁ ? ଭାରତର ଅନେକ ଗ୍ରାମରେ କେତେକ ଲୋକ ଭାବନ୍ତି ଯେ, ନିଜ ଗାଁର ଉନ୍ନତି ହିଁ ଦେଶର ଉନ୍ନତି । ଅଞ୍ଚଳ ବା ଦେଶର ପ୍ରଗତି ଯେ ସେମାନଙ୍କର ପ୍ରଗତି ଏ କଥା ସେମାନେ ବୁଝିପାରନ୍ତି ନାହିଁ । ଏହି ସଂକୀର୍ଣ୍ଣ ଦୃଷ୍ଟିକୋଣର ସମ୍ମୁଖୀନ ହୋଇ ଉଦ୍ୟୋକ୍ତାମାନେ ବ୍ୟଥିତ ହୋଇଥିଲେ ।

ଆଙ୍ଗିସିଙ୍ଗି ଗ୍ରାମରେ ଭାଗବତ ପାରାୟଣର ପ୍ରଭାବ ପ୍ରାଣସ୍ପର୍ଶୀ ଓ ପ୍ରେରଣାଦାୟକ ହୋଇଥିଲା । ପୁଆଣିଆଁ ଗ୍ରାମରେ ଇଲେକ୍‌ଟ୍ରିକ୍ ନ ଥିବାରୁ ଗ୍ରାମବାସୀମାନଙ୍କର ଅନେକ ଦିନରୁ ଅବଶୋଷ ରହିଥିଲା । କିନ୍ତୁ ଯେତେବେଳେ ଇଲେକ୍‌ଟ୍ରିକ୍ ଲାଇନ୍ ଟଣାହେବା ପାଇଁ ଖମ୍ବ ଅଣାଗଲା, ସେତେବେଳେ ଏହି ଗ୍ରାମର କେତେକ ନେତୃସ୍ଥାନୀୟ ବ୍ୟକ୍ତି ଜିଦ୍ କଲେ ଯେ, ତାଙ୍କ ଗ୍ରାମ ସରହଦରେ ଇଲେକ୍‌ଟ୍ରିକ୍ ସବଷ୍ଟେସନ କରାଇବାକୁ ପଡ଼ିବ । ଏତଦ୍ୱାରା ପଡ଼ୋଶୀ ଗ୍ରାମ ଗମ୍ଭାରୀଡିହ ସଙ୍ଗରେ ବିବାଦ ହେଲା । ପରିଶେଷରେ ଇଲେକ୍‌ଟ୍ରିକ୍ ପାଇଁ ଆସିଥିବା ସରଞ୍ଜାମସବୁ ଫେରିଗଲା । ଓଡ଼ିଶାର କେନ୍ଦ୍ରାଞ୍ଚଳ ରିଭେନ୍ୟୁ ଡିଭିଜନାଲ କମିଶନର ମହାନୁଭବ ଶ୍ରୀଯୁକ୍ତ ଅମୂଲ୍ୟରନ୍ ନନ୍ଦଙ୍କ ସହଯୋଗରେ ଏହି ଗ୍ରାମର ଏକ ମୌଳିକ ଆବଶ୍ୟକତା ପୂରଣ ହେବାକୁ ଯାଉଥିଲା, କିନ୍ତୁ କେତେକ ଗାଁ ମୁଖିଆଙ୍କର ଅଦୂରଦର୍ଶୀ ଆତ୍ମଘାତୀ ନୀତି ଯୋଗୁଁ ଗ୍ରାମବାସୀଙ୍କର ଆଶା ଧୂଳିସାତ୍ ହେଲା । ଏହି ଦୁଃଖଦାୟକ ଘଟଣା ଯୋଗୁଁ ବୃକ୍ଷ ଓ ଜୀବର ବଂଧୁ ପରିଷଦର ଗ୍ରାମଯାତ୍ରା କରୁଥିବା ପଦଯାତ୍ରୀମାନେ ମର୍ମାହତ ହୋଇଥିଲେ ।

ଗମ୍ଭାରୀଡିହ ଗ୍ରାମରେ ଲୋକମାନେ ପୋଷ୍ଟଅଫିସ ଓ ହାଇସ୍କୁଲର ଆବଶ୍ୟକତା ଅନୁଭବ କରୁଛନ୍ତି । କିନ୍ତୁ ଏ ଦିଗରେ ଉପଯୁକ୍ତ ନେତୃତ୍ୱ ଅଭାବ ଯୋଗୁଁ ଗ୍ରାମବାସୀ

କିଛି କରିବା ପାଇଁ ପ୍ରୟାସୀ ହୋଇପାରୁ ନାହାନ୍ତି । ଗ୍ରାମରେ ଅନେକ ଶିକ୍ଷିତ ଓ ପଦସ୍ଥ କର୍ମଚାରୀ ଅଛନ୍ତି, କିନ୍ତୁ ସାରାଦେଶର ଶିକ୍ଷିତ ଲୋକଙ୍କ ପରି ଏମାନେ ଆତ୍ମକୈନ୍ଦ୍ରିକ ହୋଇପଡ଼ିଛନ୍ତି । ବର୍ତ୍ତମାନର ଶିକ୍ଷାପଦ୍ଧତି ସାମାଜିକ ଚେତନାର ବିକାଶ ଘଟାଇବାରେ ସହାୟକ ହୋଇପାରୁନାହିଁ । ଆଧୁନିକ ଶିକ୍ଷାପଦ୍ଧତି ଈଶ୍ୱର ବିଶ୍ୱାସର ସଂପୂର୍ଣ୍ଣ ରୂପେ ମୂଳୋତ୍ପାଟନ କରୁଛି । ଯଦି ବ୍ୟକ୍ତି ଭାବିବ ଯେ, ଈଶ୍ୱର ଅଛନ୍ତି ଏବଂ ପ୍ରତ୍ୟେକଙ୍କ ମଧ୍ୟରେ ସେ ବିଦ୍ୟମାନ, ତା'ହେଲେ ସେ ସମସ୍ତଙ୍କୁ ନିଜର ଭାଇଭଉଣୀ ସଦୃଶ ବିଚାର କରିବ । ଯାହା ଆୟ କରିବ, ତା'ର ମୌଳିକ ଆବଶ୍ୟକତାର ପୂରଣ ପରେ ଉଦ୍‌ବୃତ୍ତ ଧନ ସମାଜର ଦୁଃଖୀ, ଦରିଦ୍ର, ଅବହେଳିତଙ୍କ ମଙ୍ଗଳ ପାଇଁ ବିନିଯୋଗ କରିବ । ଭାଗବତର ନବମ ସ୍କନ୍ଧ (ଏକବିଂଶ ଅଧ୍ୟାୟ, ପୃ.୧୦୭-୧୦୮)ରେ କହନ୍ତି:

"ପ୍ରାଣୀର ଦୁଃଖରେ ଦୁଃଖିତ
ସର୍ବଦା ହେଉ ମୋର ଚିତ୍ତ ।
ହେ ! ପ୍ରଭୁ ମୋତେ ଦୟାକର
ମୁଁ କରେ ଲୋକ ଉପକାର ।"

ଏହି ବିଶ୍ୱାସ ପ୍ରଚଳିତ ଶିକ୍ଷା ସୃଷ୍ଟି କରିପାରୁନାହିଁ । ଏହି ପରିସ୍ଥିତିରେ ଦରିଦ୍ର, ଅଜ୍ଞ, ଅସହାୟ ଗ୍ରାମବାସୀମାନଙ୍କୁ ନେତୃତ୍ୱ ଦେବ କିଏ ? ଜନସାଧାରଣଙ୍କ ସମ୍ବଳ, ଶକ୍ତି ଓ ସାହସ ପାଇବେ କେଉଁଠୁ ? ଶିକ୍ଷିତ ଲୋକମାନେ ଦେଶପ୍ରାଣ ହେଲେ ସମାଜର ଉପକାର ପାଇଁ ନିଜର ଶକ୍ତି, ସମୟ ଓ ସମ୍ବଳ ବିନିଯୋଗ କଲେ ସେହି ଆଦର୍ଶ ଜନମାନସକୁ ପ୍ରଭାବିତ କରିବ । ଏହି ପରିପ୍ରେକ୍ଷୀରେ ଜଗନ୍ନାଥ ଦାସଙ୍କର (୬ଷ୍ଠ ସ୍କନ୍ଧ ୨ୟ ଅଧ୍ୟାୟ, ପୃ.୮) ନିମ୍ନଲିଖିତ ବାଣୀ ପ୍ରଣିଧାନଯୋଗ୍ୟ-

"ମହତେ ଯାହା ଆଚରିବେ
ଇତରେ ତାହା ହିଁ କରିବେ ।"

ଆଜିର ଶିକ୍ଷା କୌଣସି କଥା ନ ଦେଖିଲେ ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହେଁ । କିନ୍ତୁ ବେଦବ୍ୟାସ ଭାଗବତରେ କୁହନ୍ତି-କାଠ ମଧ୍ୟରେଥିବା ଅଗ୍ନିକୁ ଆମେ ଦେଖି ନ ପାରିଲେ ମଧ୍ୟ, ଦେହ ଭିତରେ ଚାଲୁଥିବା ପବନକୁ ଆମେ ନ ଦେଖିପାରିଲେ ମଧ୍ୟ, ଅଗ୍ନି ଓ ପବନ ଅଛି ବୋଲି ଆମେ ବିଶ୍ୱାସ କରୁ । ଈଶ୍ୱର ଆମକୁ ଦୃଶ୍ୟ ନ ହେଲେ ମଧ୍ୟ ସେ ସର୍ବଭୂତରେ ପରିପୂର୍ଣ୍ଣ । ଜଗନ୍ନାଥ ଦାସ (୩ୟ ସ୍କନ୍ଧ, ଷଡ଼ବିଂଶ ଅଧ୍ୟାୟରେ, ପୃ.୧୧୯)ରେ କହନ୍ତି-

"ସେ ସର୍ବଭୂତେ ପରିପୂର୍ଣ୍ଣ
ଜଳରେ ଚନ୍ଦ୍ରମା ଯେସନ ।"

ପ୍ରାୟ ୧୨୦୦ ଲୋକଥିବା ଗମେଇ ଗ୍ରାମରେ କୋର୍ଟରେ କେସ୍ ଲାଗିଛି । ଗ୍ରାମର କୋଠରେ ଥିବା ଭାଗବତ ଜମି ୫ ଏକର ବିକ୍ରି ସରିଲାଣି । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଏହି ଗ୍ରାମର ୧ ଏକର ଜମିର ମୂଲ୍ୟ ପ୍ରାୟ ୪୫ ହଜାର ଟଙ୍କା । ଏହି ଗ୍ରାମରେ ଏକତା ନାହିଁ ଏବଂ ଦୁଇ ସାହି ଦୁଇଟି ଗ୍ରାମରେ ପରିଣତ ହୋଇ ଗ୍ରାମବାସୀଙ୍କର ଘୋର କ୍ଷତି କରୁଛି । ଗୋଟିଏ ସାହିର ଜଣେ ଅବିବାହିତା ଯୁବତୀ ଅନ୍ୟ ସାହିର ଜଣେ ଅବିବାହିତ ଯୁବକଙ୍କର ପ୍ରେମପାଶରେ ପଡ଼ି ଏକ ସନ୍ତାନ ଦୁଇ ବର୍ଷ ହେଲା ଜନ୍ମ ଦେଇଛି । ଦୁଇ ସାହି ମଧ୍ୟରେ ଥିବା ତିକ୍ତତା ପରିବେଶକୁ ଏପରି ବିଷାକ୍ତ କରିଛି ଯେ, ଯୁବକ ତା'ର ପ୍ରଣୟ ସ୍ୱୀକାର କରୁନାହିଁ । ଯୁବତୀ ଓ ତା'ର ପୁଅଟି ପରିତ୍ୟକ୍ତ ଓ ଲାଞ୍ଛିତ ହୋଇ ଘୋର ଦୁଃଖରେ କାଳାତିପାତ କରୁଛନ୍ତି । ଅଞ୍ଚଳର ହୃଦୟବାନ ଓ ଚିନ୍ତାଶୀଳ ଲୋକମାନେ ଯୁବତୀର ଆତ୍ମହତ୍ୟାର ଭୟ ସବୁବେଳେ ଦେଖୁଛନ୍ତି । ଗୋଟିଏ ନିରୀହ ଶିଶୁ, ଏକ ଅସହାୟା ନାରୀ, ଏକ ଅବ୍ୟବସ୍ଥିତ ଚିତ୍ତ ଯୁବକର ଭାଗ୍ୟକୁ ନେଇ ଗ୍ରାମବାସୀ ଖେଳ ଖେଳୁଛନ୍ତି । ଯୁବତୀର ପ୍ରଚଳିତ ଆଇନ ଓ ପୋଲିସ ବ୍ୟବସ୍ଥା ଉପରେ ବିଶ୍ୱାସ ନାହିଁ । ଥରେ କେସ୍ କୋର୍ଟ କଚେରୀକୁ ଗଲେ ପରିଣତି ଯେ କ'ଣ ହେବ, କିଏ କହିପାରିବ ? ଏହି ଗ୍ରାମର ସବୁଠାରୁ ଧନୀ ବ୍ୟକ୍ତି ଅନ୍ୟ ଜଣେ ଲୋକଙ୍କୁ ତାଙ୍କର ବାଛୁରୀକୁ ଭାଗ ଦେଇଥିଲେ । ଏହି ଦୁଇଜଣ ବିବଦମାନ ଦୁଇ ସାହିର । କିଛି ବର୍ଷ ପରେ ବାଛୁରୀର ମାଲିକ ଯେତେବେଳେ ବାଛୁରୀ ମାଗିଲେ, ବାଛୁରୀ ଭାଗ ନେଇଥିବା ବ୍ୟକ୍ତି ତାହା ଦେବାକୁ ମନାକଲେ । ମାଲିକ ନିକଟସ୍ଥ ପୋଲିସ ଷ୍ଟେସନରେ ଅଭିଯୋଗ କଲେ । ବହୁ ଅନୁରୋଧ ପରେ ଓ ୪୦୦ ଟଙ୍କା ଉତ୍କୋଚ ଦେଲା ପରେ ପୋଲିସ ଗ୍ରାମକୁ ଆସି ଭାଗ ଧରିଥିବା ବ୍ୟକ୍ତିଙ୍କୁ ଥାନାକୁ ନେଇଗଲେ । ଥାନାରେ ସେ ୯୦୦ ଟଙ୍କା ମାଲିକଙ୍କୁ ଦେଲେ ଓ କିଛି ଉତ୍କୋଚ ମଧ୍ୟ ପୋଲିସକୁ ଦେଲେ ବୋଲି ଜଣାଗଲା ।

ଗ୍ରାମବାସୀଙ୍କର କଷ୍ଟସାଧିତ ଉପାର୍ଜିତ ଧନ ବାହାରକୁ ଚାଲିଯାଉଛି । ଗ୍ରାମର ଲୋକେ ନିଜର ଗ୍ରାମବାସୀ ଭାଇଙ୍କର ହାତଧରି ବିବାଦ ତୁଟାଇବେ ନାହିଁ, କିନ୍ତୁ କୋର୍ଟକଚେରୀର ଅମଲାଙ୍କ ଠାରୁ ବହୁ ନିର୍ଯାତନା ଓ ଲାଞ୍ଛନା ଭୋଗକରିବେ । ଗ୍ରାମମାନଙ୍କରୁ ହଜାର ହଜାର ଟଙ୍କା ଯାଇ ସହରର ଶ୍ରୀବୃଦ୍ଧି ହେଉଛି ଏବଂ ଗ୍ରାମଗୁଡ଼ିକ ଶ୍ରୀହୀନ ହେଉଛନ୍ତି ।

ଏହି ଗ୍ରାମରେ ଦୁଇଟି ନାଚଦଳ ରହିଛି । ପ୍ରତିବର୍ଷ ଦୁଇ ସାହିରେ ଅନେକ ଟଙ୍କା ଖର୍ଚ୍ଚ କରି ଦୁଇଟି ନାଚ ଓ ଦୁଇଟି ଯଜ୍ଞ ଅନୁଷ୍ଠିତ ହୁଏ । ଗ୍ରାମର ଉନ୍ନତିମୂଳକ କାମ ପାଇଁ ୫ ଟଙ୍କା ଦେବାକୁ ନାରାଜ; କିନ୍ତୁ ଗ୍ରାମ୍ୟ ବିବାଦରେ ଓ ଭାଇ ବିରୁଦ୍ଧରେ ଦାଉ ସାଧିବାରେ ୫ ହଜାର ଟଙ୍କା ସାରିବାକୁ ପ୍ରସ୍ତୁତ । ବୃକ୍ଷ ଓ ଜୀବର ବନ୍ଧୁ ପରିଷଦ ସବୁବେଳେ କହିଛନ୍ତି-

"ବିବାଦ ଗାଁରେ ତୁଟାଅ
କୋର୍ଟ କଚେରୀକୁ ନ ଯାଅ ।"

ଏହି ଗ୍ରାମର ଜଣେ ବ୍ୟକ୍ତି, ଯେ କି ନିଜର ପୁତ୍ରର ମୃତ୍ୟୁ ପାଇଁ ନିଜକୁ ଦାୟୀ କରନ୍ତି, ସେ ଭାଗବତ ଅତି ତନ୍ମୟ ହୋଇ ଶୁଣୁଥିଲେ ଓ ଭାଗବତ ପାଠବେଳେ ଅଶ୍ରୁବର୍ଷଣ କରୁଥିଲେ ।

ଧରିତ୍ରୀ, ତା ୯.୯.୮୪ ରିଖରେ ପ୍ରକାଶିତ

# ଗ୍ରାମେ ଗ୍ରାମେ ପରିବେଶ

-ନାରାୟଣ ହଜାରୀ
ଶରତ କୁମାର ଦୋରା

ବୃକ୍ଷ ଓ ଜୀବର ବନ୍ଧୁ ପରିଷଦର ସଭ୍ୟବୃନ୍ଦ ଜୁନ୍ ୧୨ ତାରିଖରୁ ୨୧ ତାରିଖ ପର୍ଯ୍ୟନ୍ତ ୧୦ ଦିନଧରି ମାଳତୀ-ବୁଦ୍ଧଗିରି ପାହାଡ଼ ଚାରିପଟେ ଥିବା ଗ୍ରାମରେ ପଦଯାତ୍ରା କରିଥଲେ । ଲେଖକ ଉକ୍ତ ଗ୍ରାମମାନଙ୍କରେ ପରିଷଦ ପକ୍ଷରୁ ଭାଗବତ ପାରାୟଣ କରିଥିଲା । ସେ ପାଟୁଳି ସାହି, ସାନଗୋରଡ଼ା, ବଡ଼ଗୋରଡ଼ା, ଆର୍ଙ୍ଗିସିଙ୍ଗି, ପୁଆଣିଆଁ ଓ ଗମେଇ ଗ୍ରାମରେ ପାରାୟଣ ସାରି ବିଞ୍ଚଗିରି ଗ୍ରାମକୁ ଆସିଥିଲା । ଏହି ଗ୍ରାମରେ ମାତ୍ର ୨୮ ଘର ବାସକରନ୍ତି । କିନ୍ତୁ ଏମାନଙ୍କ ସାହସ ଅତୁଳନୀୟ । ପ୍ରାୟ ଦେଢ଼ ବର୍ଷ ତଳେ ନିକଟସ୍ଥ ଶୁଳିଆ ନଦୀରେ ଶଙ୍କ କରିବାକୁ କଣ୍ଟ୍ରାକ୍ଟର ତା'ର ଟ୍ରକ୍ ଓ ଲୋକମାନଙ୍କୁ ନେଇ ଏହି ଗ୍ରାମର ପାହାଡ଼ରୁ ପଥର ଭାଙ୍ଗିବାକୁ ଆସିଥିଲେ । ସେତେବେଳେ ଏହି ଗ୍ରାମର ସମସ୍ତ ଗ୍ରାମବାସୀ ଦୃଢ଼ ଭାବରେ କହିଥିଲେ ଯେ, ପାହାଡ଼ର ପଥର ମଧ୍ୟ ପରିବେଶର ଏକ ଅପରିହାର୍ଯ୍ୟ ଅଙ୍ଗ ଓ ପଥର ଭାଙ୍ଗିବାକୁ ସେମାନେ ସୁଯୋଗ ଦେଇନଥିଲେ । ଏହି ଗ୍ରାମଟିର ଏକତା ଦେଖି କଣ୍ଟ୍ରାକ୍ଟର ହତବାକ୍ ହୋଇଥିଲା ଏବଂ ନତଶିର ହୋଇ ସେଠାରୁ ଚାଲିଯାଇଥିଲା । ଏହି ଗ୍ରାମରେ ୧୯୮୪ ମସିହାରୁ ଲୋକଙ୍କ ଉଦ୍ୟମରେ ଓ ସକ୍ରିୟ ସହଯୋଗରେ ଏକ ପ୍ରାଥମିକ ସ୍କୁଲଗୃହ ନିର୍ମିତ ହୋଇଛି । ଲୋକମାନେ ସରକାରଙ୍କର ସ୍ୱୀକୃତି ଓ ଶିକ୍ଷକ ନିଯୁକ୍ତିକୁ ଉଦ୍‌ବେଗର ସହ ପ୍ରତୀକ୍ଷା କରି ରହିଛନ୍ତି । ଶିକ୍ଷା ପ୍ରତି ଗ୍ରାମବାସୀଙ୍କର ଆଗ୍ରହ ଆଖିରେ ନ ଦେଖିଲେ କେହି ବିଶ୍ୱାସ କରିପାରିବେ ନାହିଁ ।

କାଳିକାପ୍ରସାଦ ଗ୍ରାମରେ ପଦଯାତ୍ରୀମାନେ, ଦରିଦ୍ର କିନ୍ତୁ ନୀରବ ଜନସେବୀ ଶଙ୍କର ଭଟ୍ଟଙ୍କ ସହ ସାକ୍ଷାତ କରି ଗଭୀର ଆନନ୍ଦଲାଭ କରିଥିଲେ ଓ ତାଙ୍କର ଦେଶପ୍ରାଣତା ଦ୍ୱାରା ଉଦ୍‌ବୁଦ୍ଧ ହୋଇଥିଲେ ।

ମାନପୁର ଗ୍ରାମର ଶ୍ରୀଯୁକ୍ତ ଯୋଗୀନାଥ ସାହୁଙ୍କ ସାଙ୍ଗରେ ସାକ୍ଷାତ ହୋଇଥିଲା । ନାଗମୁଣ୍ଡଳୀ ଗ୍ରାମର ଜଣେ ଗ୍ରାମ ଚଳାଉଥିବା ବ୍ୟକ୍ତିଙ୍କ ବିରୁଦ୍ଧରେ କେତେକ ଲୋକ ଅଭିଯୋଗ କରିଥିଲେ । ସେ ଗୋଠେ ଛେଳି ରଖି ଜଙ୍ଗଲ ନଷ୍ଟ କରିବାରେ ଅଗ୍ରଣୀ ହୋଇଛନ୍ତି ବୋଲି ଅଭିଯୋଗ ହୋଇଥିଲା ।

ପରିଶେଷରେ ପଦଯାତ୍ରୀମାନେ ବୁଦ୍ଧଗ୍ରାମ ଗ୍ରାମରେ ପହଞ୍ଚିଥିଲେ । ଏହି ଗ୍ରାମ ବହୁ ବିଷୟରେ ଅଗ୍ରଣୀ ହେଲେ ମଧ୍ୟ ଛୁଆଁଅଛୁଆଁ ଭେଦଭାବ ଏହି ଗ୍ରାମର ଅଧିକାଂଶ ଲୋକଙ୍କର ମନରୁ ଯାଇନାହିଁ । ୧୯୮୨ ମସିହାରେ ସରକାରଙ୍କ ପକ୍ଷରୁ ଏହି ଗ୍ରାମରେ ଏକ ନଳକୂଅ ପ୍ରତିଷ୍ଠିତ ହୋଇଛି । ହରିଜନମାନେ ଏହି ନଳକୂଅରୁ ପାଣି ନେବାରୁ ଗ୍ରାମବାସୀ ନ୍ୟାୟ କରିଥିଲେ ହରିଜନମାନଙ୍କର କୌଣସି ଦୋଷ ନଥିଲେ ମଧ୍ୟ ସେମାନେ ଦୋଷ ସ୍ୱୀକାର କରି କ୍ଷମାଭିକ୍ଷା କରିଥିଲେ । ଏହି ଗ୍ରାମର ସୁଯୋଗ୍ୟ ସନ୍ତାନ, ସ୍ୱନାମଧନ୍ୟ ଅଧ୍ୟାପକ ଡଃ. ସୁବାସ ଚନ୍ଦ୍ର ହଜାରୀ ଲୋକମାନଙ୍କୁ ସାମ୍ବିଧାନିକ ଓ ଆଇନଗତ ବ୍ୟବସ୍ଥା ସମ୍ପର୍କରେ ସଚେତନ କରାଇଥିଲେ । ମାନବିକ, ନୈତିକ, ଆଧ୍ୟାତ୍ମିକ ଦିଗରୁ ମଧ୍ୟ ହରିଜନମାନଙ୍କ ପାଣି ନେବାର ମୌଳିକ ଅଧିକାର ରହିଛି ବୋଲି ସେ ନିବେଦନ କରିଥିଲେ ମଧ୍ୟ ଗ୍ରାମର ଅଧିକାଂଶ ଲୋକ ତାଙ୍କ ସହ ଏକମତ ହୋଇନଥିଲେ । ଏହି ଗ୍ରାମର ଜଣେ ବ୍ୟକ୍ତି (ଲେଖକ) ଏଥିରେ ମର୍ମାହତ ହୋଇ ଘୋଷଣା କରିଥିଲେ ଯେ ସେ ମରିଗଲା ପରେ, ତାଙ୍କ ଚିତାରେ ଜଣେ ହରିଜନ ଅଗ୍ନି ସଂଯୋଗ କରିବ । ପଦଯାତ୍ରୀ ଦଳଙ୍କର ନିବେଦନରେ ଗ୍ରାମବାସୀ ହରିଜନମାନଙ୍କୁ ପାଣିଦେବାକୁ ସମ୍ମତ ହୋଇଥିଲେ ।

ଏହି ଅଗ୍ରଣୀ ଗ୍ରାମ ବୁଦ୍ଧଗ୍ରାମରେ କେତେକ ଲୋକ ଗୁଲି ଓ ମଦ ଖାଉଥିବା ଯୋଗୁଁ ପଦଯାତ୍ରୀ ଦଳ ବ୍ୟଥିତ ହୋଇଥିଲେ । ନିଶା ସେବନ କରୁଥିବା ବ୍ୟକ୍ତିମାନଙ୍କର ଅସହାୟତାର ସୁଯୋଗ ନେଇ ଏହି ଗ୍ରାମର ଜଣେ ବ୍ୟକ୍ତି ଅଫିମ ଓ ମଦ ବିକ୍ରି କରୁଥିଲେ । ଅର୍ଥାତ୍ ଆତ୍ମହତ୍ୟା ପାଇଁ ଉଦ୍ୟମୀ ବ୍ୟକ୍ତିମାନଙ୍କୁ ସେ ବିଷପାତ୍ର ବଢ଼ାଇ ଦେଉଥିଲେ । ପଦଯାତ୍ରୀ ଦଳ ଏହି ଦୋକାନ ବନ୍ଦ କରିବାକୁ ଅନୁରୋଧ କରିଥିଲେ । ବାହାର ଗ୍ରାମର କେତେକ ଲୋକ ଆସି ଗ୍ରାମର ଗୁଲିଖଟିରେ ଗୁଲି ଖାଉଥିବା ଯୋଗୁଁ ଗ୍ରାମର ଅପକୀର୍ତ୍ତି ଚାରିଆଡ଼େ ରଟୁଥିଲା । ଏହି ବାହାର ଲୋକଙ୍କୁ ଓ ଗୁଲିଖଟି ବନ୍ଦ କରିବାକୁ ନିବେଦନ କରାଯାଇଥିଲା । ସଭାରେ ଏହି ସମ୍ପର୍କରେ ସବିଶେଷ ଆଲୋଚନା ହୋଇଥିଲା । ଏକ ଦୃଷ୍ଟିକୋଣ ଉପସ୍ଥାପିତ ହୋଇଥିଲା ଯେ, ଯେଉଁମାନେ ନିଶାସେବନ କରୁଛନ୍ତି, ସେମାନେ ଯେହେତୁ ନିଜର ଧନ ଖର୍ଚ୍ଚ କରୁଛନ୍ତି, ତେଣୁ ତାଙ୍କୁ କହିବାର ଅଧିକାର କାହାର ନାହିଁ । କିନ୍ତୁ ପଦଯାତ୍ରୀ ଦଳ ଯୁକ୍ତି

ବାଢ଼ିଥିଲେ ଯେ, ଖର୍ଚ୍ଚ ବ୍ୟକ୍ତିର ନୁହେଁ, ସମାଜର । ସମ୍ପତ୍ତି ଅପବ୍ୟୟ କରି ନିଜର କ୍ଷତିସାଧନ କରିବା ପାଇଁ କାହାର ଅଧିକାର ନାହିଁ । ବ୍ୟକ୍ତିଗତ ସମ୍ପତ୍ତି ଏପରି ବିନିଯୋଗ ହେବା ଉଚିତ, ଯଦ୍ୱାରା ସମାଜରେ ସମସ୍ତଙ୍କର ମଙ୍ଗଳ ହେବ । ବିପଥଗାମୀ ବ୍ୟକ୍ତିମାନଙ୍କୁ ଠିକ୍ ବାଟକୁ ଆଣିବା ପାଇଁ ସମାଜର ନୈତିକ ଦାୟିତ୍ୱ ରହିଛି । ଏକଥା ପଦଯାତ୍ରୀ ଦଳ ଚେତାଇ ଦେଇଥିଲେ । ଏହି ଗ୍ରାମର କେତେକ ଯୁବକ ଚାକିରିରୁ ଛୁଟିରେ ଆସି ଭୋଜିଭାତ କରନ୍ତି । ସେଥିରେ ମଦ ପରିବେଷଣ ହେଉଥିବାର ସମ୍ବାଦ ପ୍ରକାଶ ପାଇଥିଲା । ଯେଉଁମାନେ ମଦ ପିଉଥିଲେ, ସେମାନେ ମଦ ପିଇବା ଏକ ଫେସନ ବା ଆଭିଜାତ୍ୟର ଚିହ୍ନ ବୋଲି ଧରିନେଇଥିଲେ । ଏହି ପ୍ରକାର ମାରାତ୍ମକ ଦୃଷ୍ଟିକୋଣ ଯୋଗୁଁ ପଦଯାତ୍ରୀ ଦଳ ଉଦ୍‌ବେଗ ପ୍ରକାଶ କରିଥିଲେ ଓ ଗ୍ରାମବାସୀ ସମୂହ ଭାବରେ ଏହାର ପ୍ରତିରୋଧ କରିବାକୁ ନିବେଦନ କରିଥିଲେ । ପଦଯାତ୍ରୀ ଦଳ ଏହି ଗ୍ରାମର ନିଷ୍ପାପର କର୍ମୀ ଶ୍ରୀ ଉଦୟନାଥ ଖଟେଇ ଓ ଶ୍ରୀ ଭିକ୍ଷାକାରୀ ହଜାରୀଙ୍କର ସାନ୍ନିଧ ଲାଭ କରିଥିଲେ ।

**ଧରିତ୍ରୀ, ତା ୧୫.୯.୮୪ ରିଖରେ ପ୍ରକାଶିତ**

# ବୃକ୍ଷମିତ୍ର ବୁଦ୍ଧଗ୍ରାମ

-ନାରାୟଣ ହଜାରୀ
ସୁବାସ ଚନ୍ଦ୍ର ହଜାରୀ

ବୁଦ୍ଧଗ୍ରାମ (କେଶରପୁର) ପୁରୀ ଜିଲ୍ଲା ନୟାଗଡ଼ ବ୍ଲକ୍‌ର ପ୍ରାୟ ୭୦୦ ଲୋକ ସଂଖ୍ୟା ବିଶିଷ୍ଟ ଛୋଟ ଗାଁଟିଏ । ଏହା ଭୁବନେଶ୍ୱରଠାରୁ ୧୦୦ କିଲୋମିଟର ଦୂରରେ ଓ ନୟାଗଡ଼ ଟାଉନ୍‌ଠାରୁ ୧୧ କି.ମି. ଦୂରରେ ଅବସ୍ଥିତ । ଭୁବନେଶ୍ୱରରୁ ପ୍ରତିଦିନ ବସ୍ ଏଠାକୁ ଯାତାୟତ କରେ । ଏହି ଗ୍ରାମରୁ ୧୯୬୯ ମସିହାରୁ ପରିବେଶ ଆନ୍ଦୋଳନ ଆରମ୍ଭ ହୋଇ ନୟାଗଡ଼ ସବ୍‌ଡ଼ିଭିଜନର ୭ଟି ବ୍ଲକ୍‌ର ପ୍ରାୟ ୫୦୦ଗ୍ରାମକୁ ପ୍ରସାରଲାଭ କରିଛି । ଏହି ଗ୍ରାମରେ "ବୃକ୍ଷ ଓ ଜୀବର ବନ୍ଧୁ" ନାମକ ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ପ୍ରତିଷ୍ଠିତ ହୋଇଛି । ଗାଁଟି ବୁଦ୍ଧଗିରି ପାହାଡ଼ ପାଦଦେଶରେ । ବୁଦ୍ଧଗିରି ଓ ମାଳତୀ ପାହାଡ଼ ଚାରିପଟେ ଥିବା ୨୨ ଖଣ୍ଡ ଗ୍ରାମକୁ ନେଇ ଉକ୍ତ ଅନୁଷ୍ଠାନ ଗଠିତ । ପରିବେଶ ସମ୍ପର୍କରେ ସଚେତନତା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ପରିବେଶ ସଂରକ୍ଷଣ ପାଇଁ ଆନ୍ତରିକ ଉଦ୍ୟମ କରିଥିବାରୁ ଭାରତ ସରକାର ୧୯୮୬ ମସିହାରେ ଏହି ଅନୁଷ୍ଠାନକୁ 'ବୃକ୍ଷମିତ୍ର' ପୁରସ୍କାର ପ୍ରଦାନ କରିଛନ୍ତି । 'ବୃକ୍ଷମିତ୍ର' ପୁରସ୍କାର ପାଇବାରେ ଏହା ଓଡ଼ିଶାରେ ସର୍ବପ୍ରଥମ ସ୍ୱେଚ୍ଛାସେବୀ ଅନୁଷ୍ଠାନ । ଓଡ଼ିଶା ସରକାର ମଧ୍ୟ ୧୯୮୬ ମସିହାରେ ଏହି ଅନୁଷ୍ଠାନକୁ 'ପ୍ରକୃତିମିତ୍ର' ପୁରସ୍କାର ପ୍ରଦାନ କରିଛନ୍ତି ।

ଏହି ପରିବେଶ ଆନ୍ଦୋଳନ ବୁଦ୍ଧଗ୍ରାମରୁ ଆରମ୍ଭ ହୋଇଥିବା ଯୋଗୁଁ ଏହାକୁ 'ବୁଦ୍ଧଗ୍ରାମ ପରିବେଶ ଆନ୍ଦୋଳନ' ନାମରେ ନାମିତ କରାଯାଇଛି । 'ବୃକ୍ଷ ଓ ଜୀବର ବନ୍ଧୁ' ଏହି ଅଞ୍ଚଳରେ ପରିବେଶ ଆନ୍ଦୋଳନରେ ଏକ କ୍ରୀୟାଶୀଳ, ଗତିଶୀଳ ଓ ସଂଗ୍ରାମୀ ଭୂମିକା ଗ୍ରହଣ କରିଛି । ଏହା ଏକ ଅଣରାଜନୀତିକ ଅନୁଷ୍ଠାନ ଓ ସମାଜସେବା ତଥା ଗଠନମୂଳକ ଦେଶ ନିର୍ମାଣ ଏହାର ଆଭିମୁଖ୍ୟ । ଜନଜାଗରଣର ଅଭ୍ୟୁତ୍‌ଥାନ ପାଇଁ ଓ ଜନସାଧାରଣ ଏବଂ ସରକାରଙ୍କ ମଧ୍ୟରେ ସଂପର୍କ ରକ୍ଷା କରିବା ପାଇଁ ଏହି ଅନୁଷ୍ଠାନ ସର୍ବଦା କାମ କରିଆସିଛି ।

ବୁଦ୍ଧଗ୍ରାମ ଆନ୍ଦୋଳନ କେବଳ ପାର୍ଥିବ ପରିବେଶ ସଂରକ୍ଷଣ ଓ ପର୍ଯ୍ୟାବରଣ (ଇକୋଲଜି)ର ଉନ୍ନତି ପାଇଁ ନୁହେଁ । ସମାଜର ସମସ୍ତ ପ୍ରକାର ଉନ୍ନତି ଏହାର ଲକ୍ଷ୍ୟ । ଆର୍ଥନୀତିକ, ସାମାଜିକ, ରାଜନୀତିକ, ସାଂସ୍କୃତିକ, ମାନବିକ, ନୈତିକ, ଆଧ୍ୟାତ୍ମିକ ବିକାଶ ଏହାର ଲକ୍ଷ୍ୟ । ଆର୍ଥନୀତିକ ପୁନର୍ଗଠନ ସହିତ ସମାଜ ସଂସ୍କାର ଏହାର ଆଭିମୁଖ୍ୟ । ଜଙ୍ଗଲ ସୁରକ୍ଷା, ବୃକ୍ଷରୋପଣ, ପରିବାର ନିୟନ୍ତ୍ରଣ, କୃଷିର ବିକାଶ, ଜଳସେଚନ, ଶିକ୍ଷା, ସ୍ୱାସ୍ଥ୍ୟସେବା, ଅସ୍ପୃଶ୍ୟତା ନିବାରଣ, ଯୌତୁକ ପ୍ରଥାର ନିରାକରଣ, ମହିଳାମାନଙ୍କର ଅବସ୍ଥାର ଉନ୍ନତି, ଥାନା ଓ କୋର୍ଟକୁ ନ ଯାଇ ଗ୍ରାମରେ ବିବାଦ ତୁଟାଇବା, ଅବସର ଗ୍ରହଣ ପରେ ନିଜ ନିଜ ଗ୍ରାମମାନଙ୍କୁ ଫେରିଆସି ଗ୍ରାମର ଉନ୍ନତିରେ ଗଠନମୂଳକ ଭୂମିକା ଗ୍ରହଣ କରିବା ପାଇଁ କର୍ମଚାରୀମାନଙ୍କୁ ପ୍ରବର୍ତ୍ତଇବା, ସରକାରୀ ସାହାଯ୍ୟ ଉପରେ ବିଶେଷ ନିର୍ଭର ନ କରି ଗ୍ରାମବାସୀବୃନ୍ଦ ସ୍ୱକୀୟ ଉଦ୍ୟମରେ ଗ୍ରାମର ପ୍ରଗତି ପାଇଁ ପଦକ୍ଷେପ ନେବାକୁ ପ୍ରବର୍ତ୍ତାଇବା ଆନ୍ଦୋଳନର ବହୁମୁଖୀ ଲକ୍ଷ୍ୟ ।

ବହୁଦିନ ତଳର କଥା । ବୁଦ୍ଧଗ୍ରାମରେ ଦଳାଦଳି । ଘୋର ଅଶାନ୍ତି । ସମୂହ ସ୍ୱାର୍ଥ ପ୍ରତି କାହାର ଦୃଷ୍ଟିନଥାଏ । ନାଗରିକର ଦାୟିତ୍ୱ ବହନ କରିବାକୁ କେହି ପ୍ରସ୍ତୁତ ନଥାନ୍ତି । ଅଜ୍ଞତା, ଭୟ, ସନ୍ଦେହ, ଅବିଶ୍ୱାସ, ଅସୂୟା, ଦ୍ୱେଷ, ଈର୍ଷା, ଘୃଣା, କ୍ରୋଧ, ପ୍ରତିଶୋଧ ପରାୟଣତାର ଶୀକାର ଗ୍ରାମବାସୀ ହୋଇଥାନ୍ତି । ଗ୍ରାମରେ ସ୍ନେହ, ପ୍ରୀତି, ସାହାଯ୍ୟ, ସହଯୋଗ ନଥାଏ । ଗ୍ରାମରେ ଦୁଇଟି ଦଳ ସୃଷ୍ଟି ହୋଇଥାଏ । ଦୁଇଟି ଯାକ ଦଳ ଥାନା ଓ କୋର୍ଟକୁ ଧାଉଁଥାନ୍ତି ଅପରପକ୍ଷ ଉପରେ ଦାଉ ସାଧିବାକୁ । ସ୍ୱାମୀ ପଛେ ମରୁ, ସଉତୁଣୀ ରାଣ୍ଡ ହେଉ ଏହି ନୀତି ଚାଲିଥାଏ । ଗ୍ରାମର ସମୟ, ଶକ୍ତି ଓ ସମ୍ବଳ ଅପରପକ୍ଷରକୁ ଧ୍ୱଂସ କରିବାରେ ନିୟୋଜିତ ହେଉଥାଏ । ଗ୍ରାମବାସୀଙ୍କର କଷ୍ଟୋପାର୍ଜିତ ଧନ ସହରକୁ ବୋହି ଚାଲିଥାଏ । ସହରର କେତେକ ଲୋକ ଧନୀରୁ ଆହୁରି ଧନୀ ହେଉଥାନ୍ତି । ଦରିଦ୍ର ଗ୍ରାମବାସୀ ଦରିଦ୍ରରୁ ଦରିଦ୍ରତର ହେଉଥାନ୍ତି ।

ଆସିଲା ୧୯୫୪ ମସିହା । ଗ୍ରାମର କେତେକ ସଚେତନ, ନିଃସ୍ୱାର୍ଥପର, ଦେଶପ୍ରାଣ, ଶିକ୍ଷିତ ଓ ନିରକ୍ଷର ଯୁବକ ଗ୍ରାମର ଏ ଅଧୋଗତିକୁ ବନ୍ଦ କରିବାକୁ ବଦ୍ଧ ପରିକର ହେଲେ । ଅତୀତର ଦ୍ୱନ୍ଦ୍ୱ ଓ ତିକ୍ତତାକୁ ଭୁଲିଯାଇ ଗ୍ରାମର ଉନ୍ନତି ପାଇଁ କାର୍ଯ୍ୟକରିବାକୁ ସେମାନେ ଲୋକମାନଙ୍କୁ ପ୍ରବର୍ତ୍ତାଇଲେ ।

ଗାଁରେ ସ୍କୁଲ ନଥାଏ । ଗ୍ରାମବାସୀଙ୍କର ସ୍ୱେଚ୍ଛାକୃତ ସହଯୋଗରେ ୧୯୫୮ ମସିହାରେ ଏକ ପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠିତ ହେଲା । ୧୯୬୫ରେ ମାଧ୍ୟମିକ ଓ ୧୯୭୦ରେ ଉଚ୍ଚ ବିଦ୍ୟାଳୟ ପ୍ରତିଷ୍ଠିତ ହେଲା । ଏହି ଗ୍ରାମରୁ କେତେକ ବିଶ୍ୱବିଦ୍ୟାଳୟ ଓ କଲେଜ ଅଧ୍ୟାପକ, ଏହି ସ୍କୁଲର କେତେକ ଶିକ୍ଷକ, ବୁଦ୍ଧଗ୍ରାମ ଓ

ତା'ର ପଡ଼ୋଶୀ ଗ୍ରାମମାନଙ୍କରେ ଜନ ସଂଗଠନ ଓ ଜନଜାଗରଣରେ ପ୍ରମୁଖ ଭୂମିକା ଗ୍ରହଣ କଲେ । ଭାରତରେ ପ୍ରାୟ ୬ ଲକ୍ଷ ଗ୍ରାମ ରହିଛି । ପ୍ରାୟ ପ୍ରତ୍ୟେକ ଗ୍ରାମରେ ସ୍କୁଲ ରହିଛି । ସ୍କୁଲ ଶିକ୍ଷକମାନେ ସାମାଜିକ ପ୍ରଗତିର ବାର୍ତ୍ତାବହ ହୋଇପାରନ୍ତେ । ଚୀନ୍‌ରେ ଏକ ପ୍ରବାଦ ଅଛି : ତୁମେ ଯଦି ବର୍ଷକ ପାଇଁ ଯୋଜନା କରିବାକୁ ଚାହଁ କୃଷି କାର୍ଯ୍ୟକର; ତୁମେ ଯଦି ୧୦ ବର୍ଷ ପାଇଁ ଯୋଜନା କରିବାକୁ ଚାହଁ, ତେବେ କୂଅ ଖୋଳ ଯାହାର ପାଣିରେ ଶସ୍ୟ କ୍ଷେତ୍ରରେ ଜଳସେଚନ କରିପାରିବ; ତୁମେ ଯଦି ଶହେ ବର୍ଷ ପାଇଁ ଯୋଜନା କରିବାକୁ ଚାହଁ, ତେବେ ସ୍କୁଲଟିଏ କର । ଏହି ପ୍ରାଚୀନ ଉକ୍ତି ସୂଚିତ କରେ ଯେ ବିକାଶର ଚାବିକାଠି ଶିକ୍ଷା ହାତରେ ରହିଛି ।

ଶିକ୍ଷାର ଗୁରୁତ୍ୱ ନିମ୍ନଲିଖିତ ବିଷୟରୁ ସୂଚିତ ହୁଏ । ଭାରତର ତିନି ଚତୁର୍ଥାଂଶ ଲୋକ ଗାଁଗହଳରେ ବାସକରନ୍ତି । ସେମାନଙ୍କ ମଧ୍ୟରୁ ଶତକଡ଼ା ୯୫ ଭାଗ ଲୋକ ହୁକ୍‌ୱାର୍ମ ଦ୍ୱାରା ଆକ୍ରାନ୍ତ । ହୁକ୍‌ୱାର୍ମ ଏକ ପରାଙ୍ଗପୁଷ୍ଟ କୃମି ଯାହା ମଣିଷ ଦେହରେ ରହି ତା'ର ରକ୍ତ ଶୋଷଣ କରେ ଓ ତାକୁ ଶକ୍ତିହୀନ କରିଦିଏ । ଗାଁଗହଳିର ଲୋକମାନେ ଯେତେବେଳେ ଖାଲି ପାଦରେ ପଡ଼ିଆରେ ମଳତ୍ୟାଗ କରନ୍ତି, ସେତେବେଳେ ହୁକ୍‌ୱାର୍ମ ତାଙ୍କ ପାଦରେ ଯନ୍ତ୍ରଣା ନ ଦେଇ ପଶିଯାନ୍ତି । ଉପରୋକ୍ତ ଅଞ୍ଚଳରେ ବହୁତ ବୁଝାଇଲା ପରେ କେତେକ ଲୋକ ବରପାଲି ପାଇଖାନା କରିଛନ୍ତି । କିନ୍ତୁ ଅନେକ ଏହା ବ୍ୟବହାର କରନ୍ତି ନାହିଁ । ଏହା ଅଶିକ୍ଷାର ପରିଣାମ । ଆଉ ଗୋଟିଏ କଥା ହେଉଛି, ଗ୍ରାମରେ ଏପରି କେତେକ ଲୋକ ଅଛନ୍ତି ଯେଉଁମାନେ ମଶାରୀ ବ୍ୟବହାର କରନ୍ତି ନାହିଁ । ବହୁ ଗ୍ରାମବାସୀଙ୍କର ଶିଶୁର ଯତ୍ନ, ପରିଷ୍କାର ପରିଚ୍ଛନ୍ନତା, ପରିମଳ ବ୍ୟବସ୍ଥା ଓ ସ୍ୱାସ୍ଥ୍ୟରକ୍ଷା ସମ୍ପର୍କରେ ନିମ୍ନତମ ଜ୍ଞାନ ନାହିଁ । ନଗରମାନଙ୍କ ପରି ଗ୍ରାମମାନଙ୍କରେ ମଧ୍ୟ ନିଶାଦ୍ରବ୍ୟର ଦ୍ରୁତ ପ୍ରସାର ଘଟୁଛି । ଉପରୋକ୍ତ ସମସ୍ୟାଗୁଡ଼ିକର ପ୍ରତିକାର ପାଇଁ ଶିକ୍ଷା ହିଁ ଏକମାତ୍ର ଆୟୁଧ । ଏହି ଶିକ୍ଷା ନୈତିକ ମୂଲ୍ୟବୋଧ ଉପରେ ପ୍ରତିଷ୍ଠିତ ହେବା ବିଧେୟ । ନୈତିକ ମୂଲ୍ୟବୋଧ ଦ୍ୱାରା ପ୍ରଭାବିତ କେତେକ ଶିକ୍ଷିତ ଯୁବକଙ୍କ ଯୋଗୁଁ ଏହି ଅଞ୍ଚଳର ପରିବେଶ ସଂରକ୍ଷଣ ପାଇଁ ଏକ ବିପ୍ଲବର ସୂତ୍ରପାତ ହୋଇଛି ।

ଭାରତର ଜନସଂଖ୍ୟାର ଦ୍ରୁତ ଅଭିବୃଦ୍ଧି, ପରିବେଶ ପାଇଁ ଘୋର ବିପଦ ସୃଷ୍ଟି କରିଛି । ଜନସଂଖ୍ୟାର ନିୟନ୍ତ୍ରଣ ବିନା ପରିବେଶର ସଂରକ୍ଷଣ ଓ ବିକାଶ ଅସମ୍ଭବ । ସମାଜସେବୀମାନଙ୍କର ନିଷ୍ଠାପର ଉଦ୍ୟମ ଦ୍ୱାରା ଓ ସରକାରଙ୍କର ବିଭିନ୍ନ ପ୍ରୋତ୍ସାହନମୂଳକ ପଦକ୍ଷେପ ଦ୍ୱାରା ଏହି ଅଞ୍ଚଳର ବହୁ ଲୋକ ପରିବାର ନିୟନ୍ତ୍ରଣ କରିଛନ୍ତି ।

ଏହି ଅଞ୍ଚଳର ଜନସହଯୋଗର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ହେଉଛି କାଳିକାପ୍ରସାଦ ପଞ୍ଚାୟତର ଚିକିତ୍ସାଳୟ । ଏହି ପଞ୍ଚାୟତର ୧୦ ଖଣ୍ଡ ଗ୍ରାମର ବାସିନ୍ଦା ସେମାନଙ୍କର ବର୍ଷକର ପ୍ରାପ୍ୟ କଣ୍ଟ୍ରୋଲ ଚିନିରୁ ଅଧା ଦାନ କରି ୯୦ ହଜାର ଟଙ୍କା ସଂଗ୍ରହ କରିଥିଲେ । ସେହି ଅର୍ଥରେ ଚିକିତ୍ସାଳୟ ପ୍ରତିଷ୍ଠିତ କରିଥିଲେ । ଏହା ଲୋକମାନଙ୍କର ଏକ ମୌଳିକ ଆବଶ୍ୟକତା ପୂରଣ କରିଥିଲା ।

କୃଷିର ବିକାଶ ପାଇଁ ଜଳସେଚନର ଆବଶ୍ୟକତା ସର୍ବବିଦିତ । ବୁଦ୍ଧଗ୍ରାମ ପରିବେଶ ଆନ୍ଦୋଳନର ସ୍ୱେଚ୍ଛାସେବୀମାନେ ଗାଁ ଗାଁରେ, ପୋଖରୀ ଦ୍ୱାରା ଜଳସେଚନର ଉତ୍କର୍ଷତା ସମ୍ପର୍କରେ ଲୋକମାନଙ୍କୁ ସଚେତନ କରାଉଛନ୍ତି । ବୃହତ୍ ଜଳବିଦ୍ୟୁତ୍ ପ୍ରକଳ୍ପର ଅପକାରିତା, ଜଙ୍ଗଲ ଜଳମଗ୍ନ ହେବା, ପ୍ରକଳ୍ପରୁ କେନାଲ୍ ମାଧ୍ୟମରେ ଜଳସେଚନ ପାଇଁ ଯାଉଥିବା ଜଳର ଲବଣତା, କେନାଲ ପାଣି ନିଷ୍କାସନ ହୋଇ ନ ପାରିବା, ମ୍ୟାଲେରିଆ ଆଦି ରୋଗର ସୃଷ୍ଟି ହେଉଥିବା ସମ୍ପର୍କରେ ଲୋକମାନଙ୍କୁ ସଚେତନ କରାଉଛନ୍ତି । ଜଳସେଚନ ପାଇଁ ଯେଉଁ ଜଳ ନିୟୋଜିତ ହୁଏ ତାହା ତିନି ସ୍ତରରେ ରହିଥାଏ । ମାଟି ଉପରେ ଥିବା ଜଳ (ସରଫେସ୍ ୱାଟର୍) ପୋଖରୀ ଓ ନଦୀମାନଙ୍କରେ ଥାଏ । ମାଟି ତଳେ ଥିବା ଜଳ (ସବ୍ ସଏଲ୍ ୱାଟର୍) ମାଟିର ୨୦/୩୦ ଫୁଟ ତଳେ ଥାଏ । ଭୂମି ତଳେ ଥିବା ଜଳ (ଅଣ୍ଡର ଗ୍ରାଉଣ୍ଡ ୱାଟର୍) ମାଟିର ୨୦୦/୩୦୦ ଫୁଟ ତଳେ ଥାଏ । ବୈଜ୍ଞାନିକମାନଙ୍କ ମତରେ ଭୂମି ତଳୁ ଯେଉଁ ପରିମାଣରେ ଜଳ ବାହାର କରାଯାଏ ସେତିକି ଜଳ ଆଉ କେବେ ହେଲେ ଭରଣା ହୁଏନାହିଁ । ଏଥିଯୋଗୁ ମାଟି ତଳେ ଥିବା ପାଣି ଓ ମାଟି ଉପରେ ଥିବା ପାଣିର ପରିମାଣ କମିଯାଏ । ପଞ୍ଜାବରେ ଭୂମି ତଳେ ଥିବା ପାଣି ବା ଭୂତଳ ପାଣିର ପର୍ଯ୍ୟାପ୍ତ ବିନିଯୋଗ ହୋଇଛି । ଏଥିଯୋଗୁ ପଞ୍ଜାବ ଏକ ଶତାବ୍ଦୀ ମଧ୍ୟରେ ଯେ ମରୁଭୂମିରେ ପରିଣତ ହେବ ଏ ସତର୍କବାଣୀ ଜଣେ ଆମେରିକୀୟ ବୈଜ୍ଞାନିକ ଶୁଣାଇଛନ୍ତି । ପାଣିକୁ ଜଳସେଚନ ପାଇଁ ଉପଯୋଗ କରିବା କ୍ଷତିକାରକ (କାଉଣ୍ଟର ପ୍ରୋଡକ୍‌ଟିଭ୍) । ଏହି ଆନ୍ଦୋଳନର ଆଭିମୁଖ୍ୟ ହେଉଛି ନିରବଚ୍ଛିନ୍ନ ବିକାଶ (ସଷ୍ଟେନେବଲ୍ ଡେଭେଲପ୍‌ମେଣ୍ଟ), ଧ୍ୱଂସମୂଳକ ବିକାଶ (ଡେଷ୍ଟ୍ରକ୍ଟିଭ୍ ଡେଭଲପମେଣ୍ଟ) ନୁହେଁ । ପ୍ରକୃତି ସହ ସମନ୍ୱୟ ରକ୍ଷା କରି ବିକାଶ କରିବା ହେଉଛି ଏହି ଆନ୍ଦୋଳନର ଆଭିମୁଖ୍ୟ । ଜଙ୍ଗଲ ରକ୍ଷାକରିବା ଦ୍ୱାରା ଓ ବୃକ୍ଷରୋପଣ ଦ୍ୱାରା ଭୂମି ତଳ ଜଳପତ୍ତନକୁ ଉର୍ଦ୍ଧ୍ୱଗାମୀ କରାଯାଇପାରିବ । ତଦ୍ଦ୍ୱାରା ଭୂତଳ ଜଳ ବିନିଯୋଗର ଆବଶ୍ୟକତା ପଡ଼ିବ ନାହିଁ । ମାଟି ଉପର ପାଣି ଓ ମାଟି ତଳ ପାଣି ଦ୍ୱାରା ଆବଶ୍ୟକତା ମେଣ୍ଟାଯାଇପାରିବ ।

ସ୍ୱେଚ୍ଛାସେବୀମାନେ ଗାଁ ଗାଁ ପଦଯାତ୍ରା କରି ଜଙ୍ଗଲ ସଂରକ୍ଷଣର ଉପକାରିତା ବିଷୟରେ ବୁଝାଉଛନ୍ତି । ଗଛ ମୁଖ୍ୟତଃ ତିନୋଟି ଜିନିଷ ଦିଏ : ପବନ, ପାଣି, ମାଟି । ଗଛ ଅମ୍ଳଜାନ ଦିଏ । ଜଙ୍ଗଲ ବର୍ଷା କରାଏ । ଗଛର ପତ୍ରରୁ ମାଟିର ସୃଷ୍ଟି । ଭୂଭାଗ ଉପରେ ଥିବା ମାଟିକୁ ସରମାଟି କୁହାଯାଏ । ଏହି ମାଟିର ଉର୍ବରତା ଓ ଉତ୍ପାଦିକା ଶକ୍ତି ଅଧିକ ଥାଏ । ଉପର ୨ ଇଞ୍ଚ ମାଟି ସୃଷ୍ଟି ହେବାକୁ ୧୨ ଶହ ବର୍ଷ ଲାଗେ । ଗଛ ମୃତ୍ତିକା ସଂରକ୍ଷଣ କରେ । ଏହାର ଚେର ମାଟିକୁ ଭିଡ଼ି ରଖେ । ଗଛ ଉପରୁ ପଡ଼ିଥିବା ପତ୍ର, ମାଟିକୁ ବର୍ଷା ବାଧାରୁ ରକ୍ଷାକରେ । ପାହାଡ଼ରେ ଗଛ ଥିଲେ, ବର୍ଷାବେଳେ ପାଣି ଟୋପା ଗଛର ପତ୍ର, ଡାଳ, ଗଣ୍ଡି ଉପରେ ପଡ଼େ । ଝଡ଼ିଲାପତ୍ରର ଶେଯ ବିଛା ହୋଇଥିବା ଯୋଗୁ, ବର୍ଷା ବିନ୍ଦୁ ଦ୍ୱାରା ମୃତ୍ତିକା କ୍ଷୟ ହୁଏନାହିଁ । ପାହାଡ଼ରେ ଗଛ ନଥିଲେ ବର୍ଷା ବିନ୍ଦୁ ମାଟିକୁ ଆଘାତ କରି ମାଟି ଧୋଇ ନେଇଯାଏ । ମୃତ୍ତିକା କ୍ଷୟ ହୋଇ ଚାଷଜମିର ସରମାଟି ଉପରେ ବସିଯାଏ । ତଦ୍ୱାରା ଉତ୍ପାଦନ ବାଧାପ୍ରାପ୍ତ ହୁଏ । ମୃତ୍ତିକା କ୍ଷୟ ଯୋଗୁ ନଦୀର ଶଯ୍ୟା ଉପରକୁ ଉଠିଯାଏ । ତଦ୍ୱାରା ବଢ଼ି ହୁଏ । ନଦୀ ଶଯ୍ୟା ଉପରକୁ ଉଠିଗଲେ, ବୃହତ୍ ଜଳବିଦ୍ୟୁତ୍ ପ୍ରକଳ୍ପରୁ ବିଜୁଳି ଉତ୍ପାଦନ କମିଯାଏ । ଦେଶରେ ହୁରି ପଡ଼ିଛି ଜଳସେଚନ ଓ ବିଜୁଳି ପାଇଁ କିନ୍ତୁ ଜଙ୍ଗଲ ନରହିଲେ ଏ ସବୁ ଯେ ସମ୍ଭବ ନୁହେଁ, ଏ କଥା ଖୁବ୍ କମ୍ ଲୋକ ବୁଝନ୍ତି ।

ପାହାଡ଼ରେ ଗଛ ଥିଲେ, ବର୍ଷା ବିନ୍ଦୁ ଝଡ଼ା ପତ୍ର ଶଯ୍ୟା ଉପରେ ପଡ଼ିଲା ପରେ, ଜଳ ବିନ୍ଦୁ ମାଟି ଭିତରକୁ ଭେଦ କରି ସେଠାରେ ସଞ୍ଚିତ ହୁଏ । ଗଛ ମଧ୍ୟ ନିଜ ଦେହରେ ବର୍ଷା ଜଳକୁ ଧରି ରଖେ । ଏହି ଜଳ ପାହାଡ଼ର ବୃକ୍ଷଲତାମାନେ ବର୍ଷସାରା ନିୟନ୍ତ୍ରିତ ଭାବେ ଛାଡ଼ନ୍ତି । ଏଥିରୁ ଚିରସ୍ରୋତ ଝରଣାର ସୃଷ୍ଟି । ଗଛର ଏହି ଅଦ୍ଭୁତ ଜଳ ନିୟନ୍ତ୍ରଣ ଶକ୍ତି ପ୍ରକୃତିର ଏକ ବିସ୍ମୟ । ବୃକ୍ଷ ଛାୟା ପ୍ରଦାନ କରେ ଓ ଉତ୍ତାପ କମାଏ । ଏହା ଆମକୁ ଖାଦ୍ୟ, ବସ୍ତ୍ର, ବାସଗୃହ, ଜଳ, ଗୋଖାଦ୍ୟ, ଔଷଧ ଆଦି ଦିଏ ।

ବୃଦ୍ଧଗିରି ଓ ମାଳତୀର ସଂରକ୍ଷଣ ଯୋଗୁ ଓ ସେଥିରେ ବୃକ୍ଷରୋପଣ ଦ୍ୱାରା, ପାଦ ଦେଶରେ ଥିବା ଗ୍ରାମବାସୀ ନାଟକୀୟ ଭାବରେ ଉପକୃତ ହୋଇଛନ୍ତି । ମୃତ୍ତିକା କ୍ଷୟ ବନ୍ଦ ହୋଇଛି । ଲୁପ୍ତ ଝରଣାର ପୁଣି ଅବିର୍ଭାବ ହୋଇଛି । ଏହି ଝରଣା ଜଳ ଜଳସେଚନ କରିବାରେ ଓ ପୋଖରୀମାନଙ୍କରେ ମାଛ ଚାଷ କରିବାରେ ସହାୟକ ହୋଇଛି । ଗୋମହିଷାଦି ଗୃହ ପାଳିତ ପଶୁମାନେ ଘାସ, ଡାଳପତ୍ର ଖାଇବା ପାଇଁ ପାଉଛନ୍ତି । ପାହାଡ଼ରେ ଥିବା ପୋକସୁଙ୍ଗା ଆଦି ଅନାବଶ୍ୟକ ଗୁଳ୍ମ, ଶୁଖିଲା ଡାଳ, ପତ୍ର ଜ୍ୱାଳେଣି ରୂପରେ ଲୋକମାନେ ବ୍ୟବହାର କରୁଛନ୍ତି । କାଙ୍କଡ଼, ଅସାଡୁଆ, ବେଲ, ଆମ୍ବ, କାଜୁ ବାଦାମ, ଅଡ଼ଙ୍ଗା ଶାଗ ଆଦି ଫଳମୂଳ ଲୋକମାନେ ପାଇ

ପାରୁଛନ୍ତି । ଏହି ଅଞ୍ଚଳର ହରିଜନ ମହିଳାମାନେ ପାହାଡ଼ରୁ ଖିରିକୋଳି, କଣ୍ଟେଇକୋଳି, ଭରଅଁକୋଳି, ଗୁଆକୋଳି ଆଦି ସଂଗ୍ରହ କରି ଗ୍ରାମମାନଙ୍କରେ ବିକି ଜୀବିକା ନିର୍ବାହ କରୁଛନ୍ତି । ଏହିପରି ଭାବରେ ସମାଜର ଦରିଦ୍ରତମ ବ୍ୟକ୍ତି ଜଙ୍ଗଲ ଦ୍ୱାରା ଉପକୃତ ହେଉଛନ୍ତି । ଖେଳଛୁଟି ସମୟରେ ସ୍କୁଲ ପିଲାମାନେ ଜଙ୍ଗଲକୁ ଯାଇ ଫଳ, ମୂଳ, କୋଳି ଖାଇ ଯେପରି ଆନନ୍ଦ କୋଳାହଳ କରନ୍ତି ତାହା ନଦେଖିଲେ କେହି ବିଶ୍ୱାସ କରିପାରିବେନି । ଏପରି ଭାବରେ ଜଙ୍ଗଲ ମଣିଷର ଓ ପଶୁ ପକ୍ଷୀମାନଙ୍କର ମା' ଭାବରେ ପ୍ରତିଭାତ ହୋଇଛି । ବୃକ୍ଷ ଜୀବର ଜୀବନ । ତାର ଜୀବନର ଏକମାତ୍ର ବାର୍ତ୍ତା "ପରୋପକାରାୟ ସ୍ୱର୍ଗାୟ" ।

ପଦଯାତ୍ରୀବୃନ୍ଦ ନିମ୍ନଲିଖିତ ସଙ୍ଗୀତ ଗ୍ରାମେ ଗ୍ରାମେ ଗାନ କରନ୍ତି ।

ବୃକ୍ଷ ବିନା ବଞ୍ଚିବା ନାହିଁ,
ବୃକ୍ଷ ଆମର ଜୀବନ ଭାଇ ।

ପବନ, ମାଟି ଆଉ ପାଣି,
ବୃକ୍ଷ ଦେବତା ଦିଏ ଆଣି ।

ଖାଦ୍ୟ, ବସ୍ତ୍ର ଓ ବାସଗୃହ,
ବୃକ୍ଷ ଦେବତା ଅନୁଗ୍ରହ ।

ଜାଳେଣୀ, ଔଷଧ ଓ ଛାୟା,
ପ୍ରକାଶ କରେ ବୃକ୍ଷ ଦୟା ।

ବୃକ୍ଷକୁ ଭାଇ ଯତ୍ନ କର,
ବର୍ଷା ହୋଇବ ଝର ଝର ।

ବୃକ୍ଷ ଦେବତା କଲେ ଦୟା,
ଅଭାବ ନ ରହିବ କାହା ।

ଗଛ ପତ୍ରର ସାର ସାର,
କୃତ୍ରିମ ସାର ପରିହର ।

ଗଛକୁ ଫୋପାଡ଼ିଲେ ଟେକା,
ପାଚିଲା ଫଳ ଦିଏ ଏକା ।

ବୃକ୍ଷ ଛାୟାରେ ଆମେ ରହି,
ବୃକ୍ଷକୁ କାଟୁ ଅନ୍ଧ ହୋଇ ।

ତଥାପି ବୃକ୍ଷ ହୁଏ ସାହା,
କୃତଘ୍ନ ନରେ କରେ ଦୟା ।

ପରୋପକାର ତାର ଧର୍ମ,
ପରାର୍ଥେ ଧରିଛି ଜୀବନ ।

ବୃକ୍ଷ ଦେବତା କଲେ ରୋଷ,
ଅବଶ୍ୟ ଆମେ ଜିବା ନାଶ ।

ବୁଦ୍ଧର ବାଣୀ ଭାଇ ଶୁଣ,
ବୃକ୍ଷ ରୋପଣ ଯେ ନିର୍ବାଣ ।

ବୃକ୍ଷଙ୍କ ମଧ୍ୟେ ମୁଁ ଅଶ୍ୱତ୍‌ଥ,
ବୋଲନ୍ତି ପ୍ରଭୁ ଯେ ଶ୍ରୀକୃଷ୍ଣ ।

ସ୍ୱାଧୀନତା ପୂର୍ବରୁ ବୁଦ୍ଧଗିରି ଓ ମାଳତୀ ସବୁଜ ବନାନୀରେ ସୁଶୋଭିତ ଥିଲା । ବହୁ ଝରଣା ତାହା କୋଳରେ ନାଚି ନାଚି ପାଦଦେଶକୁ ଧାଇଁ ଆସୁଥିଲେ । ସ୍ୱାଧୀନତା ପରେ ଲୋକ ସଂଖ୍ୟା ବଢ଼ି ଚାଲିଲା । ଲୋକମାନଙ୍କର ସରକାରଙ୍କ ପ୍ରତି ଭୟ କମିଲା । ସରକାର ଜଙ୍ଗଲକୁ ଆୟର ଏକ ପନ୍ଥା ବୋଲି ଧରି ନେଲେ । ସ୍ୱେଚ୍ଛାଚାରିତା ଓ ଉଚ୍ଛୃଙ୍ଖଳତା ବଢ଼ିଲା ଓ ଗଛର ପରିବେଶୀୟ, ପର୍ଯ୍ୟାବରଣୀୟ ମୂଲ୍ୟ ଯେ ଆର୍ଥିକ ମୂଲ୍ୟଠାରୁ ଯଥେଷ୍ଟ ଅଧିକ ତାହା ଲୋକେ ଓ ସରକାର ବୁଝିଲେ ନାହିଁ । ପ୍ରକୃତି ସହିତ ଭାରସାମ୍ୟ ଓ ରକ୍ଷା ସନ୍ତୁଳନ କରି ଚଳିବାର ଉପକାର ବୁଝିଲେ ନାହିଁ । ପରିବେଶ ଉପରେ ହେଲା ଆକ୍ରମଣ । ଜଙ୍ଗଲରୁ ଗଛପତ୍ର ଯିବା ସଙ୍ଗେ ସଙ୍ଗେ ପଶୁ, ପକ୍ଷୀ ଆଦି ବିଲୁପ୍ତ ହେଲେ । ବୁଦ୍ଧଗିରି ପାହାଡ଼ ଲଣ୍ଡା ହେଲା ।

୧୯୬୯ ମସିହାରୁ ନିରବଚ୍ଛିନ୍ନ ଉଦ୍ୟମ ଫଳରେ ୧୯୭୬ ମସିହାରେ ବୁଦ୍ଧଗ୍ରାମ ଗ୍ରାମବାସୀ ଠେଙ୍ଗା ପାଳି କଲେ । ସନ୍ଧ୍ୟା ବେଳେ ୨ ଜଣଙ୍କ ବରଣ୍ଡାରେ ଠେଙ୍ଗା ଆଉଜାଇ ଦିଆଯାଇ ଥାଏ । ତା ପର ଦିନ ସେ ଦୁଇ ଜଣ ଠେଙ୍ଗା ହାତରେ ଧରି ଜଙ୍ଗଲ ସାରା ବୁଲି ଜଙ୍ଗଲର ସୁରକ୍ଷା କରି ସନ୍ଧ୍ୟାରେ ଗ୍ରାମକୁ ଫେରନ୍ତି । ଛେଳିମାନେ ଗଜା ଗଛର ପରମ ଶତ୍ରୁ । ଗ୍ରାମବାସୀ ଏକ ସାହସିକ ପଦକ୍ଷେପ ନେଲେ । ଛେଳି ସବୁ ବିକ୍ରି କରିଦେଲେ । ତା ଫଳରେ ହଜାର ହଜାର ଗଛ ଉଠିଲା । ଏ ଅଞ୍ଚଳରେ ଗରିବ ଲୋକମାନେ ଜାଳେଣୀ ଅଭାବରୁ ଦିନକୁ ଥରେ ମାତ୍ର ରୋଷେଇ କରନ୍ତି । ଏହି ଭାତ ଦିନରେ ୪ ଥର ଖାଆନ୍ତି । ଉପରୋକ୍ତ ଘଟଣାରୁ ଜଙ୍ଗଲର ସଂରକ୍ଷଣ ପାଇଁ ଜନସାଧାରଣଙ୍କର ତ୍ୟାଗ କଳନା କରାଯାଇପାରେ ।

ବୁଦ୍ଧଗ୍ରାମରେ ଜଙ୍ଗଲ ସୁରକ୍ଷା ପରେ ହଣାଯାଇଥିବା ଗଛମୂଳରୁ ଗଜା ବାହାରିବାରେ ଲାଗିଲା । ପଡ଼ୋଶୀ ଗ୍ରାମ ମାନଙ୍କର ଲୋଲୁପ ଦୃଷ୍ଟି ଏହି ଜଙ୍ଗଲ ଉପରେ ପଡ଼ିଲା । ସ୍ୱେଚ୍ଛାସେବୀମାନେ ଗ୍ରାମେଗ୍ରାମେ ଯାଇ ଜଙ୍ଗଲର ସଂରକ୍ଷଣ ପାଇଁ

ଲୋକଙ୍କୁ ବୁଝାଇଲେ । ଯେତେବେଳେ ଗ୍ରାମବାସୀମାନେ ତାଙ୍କ କଥା ଶୁଣିଲେ ନାହିଁ, ପଦଯାତ୍ରା କଲେ, କର୍ମଶାଳା କଲେ, ଗ୍ରାମ ଦାଣ୍ଡରେ ଶୋଇ ରହିଲେ ଓ ଅନଶନ କଲେ । ଏହି ନୈତିକ ପ୍ରବର୍ତ୍ତନା ଫଳରେ ଗ୍ରାମବାସୀମାନଙ୍କ ହୃଦୟରେ ପରିବର୍ତ୍ତନ ଆସିଲା । ସେମାନେ ଜଙ୍ଗଲର ସଂରକ୍ଷଣ ପାଇଁ ନିଷ୍ପତ୍ତି ନେଲେ ।

ବୁଦ୍ଧଗ୍ରାମରେ ଛେଳି ବିକ୍ରୀ କରିଦେଲା ପରେ (ନୟାଗଡ଼ର ଡ଼ି.ଏଫ୍. ଓ ଶ୍ରୀଯୁକ୍ତ ପ୍ରତାପ ପଟ୍ଟନାୟକଙ୍କ ପ୍ରେରଣାରେ ଗ୍ରାମବାସୀ ଛେଳି ବିକ୍ରି କରିଥିଲେ । ) ଏକ କୌତୁହଳ ପୂର୍ଣ୍ଣ ଘଟଣା ଘଟିଲା । ବୁଦ୍ଧଗ୍ରାମରେ କେତେକ ବାବଲ ଗଛ ଥିଲା । ବାବଲ ଗଛର ଫଳ ଖାଇବାକୁ ଗୋରୁଗାଈ ବହୁତ ଭଲ ପାଆନ୍ତି । ବାବଲ ଫଳ ଖାଇ ସାରିଲା ପରେ ସେମାନେ ଯେଉଁ ମଳତ୍ୟାଗ କରନ୍ତି, ସେହି ମଳର ଉଷ୍ମତା, ବାବଲ ମଞ୍ଜିରୁ ଗଜା ସୃଷ୍ଟି କରିବାରେ ଅନୁକୂଳ ହୁଏ । ଏହି ପରି ଭାବରେ ବୁଦ୍ଧଗ୍ରାମର ପାହାଡ଼ ତଳ, ପୋଖରୀ ହୁଡ଼ା, ନଦୀକୂଳ ଓ ରାସ୍ତାକଡ଼ରେ ଶହ ଶହ ବାବଲ ଗଛର ସୃଷ୍ଟି ହୋଇଛି । ସେ ଦୃଶ୍ୟ ଏକ ଅଦ୍ଭୁତ ଦୃଶ୍ୟ । ଏହି ପ୍ରକ୍ରିୟାରେ ହଜାର ହଜାର ଟଙ୍କା ମୂଲ୍ୟର ଗଛ ସୃଷ୍ଟି କରିବାରେ ଗ୍ରାମବାସୀ ସକ୍ଷମ ହୋଇଛନ୍ତି ।

ବୁଦ୍ଧଗ୍ରାମ ପାର୍ଶ୍ୱରେ କୁସୁମୀ ନଦୀ ପ୍ରବାହିତ । ନଦୀକୂଳରେ ଥିବା ଗଛଗୁଡ଼ିକ ନଦୀକୂଳକୁ ସୁରକ୍ଷିତ କରୁଛନ୍ତି । ସେହି ଗଛଗୁଡ଼ିକର ସୁରକ୍ଷା, ପାଖରେ ଥିବା ଜମିର ମାଲିକ କରନ୍ତି । ଗ୍ରାମବାସୀ ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନେଇଛନ୍ତି । ଯେତେବେଳେ ଗଛଟି ପରିପକ୍ୱ ହୁଏ, ସେତେବଳେ ଏହି ଗଛର କାଠକୁ ଗ୍ରାମବାସୀ ଓ ଗଛକୁ ଜଗିଥିବା କୃଷକ ମଧ୍ୟରେ ସମାନ ଭାଗରେ ବଣ୍ଟାଯାଏ । ଗଛର ଫଳ, ଫୁଲ, ପତ୍ର ଜଗିଥିବା କୃଷକ ଭୋଗକରେ । ଏହି ନିଷ୍ପତ୍ତିର ସୁଦୂର ପ୍ରସାରୀ ପ୍ରଭାବ ରହିଛି । ଏହା ସାରା ପୃଥିବୀ, ସାରା ଦେଶରେ କାର୍ଯ୍ୟକାରୀ ହୋଇପାରିବ ।

ସାରା ଦେଶରେ ପ୍ରକୃତିପ୍ରେମୀ ଓ ପରିବେଶ ବିଜ୍ଞାନୀମାନେ ଏକ ବିଚାରଶୀଳ ଜାତୀୟ ନୀତି ପାଇଁ ସ୍ୱର ଉତ୍ତୋଳନ କରିଛନ୍ତି । କୃଷି ଭାରତର ଗ୍ରାମବାସୀଙ୍କର ପ୍ରଧାନ ଜୀବିକା । ଜଙ୍ଗଲ ନୀତି କୃଷିର ସହାୟକ ଏବଂ ପରିପୂରକ ହେବା ଉଚିତ । ଜଙ୍ଗଲ ଉପରେ ଜନସାଧାରଣଙ୍କ କର୍ତ୍ତୃତ୍ୱ ରହିବା ଉଚିତ ଏବଂ ସେମାନଙ୍କ ଦ୍ୱାରା ଜଙ୍ଗଲ ପରିଚାଳିତ ହେବା ଉଚିତ । ସୁଇଜରଲ୍ୟାଣ୍ଡରେ ୯୦ ଭାଗ ଜଙ୍ଗଲ ଲୋକମାନଙ୍କ ଦ୍ୱାରା ନିୟନ୍ତ୍ରିତ । ଇସ୍ରାଏଲ୍‌ରେ ଜଙ୍ଗଲ ବିଭାଗ ନାହିଁ । ଏହାର ଅର୍ଥ ସେ ଦେଶର ଜଙ୍ଗଲ ଜନସାଧାରଣ ପରିଚାଳନା କରନ୍ତି । ପ୍ରାଚୀନ କାଳରୁ ଭାରତରେ ଜଙ୍ଗଲ ଲୋକମାନଙ୍କର କର୍ତ୍ତୃତ୍ୱ ଓ ନିୟନ୍ତ୍ରଣରେ ରହିଥିଲା । ୧୮୭୮ ମସିହାରେ ବ୍ରିଟିଶ ସରକାର ଜଙ୍ଗଲ ଉପରେ ସରକାରଙ୍କର କର୍ତ୍ତୃତ୍ୱ ଘୋଷଣା କଲେ । ତା'ପରେ

ଲୋକମାନେ ଭାବିଲେ ଯେ ଜଙ୍ଗଲ ସେମାନଙ୍କର ନୁହେଁ । ଜଙ୍ଗଲ ଓ ଲୋକମାନଙ୍କ ଭିତରେ ବିରୁଦ୍ଧାଭାବ (ଆଲିଏନେସନ୍) ଆସିଲା ।

ବୃକ୍ଷଗ୍ରାମ ପରିବେଶ ଆନ୍ଦୋଳନରେ ନିମ୍ନଲିଖିତ ନୀତି ଉପରେ ଗୁରୁତ୍ୱ ଦିଆହୋଇଆସିଛି । ସ୍ୱେଚ୍ଛାସେବୀମାନେ ଗ୍ରାମେ ଗ୍ରାମେ ନିମ୍ନଲିଖିତ ବାର୍ତ୍ତା ପହଞ୍ଚାଇଛନ୍ତି । ଯେଉଁ ଗ୍ରାମରେ ଜଙ୍ଗଲ ସଂରକ୍ଷଣ ପାଇଁ ଉଦ୍ୟମ ଚାଲିଛି, ସେଠାରେ ଯଦି କେତେକ ଲୋକ ବା ପଡ଼ୋଶୀ ଗ୍ରାମର ଲୋକମାନେ ଜଙ୍ଗଲ ନଷ୍ଟ କରନ୍ତି, ଏହି ସମସ୍ୟାର ଆପୋଷରେ ସମାଧାନ ହେବା ଉଚିତ । ଆନ୍ଦୋଳନର ଏକ ମୂଳ ନୀତି ହେଲା: ସମସ୍ୟାର ସମାଧାନ ପାଇଁ, କୌଣସି ପରିସ୍ଥିତିରେ ଥାନା, କୋର୍ଟ ବା ଜଙ୍ଗଲ ବିଭାଗର ଦ୍ୱାରସ୍ଥ ନ ହେବା । ଲୋକମାନେ ଜଙ୍ଗଲ ସୃଷ୍ଟି ଏବଂ ସଂରକ୍ଷଣ କରନ୍ତି । ସେମାନେ ଯଦି ଜଙ୍ଗଲ ଧ୍ୱଂସ କରନ୍ତି, ତା'ର କିଛି ପ୍ରତିକାର ନାହିଁ । ସମସ୍ୟାର ସମାଧାନ ପାଇଁ ବାହ୍ୟ ସଂସ୍ଥାର ସାହାଯ୍ୟ ନେବାରେ ବିପଦ ରହିଛି । ଏହି ବାହ୍ୟ ସଂସ୍ଥା ପରିସ୍ଥିତିରୁ ସଂପୂର୍ଣ୍ଣ ଭାବରେ ବିଷାକ୍ତ କରିଦେବାର ଆଶଙ୍କା ରହିଛି । ଆମେ ଯେତେବେଳେ ଆମ ଗ୍ରାମ ବା ପଡ଼ୋଶୀ ଗ୍ରାମକୁ ନିୟନ୍ତ୍ରଣ କରିପାରୁନାହୁଁ, ଏକ ବାହ୍ୟ ସଂସ୍ଥାକୁ କିପରି ବା ନିୟନ୍ତ୍ରଣ କରିପାରିବା । ସାଧାରଣତଃ ଦେଖାଯାଇଛି ଯେ ବାହ୍ୟ ସଂସ୍ଥାର ସାହାଯ୍ୟ ନେଲାପରେ ଦଳାଦଳି, ମାଲିମୋକଦ୍ଦମା ଆରମ୍ଭ ହୋଇଛି ଓ ଗ୍ରାମର ଅର୍ଥ ବାହାରକୁ ଚାଲିଯାଇଛି । ଜଙ୍ଗଲ ତ ରକ୍ଷା ହୋଇନାହିଁ, ତା' ସଙ୍ଗେ ସଙ୍ଗେ ଗ୍ରାମର ଏକତା ଧୂଳିସାତ୍ ହୋଇଛି । ତେଣୁ ସଙ୍କଟ ସମୟରେ ଲୋକଙ୍କୁ ବୁଝାଇ, ମନାଇ କାର୍ଯ୍ୟ ହାସଲ କରିବା ଆନ୍ଦୋଳନର ଆଭିମୁଖ୍ୟ ହୋଇଆସିଛି ।

ସ୍ୱେଚ୍ଛାସେବୀମାନେ ଯେତେବେଳେ ଗାଁରୁ ଗାଁ ପଦଯାତ୍ରା କରନ୍ତି ସେତେବେଳେ ଗ୍ରାମବାସୀମାନେ ଜଙ୍ଗଲର ସଂରକ୍ଷଣ ପାଇଁ ଫରେଷ୍ଟ ଗାର୍ଡ଼ ଅବସ୍ଥାପନର ବ୍ୟବସ୍ଥା କରିବାକୁ ଅନୁରୋଧ କରନ୍ତି । କିନ୍ତୁ ଆନ୍ଦୋଳନର ଅନ୍ୟ ଏକ ମୂଳ ନୀତି ହେଲା: ଜଙ୍ଗଲର ସୁରକ୍ଷା କେବଳ ଲୋକମାନଙ୍କ ଦ୍ୱାରା ହୋଇପାରିବ । ଫରେଷ୍ଟଗାର୍ଡ଼ ଉକ୍ତ ଅଞ୍ଚଳର ନ ହୋଇପାରନ୍ତି । ତେଣୁ ତାଙ୍କର ବା କାହିଁକି ଜଙ୍ଗଲ ସଂରକ୍ଷଣ ପାଇଁ ଦରଦ ରହିବ ? ଯୁଗେଯୁଗେ ଜଙ୍ଗଲ ଲୋକମାନଙ୍କ ଦ୍ୱାରା ସଂରକ୍ଷିତ ହୋଇଆସିଛି । ଯେଉଁଦିନଠାରୁ ସରକାର ଜଙ୍ଗଲ ରକ୍ଷାର ଦାୟିତ୍ୱ ନେଲେ, ସେହିଦିନଠାରୁ ଜଙ୍ଗଲର ଅବକ୍ଷୟ ଆରମ୍ଭ ହୋଇଛି । ସରକାର ଯଦି ଜଙ୍ଗଲର ସଂରକ୍ଷଣ ଓ ସୁରକ୍ଷା କରିପାରିଥାନ୍ତେ ବର୍ତ୍ତମାନ ସାରା ଦେଶର ପ୍ରାୟ ଜଙ୍ଗଲଶୂନ୍ୟ ହୋଇନଥାନ୍ତା । ଜଙ୍ଗଲର କର୍ତ୍ତୃତ୍ୱ ଏବଂ ନିୟନ୍ତ୍ରଣ ଲୋକମାନଙ୍କ ହାତରେ

ରହୁ । କିନ୍ତୁ ଲୋକମାନେ ଜଙ୍ଗଲ ବିଭାଗର ସମ୍ବଳ ବିନିଯୋଗ କରନ୍ତୁ ଓ ଜଙ୍ଗଲ ସଂପର୍କରେ ବୈଷୟିକ ପରାମର୍ଶ ଜଙ୍ଗଲ ବିଭାଗରୁ ଗ୍ରହଣ କରନ୍ତୁ ।

ସ୍ୱେଚ୍ଛାସେବୀମାନେ ଗାଁ ଗାଁରେ ଗୋଟିଏ କଥା ଲକ୍ଷ୍ୟ କରିଛନ୍ତି । ଗାଁମାନଙ୍କରେ ସାମାଜିକ ସଂହତି ନାହିଁ । ସାମାଜିକ ସଂହତି ସାମାଜିକ ସଂଗଠନରୁ ଉଦ୍ଭୁତ । ସାମାଜିକ ସଂହତିରୁ ରାଜନୀତିକ ସଂଗଠନର ଜନ୍ମ । ରାଜନୀତିକ ସଂଗଠନ ରାଜନୀତିକ ଅନୁଷ୍ଠାନର ଜନ୍ମଦାତ୍ରୀ । ରାଜନୀତିକ ପ୍ରକ୍ରିୟାରେ ଲୋକମାନଙ୍କ ଅଂଶଗ୍ରହଣ ଦ୍ୱରା ରାଜନୀତିକ ସଂଗଠନ ଗଢ଼ିଉଠେ । ଏହାଫଳରେ ରାଜନୀତିକ ସଙ୍କଳ୍ପ (ପଲିଟିକାଲ୍‌ଉଇଲ୍) ଦୃଢ଼ୀଭୂତ ହୁଏ । ରାଜନୀତିକ ସଙ୍କଳ୍ପରୁ ଅର୍ଥନୀତିକ ବିକାଶ ହୁଏ । ସାମାଜିକ ସଂହତି ଓ ରାଜନୀତିକ ସଙ୍ଗଠନ ଯୋଗୁଁ ବୁଦ୍ଧଗ୍ରାମର ଲୋକେ ୩୪ ବର୍ଷ ହେଲା ଥାନା, କୋର୍ଟ, କଚେରୀକୁ ଯାଇନାହାନ୍ତି । ଏହାଫଳରେ ଏହି ଗ୍ରାମର ଜଳସେଚନ, ପରିବାର ନିୟନ୍ତ୍ରଣ, ଶିକ୍ଷା, ପରିବେଶ ସଂରକ୍ଷଣ ଆଦି ଆର୍ଥନୀତିକ ବିକାଶ ସମ୍ଭବ ହୋଇଛି । ଯେଉଁ ଗ୍ରାମମାନଙ୍କରେ ସକ୍ରୀୟ କର୍ମୀମାନେ ମାନବିକ, ନୈତିକ, ଆଧ୍ୟାତ୍ମିକ ମୂଲ୍ୟବୋଧ ଦ୍ୱାରା ପ୍ରଭାବିତ ଏବଂ ଗ୍ରାମବାସୀଙ୍କୁ ସେହି ମନ୍ତ୍ରରେ ଦିକ୍ଷୀତ କରିପାରିଛନ୍ତି, ସେହି ଗ୍ରାମମାନଙ୍କର ବିକାଶ ସାମାଜିକ ସଂହତି, ରାଜନୀତିକ ସଂଗଠନ ଓ ଆର୍ଥନୀତିକ ବିକାଶ ହୋଇପାରିଛି । ବୁଦ୍ଧଗ୍ରାମ ଆନ୍ଦୋଳନର ମହାଶିକ୍ଷା ହେଉଛି, ଆର୍ଥନୀତିକ ବିକାଶ ନୈତିକ ମୂଳଦୁଆ ଉପରେ ପ୍ରତିଷ୍ଠିତ ।

ବୁଦ୍ଧଗ୍ରାମରେ ଏକ ଅନୁପମ ରାଜନୀତିକ ବ୍ୟବସ୍ଥା ପ୍ରଚଳିତ ହୋଇଛି ଯାହାକି ଭାରତରେ ଅଦ୍ୱିତୀୟ । ସୁଦୂର ସ୍ୱିଡ଼େନ୍ ଓ ବିଲାତରୁ ସମାଜସେବୀମାନେ ବୁଦ୍ଧଗ୍ରାମକୁ ଆସି ଏହି ବ୍ୟବସ୍ଥାର ଉଚ୍ଚ ପ୍ରଶଂସା କରିଛନ୍ତି । ୧୯୬୧ ମସିହାରୁ ଏହି ଗ୍ରାମରେ ବାର୍ଷିକ ସାବାଳକ(୧୮ବର୍ଷ) ଭୋଟ ବ୍ୟବସ୍ଥା ରହି ଆସିଛି । ନିର୍ବାଚନରେ ଗୁପ୍ତମତ ଦାନର ବ୍ୟବସ୍ଥା ରହିଛି । ଗ୍ରାମବାସୀ ପ୍ରତିବର୍ଷ ୫ଜଣ ପ୍ରତିନିଧିଙ୍କୁ ଗ୍ରାମ ଚଳାଇବା ପାଇଁ ନିର୍ବାଚିତ କରନ୍ତି । ଏମାନେ ବର୍ଷକ ପାଇଁ ଗ୍ରାମ ଚଳାନ୍ତି । ଉକ୍ତ ପଞ୍ଚାୟତର ମୂଖ୍ୟ ହେଉଛନ୍ତି ଗ୍ରାମଣୀ । ଏତଦ୍ ବ୍ୟତୀତ ଧାନ ହିସାବ ରଖିବାକୁ ଓ ଗ୍ରାମର ଆୟବ୍ୟୟର ହିସାବ ବୁଝିବାକୁ ୨ଜଣ ସେକ୍ରେଟେରୀଙ୍କୁ ଗ୍ରାମବାସୀ ନିର୍ବାଚିତ କରନ୍ତି । ପ୍ରତିବର୍ଷ ନିର୍ବାଚନ ହେଉଥିବା ଯୋଗୁଁ ଲୋକମାନଙ୍କର ନେତୃତ୍ୱ ଉପରେ ଆସ୍ଥା ରହୁଛି । ଲୋକ ପ୍ରତିନିଧିମାନଙ୍କର ବିଶ୍ୱାସ ରହୁଛି ଯେ ତାଙ୍କ ପଛରେ ଜନ ସମର୍ଥନ ରହୁଛି । ରାଜନୀତିକ ପ୍ରକ୍ରିୟାରେ ଲୋକମାନେ ନିୟମିତ ଅଂଶ କରୁଥିବା ଯୋଗୁଁ ରାଜନୀତିକ ବ୍ୟବସ୍ଥାର ବୈଧତା ଦୃଢ଼ିଭୂତ ହେଉଛି ଏବଂ ଏହାର କାର୍ଯ୍ୟକାରୀ ଶକ୍ତି ବୃଦ୍ଧି ପାଉଛି । ବୁଦ୍ଧଗ୍ରାମର ପରିବର୍ତ୍ତନରେ ଗଣତାନ୍ତ୍ରିକ ରାଜନୀତି ସୃଜନଶୀଳ ଶକ୍ତି

ଭାବେ କାମ କରୁଛି । ଗଣତାନ୍ତ୍ରିକ ରାଜନୀତି ଯୋଗୁଁ ଗ୍ରାମର ସାଧାରଣ ଲୋକ କ୍ଷମତାକୁ ଆସି ପାରୁଛନ୍ତି । ସାଧାରଣ ଲୋକ କ୍ଷମତାକୁ ଆସିବା ଯୋଗୁଁ ସେମାନଙ୍କର ଦାୟିତ୍ୱବୋଧ ବୃଦ୍ଧି ପାଉଛି । ସେମାନେ ଶାସନ ପ୍ରକ୍ରିୟାର ସୁବିଧା ଅସୁବିଧା ବୁଝି ପାରୁଛନ୍ତି । ଗ୍ରାମ ଶାସନ ପ୍ରତି ବିରୋଧ ଭାବ ହ୍ରାସ ପାଉଛି । ଯାହା ପ୍ରତି ସମର୍ଥନ ରହୁଛି,ସେ କ୍ଷମତା ବଳୟ ଭିତରକୁ ଆସି ପାରୁଛି । ଏତଦ୍ୱାରା ଗ୍ରାମରେ ବିଭିନ୍ନ କ୍ଷମତାସୀନ ଗୋଷ୍ଠୀ ଓ କ୍ଷମତା ବଳୟ ବାହାରେ ରହିଥିବା ଗୋଷ୍ଠୀ ପରସ୍ପରର ଦୃଷ୍ଟିକୋଣ ପସନ୍ଦ କରି ପାରୁଛନ୍ତି ଏବଂ ଗ୍ରାମରେ ଜନ ସହଯୋଗ ବୃଦ୍ଧି ପାଉଚି । ସଙ୍ଘର୍ଷ ପରିବର୍ତ୍ତେ ସହଯୋଗର ବାତାବରଣ ସୃଷ୍ଟି ହେଉଛି । ଏହା ଫଳରେ ଲୋକ ଶକ୍ତିର ଅଭ୍ୟୁଦୟ ଘଟିଛି । ଏହି ବ୍ୟବସ୍ଥା ବୁଦ୍ଧଗ୍ରାମର ପଡ଼ୋଶୀ ଗ୍ରାମ ନାଗମୁଣ୍ଡଳି, ମାନପୁର, କାଳିକାପ୍ରସାଦ, ବୁଦ୍ଧଗିରି, ଗମେଇ, ଗମ୍ଭାରିଡ଼ିହ, ଘୁଆଁଣିଆଁ, ଆଙ୍ଗସିଙ୍ଗ, ବଡ଼ଗୋରଡ଼ା, ସାନଗୋରଡ଼ା, ପାଟୁଳିସାହିକୁ ପ୍ରସାର କରିଛି ।

ବୁଦ୍ଧଗ୍ରାମର ପରିବେଶ ଆନ୍ଦୋଳନରେ ସାମାଜିକ ବନୀକରଣ ପାଇଁ ଯେଉଁ ଉଦ୍ୟମ ଚାଲିଛି, ତାହା ୬ଟି ସଂସ୍ଥାର ସହଯୋଗରେ ସମ୍ଭବ ହୋଇ ପାରିଛି । ସେଗୁଡ଼ିକ ହେଲା : ଜନସାଧାରଣ, ଗ୍ରାମ ନେତା, ସାମାଜିକ ନେତା, ସ୍ୱେଚ୍ଛାସେବୀ ଅନୁଷ୍ଠାନ, ସରକାରୀ ବିଭାଗ ଓ ରାଜନୀତି ନେତୃବୃନ୍ଦ ।

ଏ ସମସ୍ତ ପ୍ରଚେଷ୍ଟା ପଛରେ ଗୋଟିଏ ଶକ୍ତି ରହିଛି । ତାହା ହେଲା ଲୋକ ଶକ୍ତି । ବୁଦ୍ଧଗ୍ରାମର ଆନ୍ଦୋଳନର ସଫଳତା ପାଇଁ ଜନସାଧାରଣଙ୍କ ତ୍ୟାଗ ସର୍ବାଧିକ । ଦ୍ୱିତୀୟରେ, ଗ୍ରାମନେତାମାନଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ସେମାନେ ଜନ ସାଧାରଣଙ୍କ ମଧ୍ୟରୁ ଆସନ୍ତି ଓ ଲୋକମାନଙ୍କ ଭିତରେ ରହି କାର୍ଯ୍ୟ କରନ୍ତି । ଗ୍ରାମ ପରିଚାଳନା ଓ ପ୍ରଗତିର ଭାର ସୋମାନେ ବହନ କରନ୍ତି । ସେମାନଙ୍କୁ ବହୁ ଝଡ଼ ଝଞ୍ଜାର ସମ୍ମୁଖୀନ ହେବାକୁ ପଡ଼େ । ସାମାଜିକ ନେତୃବୃନ୍ଦ ହେଉଛନ୍ତି ତୃତୀୟ ଶକ୍ତି । ଏମାନଙ୍କ ଜୀବନର ବ୍ରତ ହେଉଛି ଜନସେବା । ନୂତନ ଚିନ୍ତା ଓ ନିଜର ରଚନାତ୍ମକ କାର୍ଯ୍ୟ ଦ୍ୱାରା ଜନଶକ୍ତିକୁ କ୍ରିୟାଶୀଳ କରନ୍ତି ଓ ଜନମାନସକୁ ଉନ୍ନତ ସ୍ତରକୁ ଆଣନ୍ତି । ଜନସାଧାରଣଙ୍କ ପାଇଁ ଚିରନ୍ତନ ପ୍ରେରଣାର ଉତ୍ସ ହୋଇ ରହନ୍ତି । ଏମାନଙ୍କର ଉତ୍ସାହ, ଉଦ୍ଦୀପନା ଆନ୍ଦୋଳନକୁ ଗତିଶୀଳ କରାଏ । ଆନ୍ଦୋଳନରୁ ଅନୁଭୂତ ହୋଇଛି ଯେ କେହି ଏକାଧାରରେ ପ୍ରେରଣାର ଉତ୍ସ ନୁହନ୍ତି । ସମୟ ସମୟରେ ଦେଖାଯାଇଛି ଯେ, ଯେତେବେଳେ ସାମାଜିକ ନେତୃବୃନ୍ଦଙ୍କର ଉତ୍ସାହ ଭାଙ୍ଗି ଯାଇଛି ଓ ସାହସ ହରାଇଛନ୍ତି, ସେହି ସଙ୍କଟଜନକ ମୁହୂର୍ତ୍ତରେ ଜନସାଧାରଣ ଆଗେଇ ଆସି ବାଟ ଦେଖାନ୍ତି ଓ ସାମାଜିକ ନେତୃବୃନ୍ଦଙ୍କର ପ୍ରେରଣାର ଉତ୍ସ ହୁଅନ୍ତି ।

ବୃକ୍ଷଗ୍ରାମ ପରିବେଶ ଆନ୍ଦୋଳନରେ ଶିକ୍ଷକମାନେ (ପ୍ରାଥମିକ ସ୍କୁଲରୁ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ) ନେତୃତ୍ୱ ନେଇଛନ୍ତି । ସେମାନେ ଓ କେତେକ କୃଷକ ସାମାଜିକ ନେତା ଭାବରେ କାର୍ଯ୍ୟ କରୁଛନ୍ତି । ଭାରତର ପ୍ରାୟ ପ୍ରତି ଗ୍ରାମରେ ସ୍କୁଲ୍ ରହିଛି । ସ୍କୁଲ ଶିକ୍ଷକମାନଙ୍କୁ ରବିବାର ଓ ଅନ୍ୟାନ୍ୟ ଛୁଟି ଦିବସମାନଙ୍କରେ (ଦଶହରା, ଖରାଛୁଟି) ଅବସରରେ ମିଳେ । ସେମାନେ ଯଦି ସେହି ସମୟରେ ଜନସାଧାରଣଙ୍କୁ ସଂଗଠିତ କରି ଦେଶ ଗଠନ କାର୍ଯ୍ୟରେ ବ୍ରତୀ ହୁଅନ୍ତେ, ତାହାହେଲେ ଦେଶର ଭାଗ୍ୟ ବଦଳି ଯାଆନ୍ତା । କେତେକ ଶିକ୍ଷକଙ୍କର ସୀମିତ ଦୃଷ୍ଟିକୋଣ ଯୋଗୁ ଆନ୍ଦୋଳନର ଅଗ୍ରଦୂତମାନଙ୍କୁ ଦୁଃଖଭୋଗ କରିବାକୁ ପଡ଼ିଛି । କେତେକଙ୍କର ଈର୍ଷା, ଦ୍ୱେଷ, ଅସୂୟା, ଅନ୍ଦୋଳନର ସାରଥିମାନଙ୍କ ପ୍ରାଣରେ ଗଭୀର ଆଘାତ ଦେଇଛି । ସେମାନଙ୍କର ଈର୍ଷାର ସୃଷ୍ଟି ଅଜ୍ଞତାରୁ ।

ସ୍ୱେଚ୍ଛାସେବୀ ସଂସ୍ଥାମାନେ ଚତୁର୍ଥ ଶକ୍ତି ଭାବେ କାର୍ଯ୍ୟ କରିଛନ୍ତି । କଲେଜମାନଙ୍କର ଜାତୀୟ ସେବା ସଂସ୍ଥା ଏହି ଆନ୍ଦୋଳନକୁ ଦୃଢ଼ୀଭୂତ କରିବାରେ ସାହାଯ୍ୟ କରିଛନ୍ତି ।

ସରକାରଙ୍କ ପରିବେଶ ବିଭାଗ, ବନ ବିଭାଗ, ରାଜସ୍ୱ ବିଭାଗ ଆଦିଙ୍କର ପରାମର୍ଶ, ସାହାଯ୍ୟ, ସହଯୋଗ ଆନ୍ଦୋଳନକୁ ଏତେବାଟ ଆଗେଇ ଆଣିବାରେ ସାହାଯ୍ୟ କରିଛି ।

ରାଜନୀତିକ ନେତାମାନେ ଏହି ଆନ୍ଦୋଳନରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିନାହାନ୍ତି । କେତେକ ରାଜ୍ୟସ୍ତରୀୟ ନେତା ଏହି ଆନ୍ଦୋଳନର ଅଗ୍ରଗତିରେ ଘୋର ପ୍ରତିବନ୍ଧକ ସୃଷ୍ଟି କରିଛନ୍ତି । ସେମାନେ ଦଳୀୟ ସଂକୀର୍ଣ୍ଣ ଦୃଷ୍ଟିକୋଣରୁ ଆନ୍ଦୋଳନର ପୁରୋଧମାନଙ୍କୁ ବିଚାର କରିଛନ୍ତି ଏବଂ ସେମାନଙ୍କୁ ନିଜର ରାଜନୀତିକ ପ୍ରତିଦ୍ୱନ୍ଦ୍ୱୀ ରୂପେ ଦେଖିଛନ୍ତି । ସମାଜସେବାକୁ ସେମାନେ କ୍ଷମତା-ରାଜନୀତିକ ଚିତ୍ର ଦେଇଛନ୍ତି । ଯେଉଁମାନେ ଜୀବନରେ ନିଃସ୍ୱାର୍ଥପର ସେବାକରି ନାହାନ୍ତି, କେତେକ ଲୋକ ଯେ ନିଃସ୍ୱାର୍ଥପର ସେବା କରନ୍ତି, ତାହା ସେମାନେ ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହନ୍ତି ।

ବୃକ୍ଷଗ୍ରାମ ପରିବେଶ ଆନ୍ଦୋଳନରେ ନିମ୍ନଲିଖିତ ପଦ୍ଧତି (ଟେକ୍‌ନିକ୍)ଗୁଡ଼ିକର ପ୍ରୟୋଗ କରାଯାଇଛି ।

ପ୍ରଥମରେ, ଗାଁ ଗାଁ ବୁଲି ଲୋକଙ୍କୁ ଜଙ୍ଗଲ, ଗଛର ଉପକାରିତା ସମ୍ପର୍କରେ ସଚେତନ କରାଯାଇଛି ।

ଦ୍ୱିତୀୟରେ, ସ୍ୱେଚ୍ଛାସେବୀମାନେ ପଦଯାତ୍ରା ମାଧ୍ୟମରେ ଲୋକମାନଙ୍କୁ ବୁଝାନ୍ତି । କେତେବେଳେ ଜଣେ ପଦଯାତ୍ରୀ ତ କେତେବେଳେ ୧୫ ଜଣ,

କେତେବେଳେ ୭୫ ଜଣ । ଗୋଟିଏ ଦିନରେ ୮ରୁ ୧୦ଟି ଗ୍ରାମ ପଦଯାତ୍ରୀ ଦଳ ଅତିକ୍ରମ କରନ୍ତି । ସବୁଠାରୁ ଆକର୍ଷଣୀୟ ଆୟୁଧ ହେଉଛି ପଦଯାତ୍ରା । ଗ୍ରାମବାସୀ ଓ ପଦଯାତ୍ରୀଙ୍କ ଉପରେ ଏହାର ନାଟକୀୟ ପ୍ରଭାବ ପରିଲକ୍ଷିତ ହୁଏ । ଗ୍ରାମବାସୀମାନେ ଆନ୍ଦୋଳନର ମହତ୍ ଉଦ୍ଦେଶ୍ୟ ହୃଦୟଙ୍ଗମ କରି, ପଦଯାତ୍ରୀମାନଙ୍କର ଖାଇବା ପିଇବାର ଦାୟିତ୍ୱ ନେଇଥାନ୍ତି ।

ତୃତୀୟରେ, ୧୦/୧୨ ଖଣ୍ଡ ଗ୍ରାମର ପ୍ରତିନିଧିମାନଙ୍କୁ ନେଇ କର୍ମଶାଳା କରାଯାଏ । ଏଥିରେ ପ୍ରତିନିଧି ଓ ସ୍ୱେଚ୍ଛାସେବୀମାନଙ୍କ ମଧ୍ୟରେ ଚିନ୍ତା ଓ ଭାବର ଆଦାନପ୍ରଦାନ ହୁଏ । ଏହା ସହଯୋଗ ସୃଷ୍ଟି କରିବାରେ ସହାୟକ ହୁଏ ।

ଚତୁର୍ଥରେ କୌଣସି ଗ୍ରାମରେ ଲୋକେ ଜଙ୍ଗଲ ନଷ୍ଟକଲେ, ଖବର ପାଇଲା ପରେ, ସ୍ୱେଚ୍ଛାସେବୀମାନେ ଓ ସ୍କୁଲର ଛାତ୍ରଛାତ୍ରୀ ଏବଂ ଶିକ୍ଷକମାନେ ସେ ଗ୍ରାମର ଦାଣ୍ଡରେ ଶୋଇରହନ୍ତି । ଏଥିରେ ଗ୍ରାମର ଶିଶୁ ଓ ମହିଳାମାନେ ବିଶେଷ ଭାବରେ ପ୍ରଭାବିତ ହୁଅନ୍ତି ଓ ପୁରୁଷମାନଙ୍କ ଉପରେ ନୈତିକ ଚାପ ପକାନ୍ତି ।

ପଞ୍ଚମରେ, ଉପରୋକ୍ତ ସମସ୍ତ ଅସ୍ତ୍ର କାଟୁ ନ କଲାପରେ ସ୍ୱେଚ୍ଛାସେବୀମାନେ ଅନଶନ କରନ୍ତି । ଲେଖକ ୧୦ଟି ଗ୍ରାମରେ (ବୁଦ୍ଧଗ୍ରାମ, ବଡ଼କୁଟୁଣୀ, ବଡ଼ଗୋରଡ଼ା, ଡିମିଶ୍ର, ଶିଖରପୁର, ଶଙ୍ଖେଇ, ରାଜପାଟଣା, ଗୋଡ଼ିପଡ଼ା, ଗୋଲଗାଁ, ଆଦି) ତିନିଦିନିଆ ଅନଶନ କରିଛି । ଅନଶନବେଳେ ଗ୍ରାମର ଭାଗବତ ଘରେ ରହେ ଓ ଦିନକୁ ସକାଳ ଓଳି ଗୋଟିଏ ଗ୍ଲାସ ଓ ଉପର ଓଳି ଗୋଟିଏ ଗ୍ଲାସ ଲେମ୍ବୁରସ ମିଶାଇ ଗୁଡ଼ ପଣା ପିଏ । ଦିନିକିଆ ଅନଶନ କେତେକ ଗ୍ରାମରେ କରିଛି । ବୁଦ୍ଧଗ୍ରାମରେ ଥରେ ଅନଶନ କଲାବେଳେ ଜଣେ ବୃଦ୍ଧ ଆସି ଲେଖକ ପାଖରେ ଅଶ୍ରୁପାତ କଲେ ଓ କହିଲେ 'ପୁଅ ! କାହିଁକି ଉପବାସରେ ରହିଛ ? ଲୋକମାନେ କ'ଣ ତୁମ ଦୁଃଖ ବୁଝିବେ ?' ଡିମିଶର ୪ ହଜାର ଲୋକସଂଖ୍ୟା ବିଶିଷ୍ଟ ଏକ ବଡ଼ ଗ୍ରାମ । ସେ ଗ୍ରାମରେ ଉଚ୍ଚ ବିଦ୍ୟାପୀଠ ନଥିଲା । ଲେଖକ ତିନିଦିନ ଅନଶନ କରିଥିଲେ । ଭାଗବତ ଘରେ ଲେଖକ ବାସ କରୁଥିଲା । ଗୋଟିଏ ୮ ବର୍ଷର ପିଲା ଓ ଗୋଟିଏ ୬ ବର୍ଷର ପିଲା ଲେଖକ ପାଖରେ ଥାନ୍ତି । ସେମାନଙ୍କର ଗୋଟିଏ ୧୦ ବର୍ଷରୁ ବଡ଼ ଭାଇ ଥାଏ । ଲେଖକ ମଝିଆ ଭାଇକୁ ପଚାରିଲା ତୁମ ବଡ଼ ଭାଇକୁ କିଏ ସବୁଠାରୁ ଭଲପାଏ ? ସେ ଉତ୍ତର ଦେଲା, 'ବାପା' । ସାନଭାଇକୁ ଲେଖକ ପଚାରିଲା, 'ତୁମକୁ ସବୁଠାରୁ କିଏ ଅଧିକ ଭଲପାଏ ? ସେ ଉତ୍ତର ଦେଲା 'ମାଆ' । ମଝିଆ ଭାଇକୁ ଲେଖକ ପଚାରିଲା, 'ତୁମକୁ ସବୁଠାରୁ କିଏ ଅଧିକ ଭଲପାଏ ?' ସେ କହିଲା, 'ଅଜା' । ସେ ଦୁଇଟି ପିଲାଙ୍କ ପାଖରେ ଲେଖକର କେତେକ ଅନ୍ତରଙ୍ଗ ମୁହୂର୍ତ୍ତ

କଟିଲା । ରାତି ୯ଟାରେ ସାନପୁଅ, ମାଆ ପାଖରେ ଶୋଇଥିବାବେଳେ କହିଲା, 'ମାଆ, ଯେଉଁ ବାବୁ ଭାଗବତ ଘରେ ଅଛନ୍ତି, ମୁଁ ତାଙ୍କ ପାଖରେ ରାତିରେ ଶୋଇବି । ଲେଖକ ଏ କଥା ଯେତେବେଳେ ପ୍ରଫେସର ବିଧୁଭୂଷଣ ଦାସ (ପ୍ରାକ୍ତନ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଓ ପ୍ରାକ୍ତନ ଶିକ୍ଷାବିଭାଗ ଡାଇରେକ୍ଟର)ଙ୍କୁ କହିଲା, ସେତେବେଳେ ସେ କହିଲେ, 'ଏହା ହିଁ ସର୍ବଶ୍ରେଷ୍ଠ ଆନନ୍ଦ' (**Quintessence**) । ଏ ଅନଶନରେ ଗ୍ରାମବାସୀ ଉଦ୍‌ବୁଦ୍ଧ ହୋଇ ଗ୍ରାମରେ ଉଚ୍ଚ ବିଦ୍ୟାପୀଠ ପ୍ରତିଷ୍ଠା କରିଥିଲେ । ଅନଶନର ପ୍ରଭାବ ସୁଦୂରପ୍ରସାରୀ ହୋଇଛି ।

ବୁଦ୍ଧଗ୍ରାମ ପରିବେଶ ଆନ୍ଦୋଳନ ୧୯୬୯ ମସିହାରୁ ଆରମ୍ଭ ହୋଇ ୧୯୮୯ରେ ୨୦ ବର୍ଷ ପୂର୍ତ୍ତି ହେବାକୁ ଯାଉଛି । ଆନ୍ଦୋଳନ ବହୁ ଉତ୍‌ଥାନ ପତନ ମଧ୍ୟରେ ଗତି କରି ଆସିଛି । ଆନ୍ଦୋଳନକୁ ବରାବର ସ୍ୱାର୍ଥାନ୍ଧ, ସଂକୀର୍ଣ୍ଣମନା ଓ ପ୍ରତିକ୍ରିୟାଶୀଳ ଶକ୍ତିମାନର ସମ୍ମୁଖୀନ ହେବାକୁ ପଡ଼ିଛି । ସାମାଜିକ ନେତୃବୃନ୍ଦଙ୍କର ଉଦ୍ଦେଶ୍ୟକୁ କେତେକ ଲୋକ ସର୍ବଦା ସନ୍ଦେହ ଚକ୍ଷୁରେ ଦେଖୁଛନ୍ତି । କ୍ଷମତା ଓ ଅର୍ଥ ପଛରେ ଏମାନେ ଦୌଡ଼ୁଛନ୍ତି ବୋଲି ଅଭିଯୋଗ ହୋଇଛି । ସେମାନଙ୍କୁ ବ୍ୟଙ୍ଗବିଦ୍ରୂପ, ତାଚ୍ଛଲ୍ୟର ଶୀକାର ହେବାକୁ ପଡ଼ିଛି । ଏଥିପାଇଁ ସମାଜସେବୀମାନଙ୍କୁ ବହୁ ଦୁଃଖ ମିଳିଛି । ଅହରହ ବିଷପାନ କରିବାକୁ ପଡ଼ିଛି । ସମୟେ ସମୟେ ବିନିଦ୍ର ରଜନୀ କଟାଇଛନ୍ତି । ନୀରବରେ ଅଶ୍ରୁପାତ କରିଛନ୍ତି । ସେମାନେ ପ୍ରତିଶୋଧର ଚିନ୍ତା ମନରୁ ପରିହାର କରିଛନ୍ତି । ଯେଉଁଦିନ ସମାଜସେବୀମାନେ ପ୍ରତିଶୋଧ ନେବାକୁ ବାହାରିବେ ସେଦିନ ଆନ୍ଦୋଳନର ସମାଧି ଘଟିବ । ଏ ଝଡ଼ଝଞ୍ଜା, ଏ ତାଡ଼ନା ସମସ୍ତେ ସହ୍ୟ କରିପାରିବେ ନାହିଁ । କେବଳ ଈଶ୍ୱର ବିଶ୍ୱାସୀ ବ୍ୟକ୍ତିମାନେ ସହ୍ୟ କରିପାରିବେ । ବୁଦ୍ଧଗ୍ରାମ ଆନ୍ଦୋଳନର ସାରଥୀମାନେ ବିଶ୍ୱାସ କରନ୍ତି ଯେ, ଦୁଃଖୀ, ଦରିଦ୍ରଙ୍କର ସେବା ହିଁ ଈଶ୍ୱର ସେବା । ଏହି ବିଶ୍ୱାସ ସେମାନଙ୍କର ହୃଦୟରେ ଆଲୋକର ପ୍ରଦୀପ ଜଳାଇ ରଖିଛି । ସେମାନେ ଜଗନ୍ନାଥ ଦାସଙ୍କ ଭାଗବତରେ ବାର୍ତ୍ତାରେ ବିଶ୍ୱାସ ରଖନ୍ତି ।

"ପ୍ରାଣୀର ଦୁଃଖରେ ଦୁଃଖିତ
ସର୍ବଦା ହେଉ ମୋର ଚିତ୍ତ ।
ହେ ପ୍ରଭୁ ମୋତେ ଦୟାକର
ମୁଁ କରେ ପର ଉପକାର ।"

ଭବିଷ୍ୟତରେ ଆନ୍ଦୋଳନକୁ ବହୁ ବାଧାବିଘ୍ନ ସମ୍ମୁଖୀନ ହେବାକୁ ପଡ଼ିବ । ସ୍ୱାର୍ଥପର ଶିକ୍ଷିତ ବ୍ୟକ୍ତିମାନଙ୍କର ହୃଦୟର କଠିନତାକୁ ନମନୀୟ କରିବା ଆନ୍ଦୋଳନ

ପାଇଁ ଏକ ଆହ୍ୱାନ । ଗ୍ରାମବାସୀଙ୍କର ସମୂହ ସ୍ୱାର୍ଥ ପ୍ରତି ନିସ୍ପୃହତା ସମୂହ ବିକାଶ ପଥରେ ଅନ୍ୟ ଏକ ପ୍ରତିବନ୍ଧକ । ସମୂହ ସ୍ୱାର୍ଥ, ସମାଜସେବା ଓ ଦେଶ ଗଠନ ପ୍ରତି ଶିକ୍ଷିତ ଓ ଅଶିକ୍ଷିତ ଲୋକମାନଙ୍କର ଉଦାସୀନତା ଦେଖିଲେ, ଯେ କୌଣସି ବିବେକୀ ଓ ଚିନ୍ତାଶୀଳ ବ୍ୟକ୍ତିର ଘୋର ନୈରାଶ୍ୟଜନକ ହୁଏ । ଏହି ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇ ଲକ୍ଷ୍ୟ ହାସଲ କରିବା ପାଇଁ ଅସାଧାରଣ ନୈତିକ ମନୋବଳସଂପନ୍ନ ଜନସେବୀମାନଙ୍କର ଆବଶ୍ୟକତା ରହିଛି ।

ଉତ୍କଳ ପ୍ରସଙ୍ଗ, ଅକ୍ଟୋବର ୧୯୮୮

# ଗ୍ରାମେ ଗ୍ରାମେ ପରିବେଶ

ନାରାୟଣ ହଜାରୀ
ସୁବାସ ଚନ୍ଦ୍ର ହଜାରୀ

ପୁରୀ ଜିଲ୍ଲାର ନୟାଗଡ଼ ସବ୍‌ଡିଭିଜନ ଅନ୍ତର୍ଗତ ବୁଦ୍ଧଗ୍ରାମ (କେଶରପୁର)ଠାରେ ଅବସ୍ଥିତ ସ୍ୱେଚ୍ଛାସେବୀ ସଂସ୍ଥା "ବୃକ୍ଷ ଓ ଜୀବର ବନ୍ଧୁ" ଓଡ଼ିଶା ସରକାରଙ୍କର 'ପ୍ରକୃତି ମିତ୍ର', ଭାରତ ସରକାରଙ୍କର 'ବୃକ୍ଷ ମିତ୍ର' ଓ ଜାତିସଂଘର 'ପରିବେଶୀୟ ଗ୍ଲୋବାଲ୍-୫୦୦' ପୁରସ୍କାର ପାଇଛି । ଏହ ଅନୁଷ୍ଠାନ ପକ୍ଷରୁ ଜୁନ୍ ୮, ୯, ୧୦ - ୩ ଦିନ ଓଡ଼ଗାଁ ବ୍ଲକ୍‌ର ୧୭ଟି ଗ୍ରାମରେ ଜଙ୍ଗଲ ସୁରକ୍ଷା ଓ ବୃକ୍ଷରୋପଣ ସମ୍ପର୍କରେ ସଚେତନତା ସୃଷ୍ଟି ପାଇଁ ପଦଯାତ୍ରା କରାଯାଇଥିଲା । ଗ୍ରାମଗୁଡ଼ିକ ହେଲା- ଅଖାରିଆ, ଚମ୍ପାପାଣ୍ଡି, ବନ୍ଧସାହି, ଧବଳେଇ, କୁରାଢ଼ିଘଷା, ଟିକରପଲି, ଗଉଡ଼ପୁଟ, ନୂଆବନ୍ଧସାହି, ଗୋଠବଣ, ବୁଢ଼ାବୁଢ଼ିଆଣୀ, ଗଡ଼ଗାଁ, ଲାଣ୍ଡିଗିରି, ନୂଆସାହି, ପୋଡ଼ାସାହି, ଓସ୍ତିଆ, ବାଣ୍ପୁର ଓ ଚେମେଡ଼ି । ଏ ଅଞ୍ଚଳରେ ଧାନବୁଣା ଜୋରସୋରରେ ଲାଗିଥିବାରୁ ଦିନ ୧୧ଟାରୁ ୩ଟା ଓ ୭ଟାରୁ ୧୦ଟା ମଧ୍ୟରେ ସଭାଗୁଡ଼ିକରେ ଲୋକମାନେ ଯୋଗଦେଇ ପାରୁଥିଲେ । ୮ ଜଣ ପଦଯାତ୍ରୀ ସକାଳ ୬ ଘଣ୍ଟା ୩୦ ମିନିଟରୁ ରାତି ୧୧ ଘଣ୍ଟା ଯାଏ ଖରାରେ ଅବିଶ୍ରାନ୍ତ ଝାଳନାଳ ହୋଇ ପଦଯାତ୍ରା କରୁଥିଲେ । ୧୩ ବର୍ଷର ଜଣେ ବାଳକ (ସାଇରାମ) ଏହି ପଦଯାତ୍ରାରେ ଯୋଗଦେଇ ପଦଯାତ୍ରୀମାନଙ୍କର ଉତ୍ସାହ ବର୍ଦ୍ଧନ କରିଥିଲା ।

ଏ ଅଞ୍ଚଳରେ ଗତ ୨ ବର୍ଷ ହେଲା ମରୁଡ଼ି ପଡ଼ିଛି । ଲୋକମାନେ ବୁଝିଥିଲେ ଯେ ବ୍ୟାପକ ଜଙ୍ଗଲ କ୍ଷୟ ଯୋଗୁଁ ଅନାବୃଷ୍ଟି ଘଟୁଛି । ପଦଯାତ୍ରୀବୃନ୍ଦ ବୁଝାଇଥିଲେ ଯେ ଜଙ୍ଗଲ ଆମର ମା' ।

ପଦଯାତ୍ରୀ ଦଳ ଗ୍ରାମମାନଙ୍କରେ ନିମ୍ନଲିଖିତ ସ୍ଲୋଗାନ ଦେଇ ଗ୍ରାମ ପରିକ୍ରମା କରିଥିଲେ -

ବୃକ୍ଷ ଆମର ଜୀବନ ଧନ,
ଯୋଗାଏ ମାଟି, ପାଣି, ପବନ ।
ବୃକ୍ଷ ବିନା ବଞ୍ଚିବା ନାହିଁ,
ବୃକ୍ଷ ଆମର ଜୀବନ ଭାଇ ।
ଜଙ୍ଗଲ ଆମର ଧନ ସମ୍ପଦ,
ତାକୁ ଧ୍ୱଂସ କଲେ ଆସେ ବିପଦ ।
ଜଙ୍ଗଲ ହୋଇଲେ ଶେଷ,
ହୋଇବ ନାହିଁ ଆଉ ଚାଷ ।
ବଣ ପଶୁପକ୍ଷୀ ଆମର ସାଥି,
ତାଙ୍କ ସୁରକ୍ଷାରେ ଯିବାରେ ମାତି ।
ସ୍ଲୋଗାନ ଦ୍ୱାରା ଲୋକମାନେ ଆକର୍ଷିତ ହେଉଥିଲେ ।

ପଦଯାତ୍ରୀ ଦଳ ଲୋକମାନଙ୍କୁ ନିମ୍ନଲିଖିତମତେ ବୁଝାଇଥିଲେ । ଗଛ, ପବନ, ପାଣି ଓ ମାଟି ଦିଏ । ତା'ଛଡ଼ା ଖାଦ୍ୟ, ବସ୍ତ୍ର, ବାସଗୃହ ଉପକରଣ,ଗୋ ଖାଦ୍ୟ, ଔଷଧ, ଛାଇ ଦିଏ । ଅମ୍ଳଜାନ ଦିଏ । ଗଛ ବର୍ଷା କରାଏ । ମେଘର ଜଳୀୟ ବାଷ୍ପ ଜଙ୍ଗଲ ଉପର ଦେଇ ଗଲାବେଳେ ଗଛମାନଙ୍କର ଶୀତଳତା ପାଇ ଘନୀଭୂତ ହୋଇ ବର୍ଷା କରାଏ । ଗଛମାନଙ୍କରୁ ମଧ୍ୟ ଜଳୀୟ ବାଷ୍ପ ନିର୍ଗତ ହୋଇ ବର୍ଷା ହୁଏ । ପାହାଡ଼ରେ ଗଛ ଥିଲେ ତା' ଉପରେ ପତ୍ରର ଶଯ୍ୟା ବିଛାଇ ହୋଇଥାଏ । ପାଣି ପତ୍ର ଶଯ୍ୟା ଉପରେ ରହି କ୍ରମେ ମାଟିରେ ଭେଦେ । ଏହି ପାଣି ବର୍ଷସାରା ନିର୍ଗତ ହୁଏ । ବର୍ଷା ଜଳ ଗଛ ଆହରଣ କରି ବର୍ଷସାରା ପର୍ଯ୍ୟାୟ କ୍ରମେ ଏହିଜଳକୁ ଛାଡ଼େ । ଏଥିରୁ ଝରଣା ଓ ଚିରସ୍ରୋତା ନଦୀ ସୃଷ୍ଟି ।

ପାହାଡ଼ରେ ଗଛ ଥିଲେ ବର୍ଷା ପାଣି ପତ୍ର ଶଯ୍ୟା ଓ ଗଛମାନଙ୍କ ଉପରେ ପଡ଼େ । ତା'ଫଳରେ ମାଟି ଧୋଇ ହୁଏ ନାହିଁ । ପାହାଡ଼ରେ ଗଛ ନଥିଲେ, ବର୍ଷାରେ ମାଟି ଧୋଇ ହୋଇ ନଦୀର ଶଯ୍ୟାର ପତନ ଉପରକୁ ଉଠି ଆସେ ଓ ବଢ଼ି ସୃଷ୍ଟି ହୁଏ । ଜଳ ବିଦ୍ୟୁତ୍ ପ୍ରକଳ୍ପର ଜଳ ଭଣ୍ଡାର ପୋତି ହୋଇ ପଡ଼େ, ଜଳ ଭଣ୍ଡାରରୁ ପାଣି କମିଯାଏ । ଏହା ଫଳରେ ବିଜୁଳି ଉତ୍ପାଦନ କମିଯାଏ । ବର୍ତ୍ତମାନ ହୀରାକୁଦ, ମାଛକୁଣ୍ଡ ଓ ବାଲିମେଳାଠାରେ ଏହା ହୋଇଛି । ତେଣୁ ବିଜୁଳିକାଟ ହେଉଛି । ବିଜୁଳିକାଟ ଯୋଗୁ ଚାରିଆଡ଼େ ଅସନ୍ତୋଷ ଓ ପ୍ରତିବାଦ ହେଉଛି । କିନ୍ତୁ ପାହାଡ଼ ଓ ଜଙ୍ଗଲରେ ଗଛକଟା ଯୋଗୁ ଯେ ବିଜୁଳି ଉତ୍ପାଦନ ହ୍ରାସ ପାଉଛି ଏ କଥା ଖୁବ୍ କମ୍ ଲୋକ ବୁଝୁଛନ୍ତି ।

ଅନେକ ଯାଗାରେ ଦେଖାଯାଉଛି ଯେ ଜଳର ସ୍ତର କ୍ରମେ ତଳକୁ ଖସି ଯାଉଛି । ଏହା ଫଳରେ ନଳ କୂଅରେ ପାଣି ଆସୁ ନାହିଁ । ଓସ୍ତିଆ ଗ୍ରାମରେ ଏହା ଦେଖିଲୁ । କୂଅରେ ପାଣି ରହୁ ନାହିଁ । ପୋଖରୀରେ ପାଣି ଶୁଖି ଯାଉଛି । ଜଳର ସ୍ତର ଉପରକୁ ଉଠାଇବାକୁ ମାତ୍ର ଗୋଟିଏ ବାଟ ରହିଛି । ତାହା ହେଉଛି – ବୃକ୍ଷ ରୋପଣ ଓ ତାର ସଂରକ୍ଷଣ। ଗଛ ନିଜେ ବଞ୍ଚିବା ପାଇଁ ତାର ମୂଳ ପର୍ଯ୍ୟନ୍ତ ପାଣି ଆଣି ସଞ୍ଚିରଖେ ।

ଜଳ ସ୍ତର ଉପରକୁ ଉଠାଇବା ପାଇଁ ଜଙ୍ଗଲ ସଂରକ୍ଷଣ ଓ ବୃକ୍ଷ ସଂରକ୍ଷଣ ଅପରିହାର୍ଯ୍ୟ ।

ଓଡ଼ିଶାରେ ୧୯୦୦ରୁ ୧୯୫୦ ମସିହା ପର୍ଯ୍ୟନ୍ତ ହାରାହାରି ବୃଷ୍ଟିପାତ ଥିଲା ୬୦ ଇଞ୍ଚ; କିନ୍ତୁ ୧୯୫୦ ରୁ ୧୯୮୮ ମଧ୍ୟରେ ହାରାହାରି ବୃଷ୍ଟିପାତ ୫୦ ଇଞ୍ଚକୁ ଖସି ଆସିଲାଣି । କ୍ରମେ ଏହା ଆହୁରି କମିଯିବ ଓ ଧାନ ଚାଷ ହୋଇପାରିବ ନାହିଁ ବୋଲି ବୈଜ୍ଞାନିକମାନେ ସତର୍କ ଘଣ୍ଟି ବଜାଇଲେଣି ।

ରତ୍ନମାଳା ପର୍ବତର ପାଦ ଦେଶରେ ଓ ମଧ୍ୟରେ ଥିବା ଗ୍ରାମ ସବୁ ପଦଯାତ୍ରାରେ ଅନ୍ତର୍ଭୂତ ହୋଇଥିଲା । କେତେକ ଜାଗାରେ ଦେଖା ଯାଇଥିଲା ଯେ ପାହାଡ଼ରୁ ମୂଳ ଉପୁଡ଼ା ହୋଇ ଚାଲି ଯାଉଛି । ଥରେ ମୂଳ ଚାଲିଗଲେ, ପାହାଡ଼ରେ କେବଳ ମାଟି ଓ ପଥର ରହିବ । ବର୍ଷାରେ ଉପର ମାଟି ଧୋଇ ହୋଇଯିବ । ଉପର ମାଟିକୁ ସରମାଟି କୁହାଯାଏ । ୧ ଇଞ୍ଚ ବହଳର ମାଟି ସୃଷ୍ଟି ହେବାକୁ ୬୦୦ ବର୍ଷ ଲଗେ । ଜମିର ଉପର ୨ ଇଞ୍ଚ ସରମାଟିରେ ହିଁ ଧାନ, ଗହମ, ମୁଗ ଆଦି ଫସଲ ହୁଏ । ଏହିସରମାଟି ପତ୍ରରୁ ସୃଷ୍ଟି । ସରମାଟି ଚାଲିଗଲେ ଗଛ ଲଗାଇବା ତାହା ସମ୍ଭବ ନୁହେଁ । ଜାପାନରେ ଲଣ୍ଡା ପାହାଡ଼ମାନଙ୍କରେ ଗଛ ଲଗାଯାଉଛି। ସରମାଟି ଚାଲିଯାଉଥିବାରୁ ତଳୁ ମାଟି ନେଇ ପାହାଡ଼ ଉପରେ ପକା ଯାଉଛି । ତଳୁ ପାହାଡ଼ ଉପରକୁ ପାଇପ୍ ସାହାଯ୍ୟରେ ପାଣି ନିଆଯାଇ ଗଛ ବଞ୍ଚା ଯାଉଛି ।ଏହା ଏତେ ବ୍ୟୟବହୁଳ ଯେ ଭାରତ ପରି ଗରିବ ଦେଶରେ କରିବା ଅସମ୍ଭବ । ତେଣୁ ପଦଯାତ୍ରୀ ଦଳ ବାରମ୍ବାର ଗୋଟିଏ କଥା ଉପରେ ଗୁରୁତ୍ୱ ଦେଉଥିଲେ । ମୂଳ ଥାଉଥାଉ ଜଙ୍ଗଲ ସଂରକ୍ଷଣ କର ।

ଜୁନ୍ ୮ ତାରିଖ ଅପରାହ୍ନରେ ପଦଯାତ୍ରା ଆରମ୍ଭ ହୋଇଥିଲା । ୨୧ଟି ପରିବାର ବିଶିଷ୍ଟ ଅଖାରିଆ ଗ୍ରାମ ପଦଯାତ୍ରାର ପ୍ରଥମ ଗ୍ରାମ ଥିଲା । ସଭାରେ ୪୦ ଜଣ ଲୋକ ଯୋଗ ଦେଇଥିଲେ । ଗ୍ରାମ ନିକଟରେ ଥିବା ଦୁଆଣ୍ଡ ନଦୀର ଉଭୟ ପାର୍ଶ୍ୱରେ, ପୋଖରୀ ହୁଡ଼ାରେ, ପଡ଼ିଆରେ ବୃକ୍ଷ ରୋପଣ କରି ତାର ସଂରକ୍ଷଣ

କରିବାକୁ ପଦଯାତ୍ରୀବୃନ୍ଦ ଗ୍ରାମବାସୀଙ୍କୁ ଆହ୍ୱାନ ଦେଇଥିଲେ । ୩୦ଟି ଘର ବିଶିଷ୍ଟ ଚମ୍ପାପାଣ୍ଡି ଗ୍ରାମରେ ସେ ଦିନ ରାତି ୯ଟାରେ ସଭା ହୋଇଥିଲା । ପ୍ରାୟ ୩୦ ଜଣ ବ୍ୟକ୍ତି ସଭାରେ ଯୋଗ ଦେଇଥିଲେ ।

ଜୁନ୍ ୯ ତାରିଖରେ ପଦଯାତ୍ରୀ ଦଳ ୨୦ କି.ମି. ପଦଯାତ୍ରା କରିଥିଲେ । ବନ୍ଧସାହି ଗ୍ରାମ ଦେଇ ଯାଉଥିବା ବେଳେ ଧାନ ବୁଣୁଥିବା ଜଣେ ଚାଷୀ ଆମକୁ ପଚାରିଲେ : "ଆପଣମାନେ କଂଗ୍ରେସ ନା ଜନତା ଦଳର ପ୍ରଚାର କରୁଛନ୍ତି ?" ଏଥିରେ ଆମେ ବିସ୍ମିତ ହୋଇଯାଇଥିଲୁ । ସବୁ କଥା ଯେ ସ୍ୱାର୍ଥ ପାଇଁ ଓ ରାଜନୀତି ପାଇଁ ହେଉଛି ତାହା ଲୋକମାନେ ଭାବୁଥିବା କଥା ଏଥିରୁ ସୂଚିତ ହେଉଥିଲା ।

୨୫ଟି ଘର ବିଶିଷ୍ଟ ଧବଳେଇ ଗ୍ରାମରେ ପୂର୍ବାହ୍ନ ୯ଟାରେ ସଭା ବସିଥିଲା । ଲୋକମାନେ ଧାନ ବୁଣାରେ ଲାଗିଥିବା ଯୋଗୁ ମାତ୍ର ୮ ଜଣ ସଭାରେ ଯୋଗ ଦେଇଥିଲେ । ତାପରେ ୨୨ଟି ପରିବାର ବିଶିଷ୍ଟ କୁରାଢ଼ିଘଷା ଗ୍ରାମରେ ଦିନ ୧୧ଟାରେ ସଭା ହୋଇଥିଲା । ପାର୍ଶ୍ୱବର୍ତ୍ତୀ ଜଙ୍ଗଲର ସଂରକ୍ଷଣ କରିବାକୁ ଗ୍ରାମବାସୀ ନିଷ୍ପତ୍ତି ନେଇଥିଲେ । ରଣପୁରରୁ ଓଡ଼ଗାଁ ପର୍ଯ୍ୟନ୍ତ ବିସ୍ତୃତ ରତ୍ନମାଳା ପର୍ବତର ଉତ୍ତର ଓ ଦକ୍ଷିଣରେ ଯଥାକ୍ରମେ ନୟାଗଡ଼ ଓ ବାଣପୁର ଅଞ୍ଚଳ ଅବସ୍ଥିତ । ଶହଶହ ଗ୍ରାମ ଏହି ପର୍ବତର ପାଦ ଦେଶରେ ଅବସ୍ଥିତ । ପଦଯାତ୍ରୀ ଦଳ ବୁଝାଇଥିଲେ ଯେ, ଯଦି ଶହଶହ ଗ୍ରାମ ସଂଗଠିତ ହୋଇ ଜଙ୍ଗଲ ସୁରକ୍ଷା କରିପାରୁନାହାନ୍ତି ତେବେ ୨୦ ବା ୨୫ଟି ଗ୍ରାମ ସଙ୍ଘବଦ୍ଧ ହୋଇ ଜଙ୍ଗଲ ସୁରକ୍ଷା କରିବା ଉଚିତ । ଏହି ଗ୍ରାମଠାରୁ ୧୫କି.ମି. ଦୂରରେଥିବା ବୁଦ୍ଧଗିରି ପାହାଡ଼ କିପରି ୨୨ଟି ଗ୍ରାମ ଦ୍ୱାରା ସୁରକ୍ଷିତ ହୋଇଛି, ତାହା ଗ୍ରାମବାସୀଙ୍କ ଆଗରେ ଉପସ୍ଥାପିତ କରାଯାଇଥିଲା । ଏହା ଯଦି ସମ୍ଭବ ନହୁଏ, ଚାରି ବା ପାଞ୍ଚଟି ଗ୍ରାମ ସମ୍ମିଳିତ ହୋଇ ଜଙ୍ଗଲ ସୁରକ୍ଷା କରି ପାରିବେ । ନୟାଗଡ଼ ସବ୍‌ଡ଼ିଭିଜନ୍‌ର ୪ଟି ଗ୍ରାମ ଖଡିଆ, ମହୁଲିଆ, ବେଗୁନିଆପାଟଣା ଓ ଗୋଡ଼ିମଡ଼ା କିପରି ୮୦୦ ଏକର ଶାଳ ଜଙ୍ଗଲ ରକ୍ଷା କରିଛନ୍ତି, ତାହା ମଧ୍ୟ ଗ୍ରାମବାସୀଙ୍କ ସମ୍ମୁଖରେ ଉପସ୍ଥାପନ କରାଯାଇଥିଲା । ଏହା ଯଦି ସମ୍ଭବ ନହୁଏ, ମାତ୍ର ଗୋଟିଏ ଗ୍ରାମ କିପରି ଜଙ୍ଗଲ ସୁରକ୍ଷା କରିପାରୁଛି ତାହା ଉପସ୍ଥାପିତ ହୋଇଥିଲା । ଅନତି ଦୂରରେ ଥିବା ଡମସାହି ଗ୍ରାମବାସୀ କିପରି ଏକାକୀ ୨୦୦୦ ଏକର ଶାଳ ଜଙ୍ଗଲ ଓ ୧୦ ହଜାର ଏକର ଟଣକା ଜଙ୍ଗଲ ସୁରକ୍ଷା କରିଛନ୍ତି ତାର ଦୃଷ୍ଟାନ୍ତ ଲୋକମାନଙ୍କ ଆଗରେ ଉପସ୍ଥାପନ କରାଯାଇଥିଲା । ତାଲାରିବନ୍ଧ ଓ ସାନକୁଟୁଣୀ ଗ୍ରାମବାସୀ ପ୍ରତ୍ୟେକ କିପରି ଜଙ୍ଗଲ ସୁରକ୍ଷା କରିଛନ୍ତି ତାହା ମଧ୍ୟ ଲୋକମାନଙ୍କୁ ବୁଝାଇ ଦିଆଯାଇଥିଲା ।

ବୁଦ୍ଧ ଗ୍ରାମରେ ଠେଙ୍ଗା ପାଳି କରି କିପରି ଜଙ୍ଗଲ ସଂରକ୍ଷଣ ହୋଇ ପାରିଛି ତାହା ବୁଝାଇ ଦିଆଯାଇଥିଲା । ପ୍ରତି ସନ୍ଧ୍ୟାରେ ଦୁଇଟି ପରିବାରର ବାରଣ୍ଡାରେ ଠେଙ୍ଗା ଆଉଯାଇ ରଖାଯାଏ । ତା' ପରଦିନ ସେ ଦୁଇଟି ପରିବାରରୁ ୨ଜଣ ଯାଇ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଜଙ୍ଗଲରେ ବୁଲି ଜଙ୍ଗଲ ସୁରକ୍ଷା କରନ୍ତି ।

ଜଙ୍ଗଲର ସୁରକ୍ଷା କରୁଥିବା ବେଳେ ଅନ୍ୟ ଗ୍ରାମର ଲୋକମାନେ ଆସି ଗଛ କାଟିଲେ କି ଉପାୟରେ ଏ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିବ ବୋଲି ଗ୍ରାମବାସୀ ପ୍ରଶ୍ନ କରିଥିଲେ । 'ବୁଦ୍ଧ ଗ୍ରାମ ପରିବେଶ ଆନ୍ଦୋଳନ'ର କେତେକ ଅନୁସୃତ ପନ୍ଥା ସମ୍ପର୍କରେ ପଦଯାତ୍ରୀବୃନ୍ଦ ସୂଚନା ଦେଇଥିଲେ । ଗୋଟିଏ ପନ୍ଥା ହେଲା, ଯେଉଁ ଗ୍ରାମରେ ଲୋକମାନେ ଗଛ କାଟିବେ ସେ ଗ୍ରାମକୁ ବହୁ ସଂଖ୍ୟାରେ ଯାଇ ଗ୍ରାମବାସୀଙ୍କୁ ବୁଝାଇବା, ସେ ଗ୍ରାମ ଦାଣ୍ଡରେ ଶୋଇ ରହିବା, ଅନଶନ କରିବା ଇତ୍ୟାଦି । 'ଚିପ୍‌କୋ ଆନ୍ଦୋଳନ'ର ପନ୍ଥା ସମ୍ପର୍କରେ ମଧ୍ୟ ଲୋକମାନଙ୍କୁ ଅବହିତ କରାଯାଇଥିଲା । ଗଛ କାଟିବାକୁ ଆସିଲେ, ଗଛକୁ କୁଣ୍ଢାଇ ଧରିବା ଓ କହିବା "ଆମକୁ କାଟିଲେ ଯାଇ ଗଛକୁ କାଟିବ ।"

ତା'ପରେ ୧୩୦ ଘର ବିଶିଷ୍ଟ ହରିଜନ ଗ୍ରାମ ଟିକରପଲ୍ଲୀରେ ଦିବା ୧୨ ଘଣ୍ଟା ୩୦ ମିନିଟରେ ସଭା ହୋଇଥିଲା । ସ୍ଲୋଗାନଗୁଡ଼ିକ ଶୁଣି ଆବାଳ ବୃଦ୍ଧବନିତା ଗ୍ରାମର ଉଭୟ ସାହିର ବାରଣ୍ଡାରେ ଜମା ହୋଇଯାଇଥିଲେ । ଗ୍ରାମ ସଭାରେ ମହିଳାମାନଙ୍କର ଯୋଗଦାନ ପଦଯାତ୍ରୀମାନଙ୍କ ପାଇଁ ଉତ୍ସାହବର୍ଦ୍ଧନକାରୀ ଥିଲା । ପଦଯାତ୍ରାରେ ଦେଖାଯାଇଥିଲା ଯେ ହରିଜନ ଓ ଆଦିବାସୀ ଗ୍ରାମମାନଙ୍କରେ ମହିଳାମାନେ ସଭାରେ ଯୋଗ ଦେଉଥିଲେ । ସବର୍ଣ୍ଣ ଗ୍ରାମମାନଙ୍‌କରେ ଏହା ଦେଖାଯାଉନଥିଲା । ଏ ଦିଗରୁ ହରିଜନ ଓ ଆଦିବାସୀ ମହିଳାମାନେ ସବର୍ଣ୍ଣ ଗ୍ରାମମାନଙ୍କର ମହିଳାମାନଙ୍କଠାରୁ ଆଗୁଆ ଥିଲେ । ସେମାନେ ମୁକ୍ତ ଓ ପ୍ରଗତିଶୀଳ ହେବାର କାରଣ ହେଲା ସେମାନେ ରୋଜଗାର କରନ୍ତି । ତେଣୁ ସେମାନେ ସ୍ୱାବଲମ୍ବୀ ଓ ଆତ୍ମବିଶ୍ୱାସୀ ।

ଏହି ଗ୍ରାମର ଲୋକମାନେ ଅଭିଯୋଗ କରିଥିଲେ ଯେ ପାର୍ଶ୍ୱବର୍ତ୍ତୀ ପୋଗରି ମୁଣ୍ଡିଆ ଓ କୁମୁଣ୍ଡାପାଲ୍ଲୀ ପାହାଡ଼ରେ ସରକାର ଶାଳ ଓ ଖଜୁରୀ ଗଛ କାଟି କାଜୁ ଲାଗାଉଛନ୍ତି । ଚେମୋଡ଼ି ଗ୍ରାମରୁ ନନ୍ଦିଘୋର ଗ୍ରାମକୁ ଫେରିଲା ବେଳକୁ ଦେଖିଲୁ ଯେ ବିସ୍ତୀର୍ଣ୍ଣ ଅଞ୍ଚଳରେ ଯେଉଁଠି ଶାଳ ଗଛ କଟାହୋଇ ଯାଇଛି ସେଠାରେ ସରକାରଙ୍କ ତରଫରୁ କାଜୁ ଲଗାଯାଉଛି । କଟା ହୋଇଥିବା ଶାଳ ଗଛଗୁଡ଼ିକର ମୂଳ ଏପର୍ଯ୍ୟନ୍ତ ରହିଛି । ପିଲ ବାହାରିଛି । ଶାଳ ଗଛବଣକୁ ବନମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ସ୍ଥାନ

ଦିଆଯାଏ । ଶାଳ ପତ୍ରରେ ଖଲି କରି ଲୋକମାନେ ବଞ୍ଚନ୍ତି । ୧ କି: ଗ୍ରା: ଶାଳ ମଞ୍ଜିକୁ ୧ଟଙ୍କା ୨୫ ପଇସାରେ ଲାଣ୍ଡିଗିରି ଗ୍ରାମର ଲୋକମାନେ ସରକାରଙ୍କୁ ବିକୁଥିବାର ଦେଖିଲୁ । ଜଣେ ଲୋକ ୪ଦିନରେ ମାତ୍ର ୧୨ରୁ ୧୫ କେ:ଜି: ଶାଳ ମଞ୍ଜି ଗୋଟାଇବା ସମ୍ଭବ ବୋଲି ଲୋକମାନଙ୍କଠାରୁ ଜାଣିଲୁ। ମହୁଲ ମଞ୍ଜି, କୁସୁମ ମଞ୍ଜି, କରଞ୍ଜ ମଞ୍ଜି କେ:ଜି: ଏକ ଟଙ୍କାରେ ବିକ୍ରି ହେଉଥିବାର ଜାଣିଲୁ । ଶାଳ ମଞ୍ଜିରୁ ତେଲ ବାହାରେ । ଶାଳ ଗଛରୁ ଝୁଣା ବାହାରେ ଯାହା କେ:ଜି: ୪୦ ଟଙ୍କାରୁ ୬୦ ଟଙ୍କାରେ ବିକ୍ରି ହେଉଥିବା ଜାଣିଲୁ । ଶାଳ ଗଛ ସହିତ କାଜୁ ବାଦାମ ଗଛ କୌଣସି ଗୁଣରେ ତୁଳନୀୟ ନୁହେଁ । ତେବେ ସୁଦ୍ଧା ସରକାର ଏହାକୁ କାହିଁକି ଉତ୍ସାହିତ କରୁଛନ୍ତି, ତାର କୌଣସି ଯୁକ୍ତିଯୁକ୍ତ କାରଣ ଆମେ ପାଇଲୁ ନାହିଁ । ଏ ଅଞ୍ଚଳର ଜଣେ ଶାଳ ଜଙ୍ଗଲ ବିଭାଗ କର୍ମଚାରୀଙ୍କଠାରୁ ଜାଣିବାକୁ ପାଇଲୁ ଯେ, ଲୋକମାନେ ଶାଳ ଗଛ କାଟି ନେଉଥିବାରୁ ଓ ଶାଳ ଜଙ୍ଗଲ ରହିବାର ସମ୍ଭାବନା ନଥିବାରୁ, ସରକାର ସେ ଜାଗାରେ କାଜୁ ଲଗାଉଛନ୍ତି । ସରକାରଙ୍କର ମାରାତ୍ମକ ଜଙ୍ଗଲ ନୀତି ପଛରେ ସରକାରୀ କର୍ମଚାରୀ ଓ ରାଜନେତାମାନଙ୍କର ସ୍ୱାର୍ଥ ନିହିତ ରହିଛି । ଗଛ କାଟିବା ପାଇଁ ପଇସାର ଖର୍ଚ୍ଚ ହୁଏ । ଗଛ ଲଗାଇବାରେ ପଇସା ଖର୍ଚ୍ଚ ହୁଏ । ସେଥିରୁ ପଇସା ବାଟମାରଣାର ସୁଯୋଗ ରହେ । ସରକାରଙ୍କର ଅନେକ କାର୍ଯ୍ୟର ଅନ୍ତରାଳରେ ନିହିତ ସ୍ୱାର୍ଥ ରହିଛି । ଏହା ଦେଶର ସ୍ୱାର୍ଥର ପରିପନ୍ଥୀ।

ଏହି ଗ୍ରାମର ଲୋକମାନେ ଖଜୁରି ପତ୍ରରେ ଚାଳ ଛପର କରିଥିବାର ଦେଖିଲୁ । ଲୋକମାନେ କହିଲେ ଯେ ସରକାର ଖଜୁରି ଗଛ କାଟି କାଜୁ ଲଗାଉଛନ୍ତି, ଆମେ ଆଉ କେଉଁଥିରେ ଘର ଛପର କରିବୁ? ଖଜୁରି କୋଳି ବିକି ଆମେ ବଞ୍ଚୁଥିଲୁ । ଆମ ଜୀବିକା ଗଲା । ସରକାରଙ୍କର କେତେକ ନୀତି ଲୋକମାନଙ୍କର ଜୀବିକାର ପରିପନ୍ଥୀ । ଗଣତନ୍ତ୍ରରେ ଏକଥା ସମ୍ଭବ ହେଉଛି, ତା'ର କାରଣ ଲୋକମାନଙ୍କ ହାତରେ କ୍ଷମତା ନାହିଁ । ମୂଳସ୍ତରରେ ଲୋକଙ୍କ ହାତରେ କ୍ଷମତା ଓ ସମ୍ବଳ ନରହିଲେ, ସାରା ପୃଥିବୀରେ ଗଣତନ୍ତ୍ରର ଭବିଷ୍ୟତ ଅନ୍ଧକାର ।

ଦିନ ୨ଟାରେ ୧୨୫ ଘର ବିଶିଷ୍ଟ ଗଉଡ଼ପୁଟ ଗ୍ରାମରେ ସଭା ହୋଇଥିଲା । ପ୍ରାୟ ୧୦୦ ଲୋକ ସଭାରେ ଯୋଗ ଦେଇଥିଲେ । ଏହି ଗ୍ରାମରେ ଜଣେ ଯୁବକ ପ୍ରଶ୍ନ କରିଥିଲେ ଯେ ଗରିବ ଲୋକମାନେ ଜଙ୍ଗଲରୁ କାଠ କାଟି ବିକ୍ରି କରି ବଞ୍ଚୁଛନ୍ତି । ଜଙ୍ଗଲରେ କାଠ କଟା ବନ୍ଦ ହେଲେ ସେମାନେ କିପରି ବଞ୍ଚିବେ? ପଦଯାତ୍ରୀ ଦଳ କହିଥିଲେ ଯେ ଯେତେବେଳେ ଜଙ୍ଗଲରୁ ଗଛ ଶେଷ ହୋଇ କେବଳ ମାଟି ଓ ପଥର ରହିବ ସେତେବେଳେ ଗରିବ ଲୋକମାନେ କିପରି ବଞ୍ଚିବେ? ଆଉ ମଧ୍ୟ

କହିଥିଲେ ଯେ ସ୍ୱାଧୀନତା ପୂର୍ବରୁ ଯେଉଁ ୨୨ କାଠ (ଶାଳ, ପିଆଶାଳ, ଶିଶୁ, କେନ୍ଦୁ ଆଦି) ମନା ଥିଲା ତାହା ନକାଟି ଅନ୍ୟ ଗଛ କାଟି ଗୁଜୁରାଣ ମେଣ୍ଟାଇବା ଉଚିତ ।

ସନ୍ଧ୍ୟାରୁ ରାତି ୧୦ଟା ପର୍ଯ୍ୟନ୍ତ ନୂଆବନ୍ଧସାହି ଓ ଗୋଠବଣରେ ସଭା ହୋଇଥିଲା ।

ଜୁନ ୧୦ ତାରିଖ ଦିନ ପଦଯାତ୍ରୀ ଦଳ ୩୦ କି:ମି: ପଦଯାତ୍ରା କରିଥିଲେ । ୨୫ ଘର ବିଶିଷ୍ଟ ଆଦିବାସୀ ଗ୍ରାମ ବୁଢ଼ାବୁଢ଼ିଆଣୀଠାରେ ଦିନ ୧୦ଟାରେ ସଭା ହୋଇଥିଲା । ପ୍ରାୟ ୨୦ ଜଣ ସଭାରେ ଯୋଗ ଦେଇଥିଲେ ।

ଦିନ ୧୨ଟାରେ ଆଦିବାସୀ ଗ୍ରାମ ଗଡ଼ଗାଁରେ ପହଞ୍ଚିଲୁ । ୧୬ ଘର ବିଶିଷ୍ଟ ଏହି ଗ୍ରାମରେ ପ୍ରାୟ ୧୫ଜଣ ନରନାରୀ ସଭାରେ ଯୋଗ ଦେଇଥିଲେ । ବାଟରେ କେତେକ ପ୍ରକାଣ୍ଡ ଶାଳ କଟା ହୋଇ ପଡ଼ିଥିବାର ଦେଖିଲୁ । ରାତିରେ ପେଟ୍ରୋମାକ୍ସ ଲାଇଟ୍ ଧରି ସଙ୍ଘବଦ୍ଧ ଭାବେ ଗଛ କଟାଯାଉଥିବାରୁ ଗ୍ରାମବାସୀମାନେ ପ୍ରତିରୋଧ କରିବାକୁ ସାହସ କରିପାରୁ ନଥିବାର ଜାଣିଲୁ । ବିରାଟ ଶାଳ ଗଛ ଆଉ କ୍ୱଚିତ୍ ଦେଖାଯାଉଛି । ସେ ସବୁ କଟା ସରିଲାଣି । ପିଆଶାଳ, ଶିଶୁ, ବାନ୍ଧଣ, ମହୁଲ, କେନ୍ଦୁ, ଫାଶି, ସିମିଳି, ଖଇର, ଅସନ, ହରିଡ଼ା, ବାହାଡ଼ା, ଜାମୁକୋଳି, ବେଲ, ଆମ୍ବ, ପଣସ, ବାଉଁସ, ବର, ଅସ୍ୱସ୍ତ ଆଦି ଗଛ ଦେଖିଲୁ । ଗଡ଼ଗାଁରେ କନ୍ଧମାନେ ବାସ କରୁଛନ୍ତି । ସେମାନଙ୍କ ସାଙ୍ଗା 'ଜାନୀ' । ଘୋର ଦାରିଦ୍ର୍ୟରେ ସେମାନେ କାଳାତିପାତ କରୁଛନ୍ତି । କେତେକ କୁଡ଼ିଆରେ ଭଙ୍ଗା ତାଟି କବାଟ ଲାଗିଥିବାର ଦେଖିଲୁ । ଏହି ପାହାଡ଼ ପର୍ବତ ଘେରା ଛୋଟ ଗ୍ରାମଟିରେ ଗିରିଡ଼ି ଆମ୍ବ ପଣ(୮୦)କୁ ୧ଟଙ୍କା ୫୦ ପଇସାରେ ବିକ୍ରି ହେଉଥିବାର ଦେଖିଲୁ । ଏଥିରୁ ଏମାନଙ୍କର ଶୋଚନୀୟ ଆର୍ଥିକ ପରିସ୍ଥିତି ସହଜରେ ଅନୁମେୟ ।

ତାପରେ ୧୫ଟି ପରିବାର ବିଶିଷ୍ଟ କନ୍ଧ ଗ୍ରାମ ଲାଣ୍ଡିଗିରିରେ ପହଞ୍ଚିଲୁ ଦିନ ୨ଟାରେ। ସଭାରେ ପ୍ରାୟ ୪୫ ଜଣ ପୁରୁଷ ଓ ସ୍ତ୍ରୀ ଯୋଗ ଦେଇଥିଲେ । ଜଣେ ୧୪ ବର୍ଷର ଝିଅଠାରୁ ଜାଣିଲୁ ଯେ ସେ ୧୫ ଦିନ ହେଲା ଭାତ ଖାଇନାହିଁ । ଗ୍ରାମବାସୀମାନେ କହିଲେ ଯେ ସେମାନେ ବର୍ଷରେ ମାତ୍ର ୩ ମାସ ଭାତ ଖାଆନ୍ତି । କାରଣ ଜଙ୍ଗଲର ଉପତ୍ୟକାରେ ଧାନ ଜମି ଅତ୍ୟନ୍ତ କମ୍ । ନିଯୁକ୍ତିର କୌଣସି ସୁଯୋଗ ନଥିବାରୁ ଚାଉଳ କିଣିବାକୁ ସେମାନଙ୍କ ହାତରେ ପଇସା ନାହିଁ । ୨୧ଟି ବାଉଁଶ ହାଣିଲେ ସେମାନଙ୍କୁ ୨ଟଙ୍କା ମଜୁରୀ ମିଳେ । ସେମାନେ ଟୁଙ୍ଗା, କରବା, ପିଠଳ, ସେଚେରଙ୍ଗା, କଷାଆଳୁ, କଣ୍ଟାଆଳୁ, ପିତା ମସୀହା, ଓଲୁଅ, ସଲତା କାଠ, ଅରଗୁଣା

ଫଳ, ସିଆଳି ଫଳ, ସାରଣି ଫଳ, କଣ୍ଟାଟୋଲ, ଅଷାଢୁଆ କେନ୍ଦୁ, ଜାମୁକୋଳି, ଆମ୍ବ, ପଣସ ଖାଇ ବଞ୍ଚୁଥିବାର ଜାଣିଲୁ । ଜଣେ ୨୪ ବର୍ଷ ବୟସ୍କ ରୁଗ୍‌ଣ ଯୁବକକୁ ମୃତ୍ୟୁ ଅପେକ୍ଷାରେ ରହିଥିବାର ଦେଖିଲୁ । ଓଡ଼ଗାଁ ଡାକ୍ତରଖାନା ଏଠାରୁ ୧୪ କି: ମି: ଦୂର । ଗ୍ରାମବାସୀମାନେ ପଇସା ଅଭାବରୁ କଣ୍ଟ୍ରୋଲ ଗହମ କିଣିପାରନ୍ତି ନାହିଁ । ଚିନି କେବେ ଆସୁଛି ଜାଣିପାରନ୍ତି ନାହିଁ । ଅଧ ଲିଟର କିରୋସିନି ଆଲୁଅ ଜାଳିବା ପାଇଁ ଆଣନ୍ତି । କଣ୍ଟ୍ରୋଲ ଦୋକାନ ଗ୍ରାମଠାରୁ ୧୦ କି:ମି: ଦୂର ।

ତାପରେ ପଦଯାତ୍ରୀ ଦଳ ଏକ ଉଚ୍ଚ ପର୍ବତର ଶିଖର ଦେଶରୁ ପାଦ ଦେଶରେ ଥିବା ଉପତ୍ୟକାକୁ ଓହ୍ଲାଇଥିଲେ । ବାଟରେ ଗଛରୁ ଜାମୁକୋଳି ଖାଇ କ୍ଷୁଧା ନିବାରଣ କରିଥିଲେ ।

ଅପରାହ୍ନ ୪ଟା ବେଳେ ୧୩ ଘର ବିଶିଷ୍ଟ କନ୍ଧ ଗ୍ରାମ ନୂଆସାହିରେ ସଭା ହୋଇଥିଲା । ପ୍ରାୟ ୨୦ ଜଣ ଯୋଗ ଦେଇଥିଲେ । ସେଥିରୁ ପିଲା ଥିଲେ ୧୨ । ସେମାନଙ୍କ ମଧ୍ୟରୁ ୮ଜଣ ଲଙ୍ଗଳା ଥିଲେ ।

୧୦ଘର ବିଶିଷ୍ଟ ଆଦିବାସୀ ଗ୍ରାମ ପୋଡ଼ାସାହିରେ ସଭା ସଭା ହୋଇଥିଲା । ଶେଷୋକ୍ତ ଗ୍ରାମରେ ଅପରାହ୍ନ ୫ଟାରେ ମଧ୍ୟାହ୍ନ ଭୋଜନ ହୋଇଥିଲା ।

ତାପରେ ଗୋଡ଼ ଚଳୁ ନଥିଲେ ମଧ, ଅନ୍ଧାର ହୋଇଗଲେ ଜଙ୍ଗଲ ରାସ୍ତାରେ ବାଟ ଜଣା ନପଡ଼ିବା ଆଶଙ୍କାରେ ୭ କି: ମି: ଦୂରରେ ଥିବା ବାଣ୍ଡୁପୁର ଗ୍ରାମ ( ୧୨୦ ଘର) ଅଭିମୁଖେ ଯାତ୍ର ଆରମ୍ଭ କରିଥିଲୁ । ଲେଖକର ବୟସ ୫୩ ବର୍ଷ । କ୍ଲାନ୍ତ ଲେଖକ ଅନୁଭବ କରୁଥିଲା ଯେ ସେ ତାର ଶବକୁ ନିଜ କାନ୍ଧରେ ବୋହି ଚାଲିଛି । ରାତି ୮ଟାରେ ଶତାଧିକ ଲୋକ ଏହି ଗ୍ରାମ ସଭାରେ ଯୋଗ ଦେଇଥିଲେ । ପରିବେଶର ଦ୍ରୁତ ଅବକ୍ଷୟ ସମ୍ପର୍କରେ ଲୋକମାନଙ୍କ ମଧ୍ୟରେ କେତେକ ପରିମାଣରେ ସଚେତନତା ଥିଲେ ମଧ, ସେମାନଙ୍କୁ ସଙ୍ଗଠିତ କରି ପରିବେଶର ସୁରକ୍ଷା ପାଇଁ ସାମୂହିକ ପଦକ୍ଷେପ ନେବା ପାଇଁ ନେତୃତ୍ୱର ଅଭାବ ମର୍ମେ ମର୍ମେ ସମସ୍ତେ ଅନୁଭବ କରୁଥିବା ଜଣାପଡ଼ିଲା । ଏହି ଗ୍ରାମକୁ ଦୁଇଟି ରାଜନୀତିକ ଦଳ ଦୁଇଟି ଯୁଦ୍ଧଖୋର ଶିବିରରେ ପରିଣତ କରିଛନ୍ତି । ଗ୍ରାମରେ ଏକତା ନଥିଲେ କୌଣସି ଉନ୍ନତିମୂଳକ କାର୍ଯ୍ୟ କରିବା ସମ୍ଭବ ନୁହେଁ ।

ରାତି ୯ଟା ୩୦ ମିନିଟରେ ଏହି ଗ୍ରାମରେ ସଭା ସାଙ୍ଗ କରି ୪ କି: ମି: ଦୂରେ ଥିବା ଚେମେଡ଼ି ଗ୍ରାମ (୯୦ ଘର) ଅଭିମୁଖେ ପଦଯାତ୍ରୀ ଦଳ ଯାତ୍ରାରମ୍ଭ କରିଥିଲେ । ୧୦ ଘଣ୍ଟା ୩୦ ମିନିଟରେ ଗ୍ରାମରେ ପହଞ୍ଚି ସଭା କରିଥିଲେ । ପ୍ରାୟ

୨୦ ଜଣ ବ୍ୟକ୍ତି ଯୋଗ ଦେଇଥିଲେ ।

ଏହି ପଦଯାତ୍ରାରୁ ଅନୁଭୂତ ହେଲା ଯେ ପରିବେଶର ସଂରକ୍ଷଣ ପାଇଁ ନିମ୍ନଲିଖିତ ୩ଟି ପଦକ୍ଷେପ ଅପରିହାର୍ଯ୍ୟ ।

୧.ଲୋକମାନଙ୍କ ମଧ୍ୟରେ ପରିବେଶ ସଂରକ୍ଷଣ ପାଇଁ ଚେତନା ସୃଷ୍ଟି କରିବା ।

୨.ଲୋକମାନଙ୍କୁ ସଂଗଠିତ କରିବା ।

୩.ଲୋକମାନଙ୍କ ସାହାଯ୍ୟରେ ପରିବେଶ ସଂରକ୍ଷଣ କରିବା ଓ ବୃକ୍ଷ ରୋପଣ କରିବା ।

**ଉତ୍କଳ ପ୍ରସଙ୍ଗ, ଡିସେମ୍ବର,୧୯୮୯**

# ଗ୍ରାମେଗ୍ରାମେ ପରିବେଶ

ନାରାୟଣ ହଜାରୀ
ସୁବାସ ଚନ୍ଦ୍ର ହଜାରୀ

**'ବୃକ୍ଷ ଓ ଜୀବର ବଂଧୁ'** ପରିଷଦ ପକ୍ଷରୁ ଅକ୍ଟୋବର ୨୮, ୨୯ ଓ ୩୦ ରେ ରଣପୁର ଓ ଓଡ଼ଗାଁ ବ୍ଲକର କେତେକ ଗ୍ରାମରେ ପଦଯାତ୍ରା କରାଯାଇଥିଲା । ଏହି ସଂଗଠନର ୨ ଜଣ ଉଦୀୟମାନ ଯୁବକ ସର୍ବଶ୍ରୀ ଶ୍ରମିକଯୋଗୀ ଓ ସଂଗ୍ରାମୀ ବିଶ୍ୱନାଥଙ୍କର ଅକ୍ଲାନ୍ତ ପରିଶ୍ରମ, ବିଶେଷ ତ୍ୟାଗ, ଆଦର୍ଶନୀୟ କର୍ମନିଷ୍ଠା ଓ ପ୍ରେରଣାଦାୟକ ସାଧନାରେ, ନୟାଗଡ଼ ବ୍ଲକର ୮ଟି ଯାକ ବ୍ଲକରେ ପ୍ରାୟ ୧୦୦୦ ଗ୍ରାମରେ ପରିବେଶ ସଂରକ୍ଷଣ ସମ୍ପର୍କରେ ଜନଜାଗରଣ ସୃଷ୍ଟି କରିବା ପାଇଁ ନିରବଚ୍ଛିନ୍ନ ଉଦ୍ୟମ ଚାଲିଛି । ଏହି ଅନୁଷ୍ଠାନର ଜଣେ ସକ୍ରିୟ ଓ ଉତ୍ସାହୀ କର୍ମୀ ଶ୍ରୀ ସେବକ ଭିକ୍ଷାକାରୀଙ୍କ (ଭିକ୍ଷାକାରୀ ହଜାରୀ) ଦ୍ୱାରା ୪ ଟଙ୍କାରେ ମିଳୁଥିବା ଏକ ମାଟି ପାଇଖାନାର ପ୍ରଚଳନ ଏ ଅନୁଷ୍ଠାନ ଦ୍ୱାରା ଗ୍ରାମେ ଗ୍ରାମେ କରାଯାଉଛି । ଏତଦ୍ ବ୍ୟତୀତ ପରିବାର ନିୟନ୍ତ୍ରଣ, କୃଷିର ଉନ୍ନତି, ଜଳସେଚନ, ସ୍ୱାସ୍ଥ୍ୟରକ୍ଷା, ଶିକ୍ଷାର ଗୁଣାତ୍ମକ ବିକାଶ ଓ ତା'ର ପ୍ରସାର, ନିଶା ନିବାରଣ, ଯୌତୁକ ପ୍ରଥାର ନିରାକରଣ, ଅସ୍ପୃଶ୍ୟତା ନିବାରଣ, କୁଷ୍ଠରୋଗରେ ଆକ୍ରାନ୍ତ ଲୋକଙ୍କୁ ଚିହ୍ନଟ କରି ସେମାନଙ୍କୁ ଚିକିତ୍ସା ପାଇଁ ପ୍ରବର୍ତ୍ତାଇବା, ମହିଳାମାନଙ୍କୁ ସିଲେଇ ଶିକ୍ଷାଦାନ ଆଦି କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । ଗ୍ରାମର ବିବାଦ ଥାନା, କୋର୍ଟ କଚେରିକୁ ନ ନେଇ ଗ୍ରାମରେ ତୁଟାଇବାକୁ ଲୋକମାନଙ୍କୁ ବୁଝାଯାଉଛି । ରାଜନୀତିକ ଦଳ ଢ଼ାଞ୍ଚାରେ ଗ୍ରାମମାନଙ୍କୁ ବିଧିବଦ୍ଧ ଭାବରେ ବିଷାକ୍ତ ଓ ଭାଗ ଭାଗ ନ କରିବା ପାଇଁ ଉଦ୍ୟମ କରାଯାଉଛି । ନିର୍ବାଚନ ଦିନ ନିଜର ବିବେକ, ବିଚାର ପ୍ରୟୋଗ କରି ପ୍ରତ୍ୟେକ ବ୍ୟକ୍ତି ଭୋଟ ଦେବା ଓ ତାପରେ ନିର୍ବାଚନ ଓ ଭୋଟ କଥା ଗ୍ରାମରେ ପକାଇ ଗ୍ରାମ୍ୟ ଜୀବନକୁ କଳୁଷିତ ନ କରିବା ପାଇଁ ଗ୍ରାମବାସୀଙ୍କୁ ନିବେଦନ କରାଯାଉଛି । ଗ୍ରାମବାସୀ କେଉଁ ଦଳକୁ ବା ବ୍ୟକ୍ତିଙ୍କୁ ଭୋଟ ଦେବେ ସେ ସମ୍ପର୍କରେ ଗ୍ରାମ ସଭାରେ ଆଲୋଚନା

କରିପାରନ୍ତି । କୌଣସି ନିର୍ଦ୍ଦିଷ୍ଟ ଦଳ ବା ବ୍ୟକ୍ତିଙ୍କୁ ଭୋଟ ଦେବା ପାଇଁ କାହାକୁ ବାଧ୍ୟ କରିବା ଏକ ଗର୍ହିତ କାର୍ଯ୍ୟ । ପ୍ରତ୍ୟେକ ବ୍ୟକ୍ତିର ମତଦାନ ଅଧିକାରରକୁ ସମ୍ମାନ ଦେବା ସମସ୍ତଙ୍କର ପରମ କର୍ତ୍ତବ୍ୟ ।

ଗ୍ରାମେ ଗ୍ରାମେ ପଦଯାତ୍ରା ବେଳେ ଦେଖା ଯାଇଥିଲା ଯେ ପଞ୍ଚାୟତ, ବିଧାନସଭା ଓ ଲୋକସଭା ନିର୍ବାଚନ ପରେ ସଭା ବସୁଛି । ଯେଉଁମାନେ ଭୋଟ ସମ୍ପର୍କରେ ଗ୍ରାମସଭାର ନିର୍ଦ୍ଦେଶ ଅମାନ୍ୟ କରିଛନ୍ତି ତାଙ୍କୁ ଏକଘରିକିଆ କରାଯାଉଛି, ଜୋରିମାନ କରାଯାଉଛି । ଏପରି କାର୍ଯ୍ୟର କୌଣସି ଯଥାର୍ଥତା ନାହିଁ । ଦୁଃଖ, ଦୁର୍ଦ୍ଦଶାରେ ସଢୁଥିବା ଅଭାବଗ୍ରସ୍ତ ଗ୍ରାମବାସୀମାନଙ୍କୁ ଅଯଥା ଦ୍ୱନ୍ଦ୍ୱ, ହିଂସା ଓ ଅଶାନ୍ତି ମଧ୍ୟକୁ ଟାଣି ଅଣାଯାଉଛି । ଯୁଗେ ଯୁଗେ ଗ୍ରାମମାନଙ୍କରେ ସାମାଜିକ, ଆର୍ଥିକ ଓ ରାଜନୀତିକ କାରଣ ଯୋଗୁ ଅନ୍ତର୍ବିବାଦ ଲାଗି ରହିଥାଏ । ଏକତା ରକ୍ଷା କରିବା ସହଜସାଧ୍ୟ ହୋଇ ନ ଥାଏ । ସ୍ୱାଧୀନତା ପରେ ରାଜନୀତିକ ଦଳମାନେ ଗ୍ରାମମାନଙ୍କୁ କବଳିତ କରିବାକୁ ଉଦ୍ୟମ ଅବ୍ୟାହତ ରଖିଛନ୍ତି । ସେମାନେ ଲୋକମାନଙ୍କୁ ଦେଶର ଆର୍ଥନୀତିକ, ସାମାଜିକ, ରାଜନୀତିକ ସମସ୍ୟା ସମ୍ପର୍କରେ ସଚେତନ କରାନ୍ତୁ । ଦେଶର ପୂନର୍ଗଠନରେ ଗ୍ରାମବାସୀମାନଙ୍କୁ ଭାଗୀ କରାନ୍ତୁ । ନିଜ ନିଜ ଦଳର କାର୍ଯ୍ୟକ୍ରମ ବୁଝାଇବା ଓ ଭୋଟ ଦାନ ପାଇଁ ନିବେଦନ କରିବାରେ କିଛି ଅସମୀଚୀନତା ନାହିଁ । କିନ୍ତୁ ସବୁ ଦିନ ପାଇଁ ଗ୍ରାମ ମାନଙ୍କରେ ଡେରା ପକାନ୍ତୁ ନାହିଁ । ତଦ୍‌ଦ୍ୱାରା ଗ୍ରାମର ,ଏକତା କ୍ଷୁର୍ଣ୍ଣ ହେଉଛି । ଏକତା ହିଁ ବଳ । ଏକତାର ଅଭାବରୁ ଗ୍ରାମର ସର୍ବାଙ୍ଗୀନ ବିକାଶ ବାଧାପ୍ରାପ୍ତ ହେଉଛି ।

୨୮ ତାରିଖରେ କୁରୁଡ଼ଙ୍ଗ ଗ୍ରାମରେ ପଦଯାତ୍ରା କରାଯାଇଥିଲା । ୧୦୦ ଘର ବିଶିଷ୍ଟ ଏହି ଗ୍ରାମରେ ପ୍ରାୟ ୫୦ ଜଣ ସଭାରେ ଯୋଗ ଦେଇଥିଲେ । ଲୋକଙ୍କୁ ଆକୃଷ୍ଟ କରିବା ପାଇଁ ପ୍ରଥମେ ୩୦ ଜଣ ପିଲା ନିମ୍ନଲିଖିତ ଧ୍ୱନି ଦେଇ ଗ୍ରାମ ପରିକ୍ରମା କରିଥିଲେ ।

'ବୃକ୍ଷ ଆମର ଜୀବନ ଧନ
ଯୋଗାଏ ମାଟି, ପାଣି, ପବନ ।'

ଏହି ଗ୍ରାମରେ ଲୋକଙ୍କ ପରିଶ୍ରମ ଓ ସରକାରଙ୍କ ଅର୍ଥ ସାହାଯ୍ୟ ଫଳରେ ଏକ ସୁନ୍ଦର ଉଚ୍ଚ ପ୍ରାଥମିକ ସ୍କୁଲ ଗଢ଼ି ଉଠିଛି । ଗ୍ରାମରେ ଥିବା ୨ଟି ନଳକୂପରୁ ଗୋଟିଏ କାମ କରୁନାହିଁ ।

ପ୍ରାୟ ୫୦୦ ପରିବାର ବିଶିଷ୍ଟ ଡିମିଶର ଗ୍ରାମରେ ଉକ୍ତ ସନ୍ଧ୍ୟାରେ ପଦଯାତ୍ରା କରାଯାଇଥିଲା । ସଭାରେ ପ୍ରାୟ ୨୦୦ ବ୍ୟକ୍ତି ଯୋଗ ଦେଇଥିଲେ । ୨୯ ତାରିଖରେ ରଙ୍କଦେଉଳୀରେ ଦିନ ୧୧ଟା ବେଳେ ସଭା ହୋଇଥିଲା । ୧୬୦ ଘର ବିଶିଷ୍ଟ

ଏହି ଗ୍ରାମ ସଭାରେ ୬୦ ଜଣ ଯୋଗ ଦେଇଥିଲେ । ଏଠାରେ କୃଷିରେ ରାସାୟନିକ ସାର ପରିବର୍ତ୍ତେ ଜୈବିକ ସାରର ପ୍ରୟୋଗ ପାଇଁ ଲୋକମାନଙ୍କୁ ବୁଝା ଯାଇଥିଲା । ପୋକମରା ବିଷ ବିଷାକ୍ତ ପରିଣାମ ସମ୍ପର୍କରେ ଲୋକମାନଙ୍କୁ ସଚେତନ କରାଯାଇଥିଲା । ଭାରତରେ ବ୍ୟବହୃତ ହେଉଥିବା ପୋକମରା ବିଷ ସପ୍ତଦଶନ୍ଧୀରୁ (ଅର୍ଥାତ୍ ୧୯୭୦ ସାଲ ପରେ) ଯୁକ୍ତରାଷ୍ଟ୍ର ଆମେରିକା, କମ୍ୟୁନିଷ୍ଟ ରୁଷ, ପଶ୍ଚିମ ଜର୍ମାନୀ ଆଦି ଦେଶରେ ନିଷିଦ୍ଧ ହୋଇଛି । କେବଳ ଡ଼ି.ଡ଼ି.ଟି. ବି.ଏନ୍. ସି. ବା ମାଲାଥିଅନ କଥା ନୁହେଁ, ଭାରତୀୟ ଚାଷୀ ଆଉ ଯେଉଁସବୁ ପୋକମରା ବିଷ ବ୍ୟବହାର କରନ୍ତି, ତନ୍ମଧ୍ୟରୁ ୭୦ ଭାଗ ଔଷଧ ବିଶ୍ୱସ୍ୱାସ୍ଥ୍ୟ ସଂଗଠନ, ଜୀବଜଗତର ସ୍ୱାସ୍ଥ୍ୟପାଇଁ ଅତ୍ୟନ୍ତ ବିଷମୟ (ଟକ୍‌ସିକ୍) ବୋଲି ଘୋଷଣା କରିଛି ।

ଉନ୍ନତ ଦେଶମାନେ ଜାଣିଲେଣି ଯେ ପୋକମରା ବିଷ ମଣିଷ ପାଇଁ ବିପଦ ସୃଷ୍ଟି କଲାଣି । କିନ୍ତୁ ଆମ ଦେଶରେ ବର୍ତ୍ତମାନ ପର୍ଯ୍ୟନ୍ତ ଧାରଣା ରହିଛି ଯେ ଏହା କେବଳ କ୍ଷତିସାଧକ କୀଟପତଙ୍ଗଙ୍କୁ ଧ୍ୱଂସ କରୁଛି । ଆମେ ଜାଣି ପାରୁନାହୁଁ ଯେ ଏହା ମାଟିରେ ଓ ବାୟୁମଣ୍ଡଳରେ ଥିବା ଆମର ଅନେକ ହିତକାରୀ କୀଟପତଙ୍ଗଙ୍କୁ ମଧ୍ୟ ନଷ୍ଟ କରୁଛି । ଏହି ଅଜ୍ଞତା ଯୋଗୁ ଆମେ ପୋକମରା ବିଷ ସହଖେଳ ଖେଳୁଛୁ ।

୧୯୫୫ ସାଲ ବେଳକୁ ମାତ୍ର ୨ ହଜାର ଟନ୍ ପୋକମରା ବିଷ ବ୍ୟବହାର କରୁଥିଲୁ । ୧୯୮୪ ସାଲ ବେଳକୁ ଆମର ପୋକମରା ବିଷ ବ୍ୟବହାର ୮୦ ହଜାର ଟନକୁ ବୃଦ୍ଧି ପାଇଲା ।

ଦିନକୁ ଦିନ ଦେଖା ଯାଉଛି, କୀଟପତଙ୍ଗ ଓ ଜୀବାଣୁ ବିରୁଦ୍ଧରେ ଯେତେ ସଂଗ୍ରାମ ଚାଲିଛି ସେମାନେ ସେତେ ବୃଦ୍ଧି ପାଉଛନ୍ତି । ପୋକମରା ବିଷ ବିରୁଦ୍ଧରେ ତାଙ୍କର ପ୍ରତିରୋଧ ଶକ୍ତି ବୃଦ୍ଧି ପାଉଛି । 'ବିଶ୍ୱର ଖାଦ୍ୟ ଓ କୃଷି ସଂଗଠନ' ବିଶେଷଜ୍ଞମାନେ କହୁଛନ୍ତି ଯେ ଯେଉଁ ୯ଟି ମୁଖ୍ୟ ପୋକମରା ବିଷ ବିଶ୍ୱରେ ସାଧାରଣତଃ ବ୍ୟବହାର ହେଉଛି ତାଫଳରେ କୃଷି କ୍ଷତିକାରୀ ୨୨୩ଟି ଜାତୀୟ ପୋକଙ୍କର ପ୍ରତିରୋଧ କରିବା ଶକ୍ତି ବୃଦ୍ଧି ପାଇଲାଣି ଏବଂ ସେମାନେ ସେ ବିଷରେ ମରୁନାହାନ୍ତି । ଏହି ଜୀବ ଧ୍ୱଂସକାରୀ କୀଟପତଙ୍ଗମାନେ ଆଲାଜୁକ ହୋଇ ଗଲେଣି । ପୋକମରା ବିଷ ବିରୁଦ୍ଧରେ ତାଙ୍କର ମରଣ ପ୍ରତିରୋଧକାରୀ ଶକ୍ତି କେବଳ ବୃଦ୍ଧି ପାଉନାହିଁ, ଓଲଟି ସେମାନଙ୍କର ସଂଖ୍ୟା ବୃଦ୍ଧି ପାଉଛି । ଅର୍ଥାତ୍ ପ୍ରଜନନ ଶକ୍ତି ବହୁଗୁଣିତ ହେଉଛି । ତାଛଡ଼ା ଏହି ଧ୍ୱଂସକାରୀ କୀଟପତଙ୍ଗଙ୍କର ଯେଉଁସବୁ ଶତ୍ରୁ ଜୀବ ଅଛନ୍ତି, ସେମାନେ ଏହି ବିଷ ପ୍ରକ୍ରିୟାରେ ଲୋପ ପାଇ ଯାଉଛନ୍ତି ।

ମଣିଷ ପାଇଁ ଏହି ପୋକମରା ବିଷ ଘୋର ଶତ୍ରୁ ରୂପେ ଦେଖା ଦେଇଛି । ପବନ, ପାଣି, ମାଟି, ସମସ୍ତ ବାତାବରଣକୁ ଦୂଷିତ କରି ମଣିଷଙ୍କୁ ତିଳ ତିଳ କରି ମରଣ ମୁହଁକୁ ଠେଲିନେଉଛି ।

ଏ. ଟି. ଡୁନାନୀ ନାମକ ଜଣେ ବିଶେଷଜ୍ଞଙ୍କ ମତରେ 'ଆମେ ଏହିସବୁ ଜୀବାଣୁ ବିରୁଦ୍ଧରେ ଯେଉଁ ବ୍ୟର୍ଥ ସଂଗ୍ରାମ କରୁଛୁ, ତା'ର ଫଳ ହେବ ଯେ କ୍ୟାନସର୍, ଜନ୍ମଗତ ବିକଳାଙ୍ଗତା ଓ ଜନ୍ମଗତ ବ୍ୟାଧି ବହୁ ପରିମାଣରେ ବ୍ୟାପିବ ।

ଏହି ବିପଦ ଆଉ ଆଶଙ୍କା ଭିତରେ ସୀମାବଦ୍ଧ ହୋଇନାହିଁ । ମୁଣ୍ଡ ଉପରେ ପହଞ୍ଚି ଗଲାଣି । ଭାରତବାସୀଙ୍କ ଦେହ ବବିରେ ଡ଼ି.ଡ଼ି.ଟି ପ୍ରଭୃତି କିଟନାଶକ ବିଷର ଅବଶିଷ୍ଟାଂଶ ସାରା ବିଶ୍ୱରେ ସବୁଠାରୁ ବେଶି ପରିମାଣରେ ପରିଲକ୍ଷିତ ହେଉଛି । ଯେତିକି ମଣିଷ ଦେହରେ ଦେଖାଗଲେ ସ୍ୱାସ୍ଥ୍ୟ ପାଇଁ ବିପଦ ନୁହେଁ ବୋଲି ଧରାଯାଏ ତାର ୨୦ ଗୁଣରୁ ଅଧିକ ଦେଖାଯାଉଛି । ତୃତୀୟ ବିଶ୍ୱରେ ପ୍ରତିବର୍ଷ ପ୍ରାୟ ୧୪ ହଜାର ଲୋକ ଏଥିରେ ବିଷକ୍ଲିଷ୍ଟ ହୋଇ ମୃତ୍ୟୁ ମୁଖରେ ପଡ଼ନ୍ତି ।

କଟକରେ ପ୍ରତିଷ୍ଠିତ କେନ୍ଦ୍ର ଧାନ ଗବେଷଣା ସଂସ୍ଥାର କେତେକ ବୈଜ୍ଞାନିକ କହନ୍ତି 'ଆଜି ପର୍ଯ୍ୟନ୍ତ ଯେତେ କିସମର ଅଧିକ ଅମଳକ୍ଷମ ଧାନ ବିହନ ବାହାର କରାଯାଇଛି, ସେ ସବୁରେ ଅଧିକ ପରିମାଣରେ ପୋକ ଲାଗନ୍ତି । ଏହାଦ୍ୱାରା କ୍ଷତି ଘଟେ । ଏ ସବୁର ମୂଳଗଛ ଏତେ ସୀମିତ ଯେ ରୋଗ ଓ କୀଟ ଆକ୍ରମଣର ଏହା ସହଜ ଶିକାର ହୁଏ ।

ଏପରି ବିଷକ୍ରିୟା ବ୍ୟବସ୍ଥାର ବିକଳ୍ପ କ'ଣ ? କୀଟ ପ୍ରତିଷେଧକ ପରିଚାଳନାର ଜୈବିକ ନିୟନ୍ତ୍ରଣ ବ୍ୟବସ୍ଥା ଉପରେ ଗୁରୁତ କେତେକ ଦିଅନ୍ତି ? ସୋଭିଏତ ରୁଷ୍‌ରେ ଲିମ୍ବଗଛ ସାହାଯ୍ୟରେ ବ୍ୟାପକ ଭାବେ କୀଟ ପ୍ରତିରୋଧ ବ୍ୟବସ୍ଥା ଗ୍ରହଣ କରାଯାଉଛି ।

**ସମ୍ବାଦ, ୨୮.୦୬.୧୯୯୦ରେ ପ୍ରକାଶିତ**

# ଗ୍ରାମେ ଗ୍ରାମେ ପରିବେଶ

ନାରାୟଣ ହଜାରୀ
ସୁବାସ ଚନ୍ଦ୍ର ହଜାରୀ

'ବୃକ୍ଷ ତ ଜୀବର ବଂଧୁ' ସଂସ୍ଥା ପକ୍ଷରୁ ଡ଼ିସେମ୍ବର ୧୯୮୯ ଓ ଜାନୁୟାରୀ ୧୯୯୦ରେ ୭୪ଟି ଗ୍ରାମରେ ଆଠ ଦିନ ଧରି ପଦଯାତ୍ରା କରାଯାଇଥିଲା । ଉକ୍ତ ଗ୍ରାମଗୁଡ଼ିକ ନୟାଗଡ଼ ସବ୍‌ଡ଼ିଭିଜନର ନୂଆଗାଁ ବ୍ଲକ୍, ରଣପୁର ବ୍ଲକ୍ ଓ ଖୋର୍ଦ୍ଧା ସବ୍‌ଡ଼ିଭିଜନର ବୋଲଗଡ଼ ବ୍ଲକ୍‌ରେ ଅବସ୍ଥିତ । ୧୮୮୯ ମସିହା ଡ଼ିସେମ୍ବର ୩୦ ତାରିଖ ଦିନ ନୂଆଗାଁ ବ୍ଲକ୍‌ରେ ପଦଯାତ୍ରା ଆରମ୍ଭ ହୋଇଥିଲା । ଡିସେମ୍ବର ୩୧ ଓ ୧୯୯୦ଜାନୁୟାରୀ ୧ ପର୍ଯ୍ୟନ୍ତ ଏ ବ୍ଲକର ୨୧ ଗ୍ରାମକୁ ପଦଯାତ୍ରୀ ବୃନ୍ଦ ଯାଇଥିଲେ । ଲେଖକ, ସୁବାସ ଚନ୍ଦ୍ର ହଜାରୀଙ୍କ ସମେତ ୮ଜଣ ପଦଯାତ୍ରୀ ପଦଯାତ୍ରାରେ ଯୋଗ ଦେଇଥିଲେ ।

ପ୍ରଥମେ ୨୦୦ଘର ବିଶିଷ୍ଟ ଲୁଣିସରା ଗ୍ରାମରେ ରାତି ୮ଟାରେ ସଭା ହୋଇଥିଲା । ସଭାରେ ପ୍ରାୟ ୨୫ଜଣ ବ୍ୟକ୍ତି ଯୋଗ ଦେଇଥିଲେ । ଏହି ଗ୍ରାମରେ ୨ଟି ପୋଖରୀ ରହିଛି । ପୋଖରୀ ଗୁଡ଼ାକ ଅଗଭୀର ହୋଇଥିଲେ ମଧ୍ୟ ଗ୍ରାମବାସୀ ନିଜ ପରିଶ୍ରମରେ ପୁନଃଖନନ ପାଇଁ ପ୍ରସ୍ତୁତ ନୁହନ୍ତି । ସରକାରଙ୍କ ସାହାଯ୍ୟକୁ ଅନାଇ ରହିଛନ୍ତି ।

ଏହି ସଭାରେ ପ୍ରକାଶ ପାଇଥିଲାଯେ ଖଟିକରି ରୋଜଗାର କରିବାକୁ କେତେକ ଲୋକ ପ୍ରସ୍ତୁତ ନୁହନ୍ତି । କିପରି ସହଜରେ ଉପରେ ଉପରେ କିଛି ଟଙ୍କା ମିଳିଯିବ ସେଥିପାଇଁ ସେମାନେ ବ୍ୟାକୁଳ । ତେଣୁ ଗାଁରେ ଲଟେରୀ ଖେଳ ଚାଲିଛି । ଲଟେରୀ କରି ପଇସା ଆଣି ମଉଜ ମଜଲିସରେ ଖର୍ଚ୍ଚ କରାଯାଉଛି । ତାପରେ ଅଂଶଧନ ଦେଇଥିବା ଲୋକମାନଙ୍କୁ ଟଙ୍କା ଶୁଝି ନ ପାରି ମାଡ଼ଖିଆ ସାର ହେଉଛି । ଏହି ଗ୍ରାମରେ ପ୍ରାୟ ୪୦ ଜଣ ଲୋକ ପ୍ରତ୍ୟେକେ ୪୦୦ ଟଙ୍କା ଲେଖାଏଁ ଲଟେରୀକୁ ଦେଇଥିଲେ । ପ୍ରତ୍ୟେକ ୩୪୦ ଟଙ୍କା ଲେଖାଏଁ ଫେରିପାଇଲେ । ୬୦ ଟଙ୍କା ବୁଡ଼ିଗଲା । ଲାଭ ମିଳିବାତ ଦୂରର କଥା ।

ଏହି ଗ୍ରାମରୁ ଜଣାପଡ଼ିଥିଲା ଯେ ଲୋକମାନଙ୍କର ରାଜନୀତିକ ନେତାମାନଙ୍କ ଉପରେ ଆସ୍ଥା ଅନେକ କମି ଯାଇଛି । ଆଗରୁ ମନ୍ତ୍ରୀ ଆସିଲେ ଆମ୍ବ ତୋରଣ ବାନ୍ଧିବା, ଦାଣ୍ଡରେ କଳସ ବସାଇବା, ସଂକିର୍ତ୍ତନ କରିବା, ଫୁଲମାଳ ଦେବା ଆଦି ହେଉଥିଲା । ବର୍ତ୍ତମାନ ସେ ସବୁ ବନ୍ଦ ହେଲାଣି ।

ଗ୍ରାମରେ ଟଙ୍କା କରଜ ନେଲେ ୧୦୦ ଟଙ୍କାରେ ୬୦ ଟଙ୍କା ସୁଧ ଦିଆଯାଉଛି । ମୂଲିଆମାନେ ଦୈନିକ ୮ଟଙ୍କା ମଜୁରୀ ପାଉଛନ୍ତି । ଏଥିରୁ ଶ୍ରମ ଜୀବୀମାନଙ୍କର ଆର୍ଥିକ ଦୁର୍ଗତିର ସୂଚନା ମିଳେ । ଶ୍ରମ ଯୋଗାଣ ଅଧିକ କମ୍ କମ୍ । ତେଣୁ ମଜୁରୀ କମ୍ ହେଉଛି । ଏ ଅଞ୍ଚଳରେ ଲୋକେ କମ୍ ଯାଆନ୍ତି । ଏହି ଗ୍ରାମର ୨ଟି ମୋକଦ୍ଦମା କୋର୍ଟରେ ଅଛି । ଡିସେମ୍ବର ୩୦ ତାରିଖ ଦିନ ଲୁଣିସଭା ଗ୍ରାମରୁ ୫ କି.ମି. ଦୂର ମାନଗାଡ଼ିଆ ଗ୍ରାମରେ ପଦଯାତ୍ରୀଦଳ ପହଞ୍ଚିଥିଲେ । ୩୫ ଘର ବିଶିଷ୍ଟ ଏହି ଗ୍ରାମର ପ୍ରାୟ ୫୫ ଜଣ ଲୋକ ମଧ୍ୟାହ୍ନ ସଭାରେ ଯୋଗଦେଇଥିଲେ । ଦେଖା ଯାଇଥିଲା ଯେ ଏହି ଗ୍ରାମ ଓ ପଡ଼ୋଶୀ ଗ୍ରାମମାନଙ୍କରେ , ବିଲରେ ଖତ ପାଇଁ ଛେଳି ଗୋଠ ପକାଇବା ଯୋଗୁ ବିବାଦ ଚାଲିଛି । ଦଳେ କହୁଛନ୍ତି ଖତ ପାଇଁ ଛେଳି ପକାଇବା । ଅନ୍ୟମାନେ ଏହାକୁ ବିରୋଧ କରି କହୁଛନ୍ତି ଯେ ଛେଳି ପକାଇବା ଦ୍ୱାରା ଜଙ୍ଗଲ ଶେଷ ହୋଇଯାଉଛି । ବିଭିନ୍ନ ଜନସ୍ୱାର୍ଥ ବିରୋଧୀ ଶକ୍ତି ଜଙ୍ଗଲ କ୍ଷୟ କରିବାରେ ଲାଗିଛନ୍ତି । ତା ଉପରେ ଗୋଠ ଗୋଠ ଛେଳି ଆଣି ଜଙ୍ଗଲ କ୍ଷୟ କରିବା, ବୋଝ ଉପରେ ଲଳିତା ବିଡ଼ା ଲଦିବା ପରି ହେଉଛି । ଯେଉଁମାନେ ଖତପାଇଁ ଛେଳି ଗୋଠ ପକାଇବାକୁ ଜିଦ୍ କରୁଛନ୍ତି ସେମାନେ ବୁଝିବା ଉଚିତ ଯେ ଜଂଗଲ ସରିଗଲେ ଛେଳି ଆଉ କିଛି ଖାଇବାକୁ ପାଇବେ ନାହିଁ । ତା'ପରେ ବିଲରେ ଖତ ପାଇଁ ଛେଳି ଗୋଠ ପକାଇବା କଥା ଉଠିବ ନାହିଁ ।

ଅପରାହ୍ନ ୪ଟାରେ ଆଦିବାସୀ (କନ୍ଧ) ଗ୍ରାମ ବେଲବଣିରେ ପଦଯାତ୍ରୀ ପହଞ୍ଚିଲେ । ୧୦ ଘର ବିଶିଷ୍ଟ ଏହି ଗ୍ରାମରେ ସଭାରେ ୧୨ ଜଣ ଯୋଗ ଦେଇଥିଲେ । ଏମାନଙ୍କ ଠାରୁ ଜଣାପଡ଼ିଲା ଯେ କାର୍ତ୍ତିକ, ମାର୍ଗଶୀର ପୌଷ, ମାଘ, ଫାଲଗୁନ, ଚୈତ୍ର, ବୈଶାଖ, ଜ୍ୟେଷ୍ଠ ମାସରେ ସେମାନେ କଷ୍ଟମଷ୍ଟେ ଭାତ ଖାଇବାକୁ ପାଆନ୍ତି । ଆଷାଢ଼, ଶ୍ରାବଣ, ଭାଦ୍ର, ଆଶ୍ୱିନ, ଚାରିମାସ ଡିରୋଟ ସମୟ । ପାହାଡ଼ରୁ ତୁଙ୍ଗା, ମସିହା, ପାଣିଆଳୁ, କଡ଼ବା ଓ ସଳପ ଗଛକୁ କାଟି ତାହାର ମଞ୍ଜିକୁ ଶୁଖାଇ ଢେଙ୍କିରେ କୁଟି ଲୁଣ ପକାଇ ଜାଉ କରି ଖାଆନ୍ତି । ମହୁଲ, କେନ୍ଦୁ ଚୈତ୍ର ବୈଶାଖରେ ଖାଆନ୍ତି । କିନ୍ତୁ ଏ ସବୁ ଗଛ ଜଙ୍ଗଲରେ ବହୁତ କମି ଗଲାଣି । ଖଲିପତ୍ର ସିଇଁ ତାକୁ ବିକ୍ରିକରି କିଛି ରୋଜଗାର କରନ୍ତି ।

ଅପରାହ୍ନ ୫ ଟାରେ ୧୨ ଘର ବିଶିଷ୍ଟ ରଗଡ଼ିମଡ଼ା ଗ୍ରାମରେ ପଦଯାତ୍ରୀମାନେ ପହଞ୍ଚିଥିଲେ ଏହି ଗ୍ର ।ମରେ ୧୦ ଟି ପରିବାର ହେଉଛନ୍ତି କନ୍ଧ । ସଭାରେ ୧୪ ଜଣ ଯୋଗ ଦେଇଥିଲେ ।

ଟୁଣିଆ ପଡ଼ା ଗ୍ରାମରେ ସନ୍ଧ୍ୟା ୬ଟା ୧୫ ମିନିଟରେ ପଦଯାତ୍ରୀ ବୃନ୍ଦ ପହଞ୍ଚିଥିଲେ । ୧୧ଘର ବିଶିଷ୍ଟ ଏହି ଗ୍ରାମରେ ୧୦ ଘର ହେଉଛନ୍ତି କନ୍ଧ । ସଭାରେ ୧୫ ଜଣ ଯୋଗ ଦେଇଥିଲେ । ଗ୍ରାମବାସୀ କହିଥିଲେ ଯେ ୧୦/୧୫ ବର୍ଷପରେ ଜଙ୍ଗଲ ସଂପୂର୍ଣ୍ଣ ଶେଷ ହୋଇଯିବ । ଜଙ୍ଗଲ ସରିଲା ପରେ ଗ୍ରାମବାସୀମାନେ କିପରି ଚଳିବେ ବୋଲି ପଦଯାତ୍ରୀ ଦଳ ପଚାରିଲେ । ଗ୍ରାମବାସୀ ଉତ୍ତର ଦେଇଥିଲେ ଯେ ଜଙ୍ଗଲ ଶେଷ ହେଲେ ସେମାନେ ଶେଷ ହୋଇଯିବେ । ବେଳ ଥାଉ ଥାଉ କାହିଁକି ପ୍ରତିକାର କରୁ ନାହାନ୍ତି ବୋଲି ପଚାରିବାରୁ ଗ୍ରାମବାସୀ କହିଲେ "ଆମେ ଛୋଟ ଗାଁ, କଣ କରି ପାରିବୁ ? ଆମର ବଳ ପାଉନାହିଁ ।"

ଗ୍ରାମବାସୀ ଅଭିଯୋଗ କରିଥିଲେ ଯେ ବିଲରେ ଖତପାଇଁ ପଡୁଥିବା ଛେଳି ଗୋଠମାନଙ୍କର ଖାଦ୍ୟ ଯଥା ବରଡ଼ା ଶାଗ, ଉଦଳିଆ ଶାଗ, ଅଂଳା, ବାହାଡ଼ା, ହରିଡ଼ା, ବରକୋଳି, ଆଦି ଖାଇ ଯାଉଛନ୍ତି । ଛେଳିଆମାନେ, ଅଂଳା, ବାହାଡ଼ା, ହରିଡ଼ା ଡ଼ାଳ ହାଣି ଛେଳିଙ୍କୁ ଦେଉଛନ୍ତି । ଜଙ୍ଗଲରୁ ମରିଚା, ସମ୍ବର, ବାରହା, କୋଟରା, ଗୁଗୁଣ୍ଡି, ଖରିଆ, ଝିଙ୍କ, ମୟୂର ଆଦି ବହୁତ କମି ଗଲେଣି ବୋଲି ପ୍ରକାଶ କରିଥିଲେ ।

ତାପରେ ୩୮ ଘର ବିଶିଷ୍ଟ ଗୁନ୍ଦୁରାବାଡ଼ି ଗ୍ରାମରେ ପଦଯାତ୍ରୀମାନେ ପହଞ୍ଚିଥିଲେ । ଏହି ଗ୍ରାମରେ ୬ଘର କନ୍ଧ । ସଭାରେ ପ୍ରାୟ ୨୫ ଜଣ ଯୋଗ ଦେଇଥିଲେ । ସେଥିରୁ ୫ ଜଣ ମହିଳା ଥିଲେ । ରାତି ପ୍ରାୟ ୮ ଟାରେ ୨୦ ଘର ବିଶିଷ୍ଟ ରକ୍ତିପଙ୍ଗା ଗ୍ରାମରେ ପଦଯାତ୍ରୀ ବୃନ୍ଦ ପହଞ୍ଚିଥିଲେ । ଏହି ଗ୍ରାମର ସମସ୍ତେ କନ୍ଧ । ସଭାରେ ପ୍ରାୟ ୩୦ ଜଣ ଯୋଗ ଦେଇଥିଲେ । ଜଣେ ମାଟ୍ରିକ୍ ପାଶ କରି ଶିକ୍ଷକ ଅଛନ୍ତି । ୧୦ମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଥିବା ୩ ଜଣ ପିଅନ ଅଛନ୍ତି । ଖାଲି ଖଜୁରୀ ପଟି ବୁଣି ଗ୍ରାମବାସୀ କିଛି ରୋଜଗାର କରନ୍ତି । ମଜୁରୀ ୮ ଟଙ୍କା ରହିଛି ।

ତାପରେ ୪୦ ଘର ବିଶିଷ୍ଟ ଭାତରଙ୍ଗା ଗ୍ରାମରେ ପଦଯାତ୍ରୀ ବୃନ୍ଦ ସଭା କରିଥିଲେ । ଏହି ଗ୍ରାମର ସମସ୍ତେ ହରିଜନ । ସଭାରେ ପ୍ରାୟ ୪୦ ଜଣ ଯୋଗ ଦେଇଥିଲେ । ଦେଖା ଯାଇଥିଲା ଯେ ଆଦିବାସୀମାନଙ୍କ ତୁଳନାରେ ହରିଜନମାନେ ଅଧିକ ଦୃଢ଼ତାର ସହିତ ନିଜର ଅଭାବ୍ ଅସୁବିଧା ଦାବୀ ଓ ଅସନ୍ତୋଷ ଉପସ୍ଥାପନ କରିଛନ୍ତି ।

ସେମାନେ ଫରେଷ୍ଟ କର୍ପୋରେସନ୍ ପାର୍ଶ୍ୱବର୍ତ୍ତୀ ଦଶପଲ୍ଲୀ ସହର ଓ ବଡ଼ ବଡ଼ ଗ୍ରାମମାନଙ୍କୁ ଜଙ୍ଗଲ କ୍ଷୟ ପାଇଁ ଦାୟୀ କରିଥିଲେ । ଏହି ଗ୍ରାମରେ ମଜୁରୀ ୧୦ ଟଙ୍କା ରହିଛି ।

ଡିସେମ୍ବର ୩୧ ତାରିଖ ଦିନ ୨୫୦ ଘର ବିଶିଷ୍ଟ ମହିତମା ଗ୍ରାମରୁ ପଦଯାତ୍ରା ଆରମ୍ଭ ହୋଇଥିଲା । ଗ୍ରାମର ୫ଟି ଯାକ ସାହି, ପ୍ରାୟ ୬୦ ଜଣ ପିଲା ପଦଯାତ୍ରୀଙ୍କ ସହିତ ନିମ୍ନଲିଖିତ ସ୍ଲୋଗାନ ଦେଇ ପରିକ୍ରମା କରିଥିଲେ ।

ଜଙ୍ଗଲ ହୋଇଗଲେ ଶେଷ,
ହୋଇବ ନାହିଁ ଆଉ ଚାଷ ।
ବଣ ପଶୁପକ୍ଷୀ ଆମରି ସାଥୀ,
ତାଙ୍କ ସୁରକ୍ଷାରେ ଯିବାରେ ମାତି ।

ଏହି ଗ୍ରାମ ସଭାରେ ମାତ୍ର ୭୦ ଜଣ ଲୋକ ଯୋଗ ଦେଇଥିଲେ ।

ଏହା ପରେ ପଦଯାତ୍ରୀ ଦଳ ୩୫୨ ଘର ବିଶିଷ୍ଟ କୋରଡ଼ା ଗ୍ରାମରେ ପହଞ୍ଚିଥିଲେ । ସଭାରେ ପ୍ରାୟ ୬୦ ଜଣ ଯୋଗ ଦେଇଥିଲେ । ଗାଁରେ ହାଇସ୍କୁଲ, ପଞ୍ଚାୟତ ଓ ପୋଷ୍ଟ ଅଫିସ ଆଦି ରହିଛି । ଗାଁରେ ଏକତାନାହିଁ । ପ୍ରାୟ ୫୦ ଟି କେସ୍ କୋର୍ଟ ଓ ଥାନାରେ ଅଛି । ଗାଁରେ ଏକତା ନଥିବାରୁ ପୋଖରି ଗୁଡ଼ିକର ପରିଚାଳନା ଭାର ପଞ୍ଚାୟତକୁ ସମର୍ପି ଦିଆଯାଇଛି । ତେଣୁ ମାଛ ଚାଷରୁ ଗ୍ରାମବାସୀ ଉପକୃତ ହେଉନାହାନ୍ତି ।

ମଧ୍ୟାହ୍ନରେ ୮୦ ଘର ବିଶିଷ୍ଟ ଆଛୁଆପଡ଼ା ଗ୍ରାମରେ ସଭା ହୋଇଥିତଲା । ପ୍ରାୟ ୪୫ ଲୋକ ସଭାରେ ଯୋଗ ଦେଇଥିଲେ । ଗାଁରେ ଏକତା ଅଛି । କୋର୍ଟ ବା ଥାନାରେ କେସ୍ ନାହିଁ । ଗ୍ରାମବାସୀ ଜଗିଥିବା ୬ କି.ମି. ଲମ୍ବ ଓ ୪ କି.ମି. ଓସାରର ଏକ ଲୋଭନୀୟ ଶାଳ ଜଙ୍ଗଲ ପଦଯାତ୍ରୀମାନେ ବୁଲି ଦେଖିଲେ । ଏହି ଗ୍ରାମର ୨୦ ଘର ବିଶିଷ୍ଟ ହରିଜନସାହିର ଲୋକେ ଜଙ୍ଗଲ ନଷ୍ଟ କରିଥିବା କଥା, ବଡ଼ ସାହିରେ ଲୋକମାନେ ଅଭିଯୋଗ କରିଥିଲେ । ବଡ଼ସାହି ଲୋକଙ୍କର ସମ୍ମିଳିତ ଚାପ ଯୋଗୁ ହରିଚନ ସାହିର ଲୋକେ ଗଛ କାଟିବା ବନ୍ଦ କରିଥିବା ପ୍ରକାଶ କରିଥିଲେ ।

ଦିନ ୨ଟା ୧୦ ମି.ରେ ଅନ୍ଧାରକଣି ଗ୍ରାମରେ ପହଞ୍ଚିଲୁ । ଏହି ଗ୍ରାମରେ ୩୦ଟି ଘର ସଭାରେ ପ୍ରାୟ ୩୦ ଜଣ ଯୋଗ ଦେଇଥିଲେ । ଗ୍ରାମରେ ଏକତା ନାହିଁ । ୫ଟି କେଶ୍ କୋର୍ଟରେ ଅଛି । ଗାଁ ପୋଖରୀର ପୁନରୁଦ୍ଧାର ହେଉନାହିଁ ।

ଲୋକମାନେ ନିଜ ଉଦ୍ୟମରେ ଏ କାର୍ଯ୍ୟ କରିବାକୁ ପ୍ରସ୍ତୁତ ନୁହନ୍ତି । ସରକାରଙ୍କୁ ଅନାଇ ବସିଛନ୍ତି । ତା ପରେ ୪୦ ଘର ବିଶିଷ୍ଟ ବରଡ଼ାଖମଣ ଗ୍ରାମର ପରିକ୍ରମା କରିଥିଲୁ ।

ଅପରାହ୍ନରେ ୨୦୦ ଘର ବିଶିଷ୍ଟ କୃଷ୍ଣ ପ୍ରସାଦ ଗ୍ରାମରେ ସଭା ହୋଇଥିଲା । ପ୍ରାୟ ୧୨୦ ଜଣ ଯୋଗ ଦେଇଥିଲେ । ଏହି ଗ୍ରାମ ଜନତା - କଂଗ୍ରେ ସ ଦଳୀୟ ଭିତ୍ତିରେ ବିଭାଜିତ ହୋଇଛି । ଗ୍ରାମରେ ଏକତା ନାହିଁ । ଗୋଟିଏ କେସ୍ କୋର୍ଟରେ ଅଛି । ଗ୍ରାମର ଗରିବ ଲୋକମାନେ ୧୦୦ଟି ଶାଳ ପତ୍ରକୁ ୫୦ ପଇସାରେ ବିକ୍ରି କରୁଛନ୍ତି । ମେସିନରେ ଖଲି ତିଆରି ହେଉଛି । ଗୋଟିଏ ଖଲିକୁ ୩୦ ପଇସାରେ ବିକ୍ରୀ କରାଯାଉଛି । ଗୋଟିଏ ମେସିନ୍‌ର ଦାମ୍ ୫୦୦୦ଟଙ୍କା ପଡୁଛି । ସାଧାଖଲି ୮୦ଟିକୁ ୨ ଟଙ୍କାରେ ବିକ୍ରୀ କରାଯାଉଛି ।

ତା ପରେ ୧୪୦ ଘର ବିଶିଷ୍ଟ ସିକ୍ରିଡ଼ା ଗ୍ରାମରେ ସନ୍ଧ୍ୟାରେ ସଭା ହୋଇଥିଲା । ସଭାରେ ପ୍ରାୟ ୧୭୫ ଜଣ ଯୋଗ ଦେଇଥିଲେ । ଗ୍ରାମରେ ଏକତା ନାହିଁ । ଗୋଟିଏ କେସ୍ କୋର୍ଟରେ ଅଛି । ଗ୍ରାମବାସୀ ନିଜ ଉଦ୍ୟମରେ ପୋଖରି ଖୋଳିବାକୁ ପ୍ରସ୍ତୁତ ନୁହନ୍ତି । ସରକାରୀ ସାହାଯ୍ୟକୁ ଅନାଇ ବସିଛନ୍ତି । ଗ୍ରାମର ମାଇନର ସ୍କୁଲର ଅବସ୍ଥା ଶୋଚନୀୟ । ୨ ବଖରା ଘରର କାନ୍ଥ ନାହିଁ । ସଭାରେ ଜଣା ପଡ଼ିଲା ଯେ କୁହାଳିଆ ଲୋକ ମାନଙ୍କର ଗଠନ ମୂଳକ ମନୋବୃତ୍ତି ନାହିଁ, ସେମାନେ ବିଭିନ୍ନ ବାଧାବିଘ୍ନ କଥା କହୁଥିଲେ । ସମୂହ ପ୍ରଚେଷ୍ଟା ଦ୍ୱାରା କିପରି ବାଧାବିଘ୍ନ ଗ୍ରାମର ଦୂର କରାଯାଇପାରିବ ଗ୍ରାମର ଉନ୍ନତି ହୋଇପାରିବ ସେ କଥା କହୁ ନଥିଲେ । ଯେଉଁମାନେ ଜଙ୍ଗଲରୁ କାଠ ଚୋରି କରୁଛନ୍ତି ସେମାନଙ୍କ ବିରୁଦ୍ଧରେ ମକଦ୍ଦମା କରିବା ଉପରେ ବାରମ୍ୱାର ଗୁରୁତ୍ୱ ଦେଉଥିଲେ । କିନ୍ତୁ ପଦଯାତ୍ରୀ ଦଳ କହିଥିଲେ ଯେ ସେମାନେ ସଂପୃକ୍ତ ଥିବା 'ବୁଦ୍ଧଗ୍ରାମ ପରିବେଶ ଆନ୍ଦୋଳନ'ର ଆଭିମୁଖ୍ୟ ହେଉଛି, ଯେଉଁମାନେ ଜଙ୍ଗଲ ନଷ୍ଟ କରୁଛନ୍ତି ସେମାନଙ୍କ ବିରୁଦ୍ଧରେ ନ ଯାଇ ସେମାନଙ୍କୁ ବୁଝାଇ ବାଟକୁ ଆଣିବା । ହିଂସା ପଥ ଛାଡ଼ି ଅହିଂସା ଉପରେ ଗୁରୁତ୍ୱ ଦିଆଯାଇଥିଲା । ଏହି ଗ୍ରାମ କୁଆଁରିଆ ନଦୀ କୂଳରେ ଅବସ୍ଥିତ । ନଦୀ ନିକଟରେ ବିଲମାନଙ୍କରେ ପ୍ରାୟ ୩୦୦ କିରା (ଶୁଆ ଜାତୀୟ ପକ୍ଷୀ) ଧାନ ଖାଉଥିବାର ଅନନ୍ୟ ଶୋଭା ଦେଖା ଯାଉଥିଲା ।

ଏହାପରେ ୩୦ ଘର ବିଶିଷ୍ଟ କନ୍ଧ ଗ୍ରାମ ଅମେଇ ମୁହାଁରେ ପଦଯାତ୍ରୀ ଦଳ ପହଞ୍ଚିଥିଲେ। ସ୍ତ୍ରୀ ଲୋକମାନଙ୍କ ସହିତ ପ୍ରାୟ ୪୦ ଜଣ ସଭାରେ ଯୋଗ ଦେଇଥିଲେ । କେତେଦିନତଳେ ଦଶପଲ୍ଲା ସହରର କେତେକ ଲୋକ ଗ୍ରାମ ଜଙ୍ଗଲ ନଷ୍ଟ କରିବାକୁ ଆସିବାରୁ ଗ୍ରାମବାସୀ ବାଧା ଦେଇଥିଲେ । ତାପରେ ସହରର

ଲୋକମାନେ ବନ୍ଧୁକ ଧରି ଆସିଥିଲେ ଓ ଗ୍ରାମବାସୀଙ୍କୁ ଗଛରେ ବାନ୍ଧିଦେଇ ମାଡ଼ ଦେବାରେ ଅଭିଯୋଗ ହୋଇଥିଲା । ୧୭ ଘର ବିଶିଷ୍ଟ ବଡ଼ ବାରଣା ଗ୍ରାମବାସୀ ୨୦ ଏକର ଶାଳ ଜଙ୍ଗଲ ରକ୍ଷା କରିଛନ୍ତି । ଆଠଘର ବିଶିଷ୍ଟ ଡୁମୁଡୁମା ଗ୍ରାମର ଅଧିବାସୀ ହେଉଛନ୍ତି କନ୍ଧ । ମହିଳାମାନଙ୍କ ସହିତ ପ୍ରାୟ ୩୦ ଜଣ ସଭାରେ ଯୋଗ ଦେଇଥିଲେ । ଗାଁରେ ଏକତା ରହିଛି । ରାତି ୧୦ଟାରେ ସେ ଦିନର ପଦଯାତ୍ରା ସାଙ୍ଗ ହୋଇଥିଲା ।

ଜାନୀୟାରୀ ୧ ତାରିଖରେ ପୂର୍ବାହ୍ନ ୯.୩୦ ବେଳେ ୫୦ ଘର ବିଶିଷ୍ଟ ଚାଞ୍ଚଲ୍ୟପଲ୍ଲୀ ଗ୍ରାମରେ ସଭା ହୋଇଥିଲା । ଗ୍ରାମରେ ପଶୁ ପଶୁ ପଦଯାତ୍ରୀ ଦଳଙ୍କୁ ପ୍ରଶ୍ନ କରାଯାଇଥିଲା - "ଆପଣ ଜନତା ନା କଂଗ୍ରେସ ଦଳର", ସଭାରେ ୩୨ ଜଣ ଯୋଗ ଦେଇଥିଲେ । ଗ୍ରାମରେ ଏକତା ଅଛି । କେସ୍ ନାହିଁ । ଗ୍ରାମବାସୀ ବେଠିକରି ପୋଖରୀ ଖୋଳୁଛନ୍ତି । ମାଛ ଚାଷରୁ ବାର୍ଷିକ ୩୦୦୦ ଟଙ୍କା ମିଳୁଛି । ସେ ଟଙ୍କା ଉନ୍ନତି ମୂଳକ କାର୍ଯ୍ୟରେ ବ୍ୟୟ ହେଉଥିଲା ।୩୨୦ ଘର ବିଶିଷ୍ଟ ଜଗନ୍ନାଥ ପ୍ରସାଦ ଗ୍ରାମର ମାଇନର ସ୍କୁଲରେ ସଭା ହୋଇଥିଲା । ସଭାପରେ ପ୍ରାୟ ୧୦୦ ଜଣ ଛାତ୍ର ଛାତ୍ରୀ ସ୍ଲୋଗାନ ଦେଇ ଗ୍ରାମ ପରିକ୍ରମା କରିଥିଲେ । ୬ଟି ଯାକ ସାହି ପରିକ୍ରମା କଲାପରେ ମଧ୍ୟ ସଭାକୁ ମାତ୍ର ୩୦ ଜଣ ଲୋକ ଆସିଥିଲେ । ଗାଁରେ କା ମୁହଁ କୁଆଡ଼େ । ୫ ଟି କେସ୍ କୋର୍ଟରେ ରହିଛି । ଗ୍ରାମବାସୀଙ୍କଠାରୁ ଜଣା ପଡ଼ିଲା ଯେ ୧୫୦ ଏକର ଶାଳ ଜଂଗଲ କାଟି, ଜଂଗଲ ବିଭାଗ ଶାଗୁଆନ, ଗମ୍ଭାରି, ବାଉଁଶ, ଶିମିଳି ଲଗାଇଥିଲେ । କିନ୍ତୁ ସେ ସମସ୍ତ ଗଛ ମରିଗଲା ।

ମଧ୍ୟାହ୍ନରେ ୨୦୭ ବିଶିଷ୍ଟ ସୋରଡ଼ା ଗ୍ରାମରେ ଆମେ ପହଞ୍ଚିଥିଲୁ । ସଭାରେ ପ୍ରାୟ ୨୦୦ ଲୋକ ଯୋଗ ଦେଇଥିଲେ । ମାଛ ଚାଷରୁ ବାର୍ଷିକ ୪୦୦୦ଟଙ୍କା ଆୟ ହେଉଛି । ଗ୍ରାମବାସୀ ତାହା ଗ୍ରାମର ଉନ୍ନତିରେ ନ ଲଗାଇ ସେ ମାଛକୁ ଭାଗ ବାଣ୍ଟି ଖାଉଛନ୍ତି ।

ଉପରୋକ୍ତ ୨୧ ଟି ଗାଁରେ ୩ ଦିନ ଧରି ପଦଯାତ୍ରା କଲାପରେ ଦେଖା ଯାଇଥିଲା ଯେ ଗାଁ ମାନଙ୍କରେ ଏକତା ନାହିଁ । ତେଣୁ ଗ୍ରାମବାସୀମାନେ ସାମୂହିକ ଓ ସ୍ୱେଚ୍ଛାକୃତ ଉଦ୍ୟମ କରି ଗ୍ରାମର ଉନ୍ନତି ମୂଳକ କାର୍ଯ୍ୟ କରିବେ ଓ ଜଂଗଲ ରଖିବେ ଏହା ସମ୍ଭବ ପର ମନେ ହେଉନାହିଁ । ଅବଶ୍ୟ ଛୋଟ ଗାଁ ମାନଙ୍କରେ ଅପେକ୍ଷାକୃତ ଅଧିକ ଏକତା ପରିଲକ୍ଷିତ ହୋଇଥିଲା । ବଡ଼ଗ୍ରାମମାନେ ଦୁଇ ବିବାଦମାନ ଗୋଷ୍ଠୀରେ ପରିଣତ ହୋଇ ଦଳାଦଳିରେ ମାତିଥିବା ପରିଲକ୍ଷିତ ହୋଇଥିଲା । ଗ୍ରାମବିବାଦ ଗ୍ରାମରେ ନ ତୁଟି ହାଟରେ ପଡ଼ି ଦାଣ୍ଡରେ ଗଡୁଛି । ଥାନା ଓ କୋର୍ଟକୁ କେସ୍ ନେଇ

ଗ୍ରାମବାସୀ ସର୍ବସ୍ୱାନ୍ତ ହେଉଛନ୍ତି । ପୋଖରୀ, ଗାଡ଼ିଆ ଖୋଳିବା ପାଇଁ ମନୋବୃତ୍ତି ନାହିଁ । ଯେଉଁଠାରେ ମାଛ ଚାଷ ହେଉଛି ମାଛ ବାଣ୍ଟିକରି ଗ୍ରାମବାସୀ ଖାଉଛନ୍ତି । ସେ ଟଙ୍କାରେ ପୋଖରି ଖୋଳିବାର ପ୍ରୟାସ ନାହିଁ । ୧୮୭୮ ମସିହାରୁ ବ୍ରିଟିଶ୍ ସରକାର ଜଙ୍ଗଲକୁ ସରକାରଙ୍କ ନିୟନ୍ତ୍ରଣକୁ ନେବାଠାରୁ ଜଂଗଲର ଦ୍ରୁତ ଅବକ୍ଷୟ ଚାଲିଛି । ସ୍ୱାଧୀନତା ପରେ ଏହି ପ୍ରକ୍ରିୟା ତ୍ୱରାନ୍ୱିତ ହୋଇଛି । ସରକାର ଜଂଗଲ ରକ୍ଷା କରି ପାରିଲେ ନାହିଁ । ଗ୍ରାମବାସୀଙ୍କର ମଧ୍ୟ ଜଂଗଲ ରଖିବା ପାଇଁ ମନୋବୃତ୍ତି ନାହିଁ । ଏହା ଗଭୀର ଚିନ୍ତାର ବିଷୟ ହୋଇପଡ଼ିଛି ।

ସମ୍ବାଦ ୧୦.୦୪.୯୨

# ଗ୍ରାମେ ଗ୍ରାମେ ପରିବେଶ

**ନାରାୟଣ ହଜାରୀ**

ନୟାଗଡ଼ ଜିଲ୍ଲାର ବୁନ୍ଧ ଗ୍ରାମ (କେଶରପୁର)ଠାରେ ଅବସ୍ଥିତ 'ବୃକ୍ଷ ଓ ଜୀବରବନ୍ଧୁ' ସ୍ୱେଚ୍ଛାସେବୀ ଅନୁଷ୍ଠାନ ତରଫରୁ ୧୯୮୬ ମସିହା ଜୁନ୍ ୧୭ ଓ ୧୮ ତାରିଖ ଦୁଇଦିନ, ଖଣ୍ଡପଡ଼ାର ମହାନଦୀ ନିକଟସ୍ଥ ୧୯ଟି ଗ୍ରାମରେ ପଦଯାତ୍ରା ହୋଇଥିଲା । ଏଥିରେ କୋସ୍‌କା ଠାରେ ଅବସ୍ଥିତ 'ମଧୁଚକ୍ର' ସ୍ୱେଚ୍ଛାସେବୀ ଅନୁଷ୍ଠାନ ସହାୟତା କରିଥିଲା । ପଦଯାତ୍ରାରେ ଲେଖକଙ୍କ ସମେତ୍ ୨୫ ଜଣ ଶିକ୍ଷକ, କୃଷକ, ଯୁବକ ଯୋଗଦେଇଥିଲେ । ଖଣ୍ଡପଡ଼ା, ନୂଆପଲୀ, ରୂପାପଲ୍ଲୀ, ପୁରୁଣାଗଡ଼ିଆସାହି, ପଥରଖଣ୍ଡ, ସରପୋଖରୀ, କୁଞ୍ଜବେରୀ, ରାକେସିଆ, ପିତାମହୁଲ, ନଟବରପୁର, ନୂଆଗଡ଼ିଆସାହି ଗ୍ରାମମାନଙ୍କରେ ପଦଯାତ୍ରା ହୋଇଥିଲା । ଏ ଅଞ୍ଚଳରେ ଶାଳ, ପିଆଶାଳ, ଅସନ, କେନ୍ଦୁ, ମହୁଲ, ବାହାଡ଼ା, ଅଁଳା, ହରିଡ଼ା, ବାନ୍ଧଣ, ଲେମ୍ବୁର, ମଇ ଆଦି ଗଛ ବହୁ ପରିମାଣରେ ପାହାଡ଼ମାନଙ୍କରେ ଓ ପାଦଦେଶରେଦେଖା ଯାଇଥିଲା । ୬୨ ଘର ବିଶିଷ୍ଟ ଖୁଣ୍ଟୁବନ୍ଧ ଗ୍ରାମରୁ ପଦଯାତ୍ରା ଆରମ୍ଭ ହୋଇଥିଲା । ଗ୍ରାମସଭାରେ ପ୍ରାୟ ଚାଳିଶ ଜଣ ଲୋକ ଯୋଗ ଦେଇଥିଲେ । ପାର୍ଶ୍ୱବର୍ତ୍ତୀ ଜଙ୍ଗଲକୁ ଗ୍ରାମବାସୀମାନେ ଜଗିବାକୁ ପ୍ରସ୍ତୁତ ନଥିଲେ । ମଜୁରୀ ମିଳିଲେ ଜଗିବାକୁ ପ୍ରସ୍ତୁତ ଅଛନ୍ତି ବୋଲି କହିଥିଲେ । ଷାଠିଏ ଘର ବିଶିଷ୍ଟ ବେଡ଼ାଙ୍ଗୀ ଗ୍ରାମବାସୀ ମାନଙ୍କମଧ୍ୟରୁ ଦୁଇ ଜଣ ଠେଙ୍ଗାପାଳି କରି ଦୁଇବର୍ଷ ହେଲା ଜଙ୍ଗଲ ଜଗୁଛନ୍ତି । ଦୁଇଶହ ଘର ବିଶିଷ୍ଟ ସଂଘାପଡ଼ା ଗ୍ରାମର ଖୁବ୍ କମ ଲୋକ ସଭାରେ ଯୋଗଦେଇଥିଲେ । ଜନତା କଂଗ୍ରେସ ଦଳ ଭିତ୍ତିରେ ଗ୍ରାମ ଦୁଇ ଭାଗ ହୋଇ ଅଛି । ତେଣୁ ଦୁଇଟିଯାକ ସାହିରେ ଅଲଗା ଅଲଗା ସଭା ହୋଇଥିଲା । ପ୍ରାୟ ୪୦ ଲେଖାଁଏ ଲୋକ ଯୋଗ ଦେଇଥିଲେ । ଏକତା ଅଭାବରୁ ଗ୍ରାମବାସୀ ଜଙ୍ଗଲ ଜଗିନାହାନ୍ତି । ତିରିଶି ଘର ବିଶିଷ୍ଟ କୁଞ୍ଜବାରି ପ୍ରସାଦ ଗ୍ରାମବାସୀମାନେ ସଂକୀର୍ତ୍ତନ କରି ପଦଯାତ୍ରୀମାନଙ୍କୁ ସମ୍ବର୍ଦ୍ଧିତ କରିଥିଲେ । ସେମାନଙ୍କର ଜଙ୍ଗଲ ନାହିଁ । ନିଜ ବାଡ଼ି, ବିଲହିଡ଼, ପୋଖରୀହୁଡ଼ା ଓ

ଗ୍ରାମର କୋଠ ଜାଗାରେ ଗଛ ଲଗାଇବାକୁ ଲୋକମାନଙ୍କୁ ବୁଝାଯାଇଥିଲା । ବାର ଘର ବିଶିଷ୍ଟ ବରଗୁଣ୍ଡ ଏକ ଆଦିବାସୀ ଗ୍ରାମ । ଏମାନେ କନ୍ଧ ସଂପ୍ରଦାୟର । ଏଇ ଗ୍ରାମ ପରିକ୍ରମା କଲାପରେ, ୩୦ ଘର ବିଶିଷ୍ଟ ଦତ୍ତପୋଖରୀ, ୧୯ ଘର ବିଶିଷ୍ଟ ଆଦିବାସୀ ଗ୍ରାମ କରଡ଼ାବଣୀଠାରେ ସଭା କରାଯାଇଥିଲା । ଦତ୍ତ ପୋଖରୀରେ ଦିନ ଦୁଇଟାରେ ମଧ୍ୟାହ୍ନ ଭୋଜନ ହୋଇଥିଲା ତାପରେ ପୋଡ଼ାନୂଆଗାଁରେ ପଦଯାତ୍ରୀ ବୃନ୍ଦ ପହଞ୍ଚିଥିଲେ । ଏହି ଗ୍ରାମରେ ୧୫ ଘର କନ୍ଧ ଅଛନ୍ତି । କେନ୍ଦୁପତ୍ର ଏକ କେଜିକୁ ୮ ଟଙ୍କା ଦରରେ ବିକ୍ରି କରୁଛନ୍ତି । ଏହି ଗ୍ରାମବାସୀ କହିଲେ ଯେ, "ରିଜର୍ଭ ଜଙ୍ଗଲ ସେମାନେ ଜଗିଲେ, ଜଙ୍ଗଲରୁ କାଠ ନେଇଥିବା ଅନ୍ୟ ଗ୍ରାମର ଲୋକେ ପଚାରୁଛନ୍ତି ରିଜର୍ଭ ଜଙ୍ଗଲ ଜଗିବାକୁ ତମକୁ କିଏ ଅଧିକାର ଦେଲା ?" ତାପରେ ୪୫ ଘର ବିଶିଷ୍ଟ ସମ୍ବରବିନ୍ଧାରେ ସନ୍ଧ୍ୟାରେ ପହଞ୍ଚିଥିଲୁ । ଏହି ଗ୍ରାମ ପାହାଡ଼ର ପାଦ ଦେଶରେ । ଦିନ ଥିଲା, ଏ ଅଞ୍ଚଳରେ ଏତେ ସମ୍ବର ଥିଲା ଯେ, ଲୋକମାନେ ସମ୍ବର ବିନ୍ଧିବାକୁ ଏଠାକୁ ଆସୁଥିଲେ । ଏଣୁ ଗ୍ରାମର ଏହିପରି ନାମକରଣ କରା ଯାଇଅଛି । ଗ୍ରାମର ଅନେକ ଲୋକ କାଠ ବିକ୍ରିକରି ବଞ୍ଚନ୍ତି । ଶଗଡ଼ର ଗୋଟିଏ ପହିକୁ ୧୦ ଟଙ୍କାରେ ଓ ଅରକୁ ୫ଟଙ୍କାରେ ବିକ୍ରି କରନ୍ତି । ଆଉ କେତେ ବର୍ଷ ଜଙ୍ଗଲର କାଠ ବିକ୍ରି କରି ଜୀବିକା ନିର୍ବାହ କରିବେ ବୋଲି ପଚାରିବାରୁ, ଉତ୍ତର ଦେଲେ ଯେ, ବଡ଼ହେଲେ ଜଙ୍ଗଲ ଆଉ ଦଶବର୍ଷ କାଠ ଯୋଗାଇବ । ତାପରେ କିପରି ଚଳିବେ ବୋଲି ପ୍ରଶ୍ନ କରିବାରୁ ଗ୍ରାମବାସୀ ନିରୁତ୍ତର ରହିଲେ । ପରିବେଶ ସଂପର୍କରେ ଦାସକାଠିଆ ହେବାରୁ ସଭାରେ ଶତାଧିକ ଲୋକ ଯୋଗ ଦେଇଥିଲେ । ଏହି ଗ୍ରାମରେ ଓ ପଡ଼ୋଶୀ ଗ୍ରାମମାନଙ୍କରେ ଆମ୍ବ ଗଛ ବିକ୍ରି କରି, କେତେକ ଲୋକ ଜମି କିଣିବାରେ ଲାଗିଛନ୍ତି । ତାଙ୍କୁ ବୁଝାଇଲୁ ଯେ, ଗଛ ଗଲେ ପତ୍ର ରହିବ ନାହିଁ । ତେଣୁ ଜମିର ଉର୍ବରତା ରହିବ ନାହିଁ । ଗଛ ଗଲେ ବର୍ଷା ହେବନାହିଁ ଓ ମାଟି ତଳେ ଥିବା ପାଣିର ସ୍ତର ତଳକୁ ଚାଲିଯିବ । ଏପରି ସ୍ଥିତିରେ ଜମି କିଣିବାର ଉଦ୍ଦେଶ୍ୟ ବ୍ୟର୍ଥ ହେବ । ଗ୍ରାମବାସୀ କହିଲେ ଯେ, ରିଜର୍ଭ ଜଙ୍ଗଲ ଜଗିଲେ, ପଡ଼ୋଶୀ ଗ୍ରାମବାସୀ ଗଛ କାଟିବେ ଓ ସରକାର ଜଙ୍ଗଲ ଉପରେ ନିଜର ମାଲିକାନା ସାବ୍ୟସ୍ତ କରିବେ । ପଦଯାତ୍ରୀମାନେ ବୁଝାଇଲେ ଯେ ଜଙ୍ଗଲ, ଜମି, ପାଣି ଓ ଖଣିଜ ପଦାର୍ଥ ଉପରେ ଲୋକଙ୍କର ଅଧିକାର ସାବ୍ୟସ୍ତ କରିବାକୁ ହେବ । ୧୮୮୮ ମସିହାରେ ବ୍ରିଟିଶ ସରକାର ଜଙ୍ଗଲ ଉପରେ ସରକାରଙ୍କର ମାଲିକାନା ସାବ୍ୟସ୍ତ କଲେ । ତା ଆଗରୁ ହଜାର ହଜାର ବର୍ଷ ହେଲ ଜଙ୍ଗଲ ଉପରେ ଲୋକମାନଙ୍କର ମାଲିକାନା, ପରିଚାଳନା ଓ କର୍ତ୍ତୃତ୍ୱ ଥିଲା । ଜଙ୍ଗଲ, ଜମି, ପାଣି ଉପରେ ଅଧିକାର ସାବ୍ୟସ୍ତ

କରିବାକୁ ଜନ ଆନ୍ଦୋଳନ କରିବାକୁ ହେବ । ଜନସାଧାରଣଙ୍କୁ ସଚେତନ ଓ ସଂଗଠିତ କରିବାକୁ ସକ୍ରୀୟ ସମାଜକର୍ମୀ ଆବଶ୍ୟକ ।

ଲୋକେ ଜଙ୍ଗଲ ଜଗିବା ପରେ, ଯଦି ସରକାର ବା ନିକଟବର୍ତ୍ତୀ ଗ୍ରାମବାସୀ ଆକ୍ରମଣ କରନ୍ତି, ଲୋକମାନେ ଅହିଂସା ଉପାୟରେ ଏ ବିପଦର ସମ୍ମୁଖୀନ ହେବାକୁ ହେବ । ପଡ଼ୋଶୀ ଗ୍ରାମମାନଙ୍କରେ ଯେଉଁଠାରୁ ଆକ୍ରମଣ ହେବ, ସେଠାରେ ଲୋକମାନଙ୍କୁ ବାରମ୍ବାର ବୁଝାଇଲେ ସେମାନେ ବାଟକୁ ଆସିବେ । ଆକ୍ରମଣକାରୀମାନଙ୍କୁ ବୁଝାଇବାକୁ ହେବ ଯେ, ଜଙ୍ଗଲର ବିଲୋପ ହେବା ସେମାନଙ୍କର ସ୍ୱାର୍ଥାନୁକୁଳ ନୁହେଁ । ଜଙ୍ଗଲର ଉପକାର ସଂପର୍କରେ ନିମ୍ନଲିଖିତ ସଂଗୀତ ଗାନ କରାଯାଇଥିଲା ।

ବୃକ୍ଷମାତା ବୃକ୍ଷପିତା, ବୃକ୍ଷଗୁରୁ ବୃକ୍ଷସଖା,
ବୃକ୍ଷ ଅଟେ ମୋର ପ୍ରଭୁ, ବୃକ୍ଷମୋର ପ୍ରାଣଦାତା ।
ବୃକ୍ଷ ଦିଏ ସିନା ବର୍ଷା, ବୃକ୍ଷ ସୃଷ୍ଟି କରେ ଭୂମି,
ଖାଦ୍ୟବସ୍ତ୍ର ବାସଗୃହ, ଗୋଖାଦ୍ୟ ଆଉ ଜାଳେଣୀ ।
ଚାଷ ଉପକରଣଯେ, ଔଷଧ ଓ ଅମ୍ଳଜାନ,
ଛାୟା ପରଦାନ କରି, ରଖଇ ଜୀବ ଜୀବନ ।
ବୃକ୍ଷ ଅଟେ ମୁନି ଋଷି, ବୃକ୍ଷ ଅଟେ ସାଧୁ ସନ୍ଥ,
ଖରା ବର୍ଷା ଶୀତ ସହି, ଅଟେ ସେ ତପସ୍ୟାରତ ।
କଷଣ ବିଷ ପାନକରି, ତ୍ୟାଗ ସାଧନା ତା ବ୍ରତ,
ନୀଳକଣ୍ଠ ନାମ ତାର, ପରିହିତେ ଅବିରତ ।

ଲୋକ ଜଗିଥିବା ଜଙ୍ଗଲ ଉପରେ ସରକାର ଯଦି ଅଧିକାର ସାବ୍ୟସ୍ତ କରିବାର ଚେଷ୍ଟା କରନ୍ତି ସରକାରଙ୍କୁ ବୁଝାଇବାକୁ ହେବ ଯେ, ୧୮୮୮ ମସିହାରୁ ଆଜିପର୍ଯ୍ୟନ୍ତ ପ୍ରାୟ ଶତାଧିକ ବର୍ଷହେଲା ସରକାର ଜଙ୍ଗଲ ଜଗିପାରି ନାହାନ୍ତି ଓ ସରକାର ଜଙ୍ଗଲ ଜଗିପାରିବେ ନାହିଁ । ତେଣୁ ଉଜୁଡ଼ି ଯାଇଥିବା ଜଙ୍ଗଲର ଲୋକମାନେ ପୁର୍ନଉଦ୍ଧାର କଲେ, କେଉଁ ନୈତିକତା ବଳରେ ସରକାର ଜଙ୍ଗଲ ଉପରେ ନିଜର ଅଧିକାର ସାବ୍ୟସ୍ତ କରିବେ । ସରକାର ଯଦି ଜବରଦସ୍ତ ଜଙ୍ଗଲକୁ ହାତକୁ ନେବାକୁ ଚେଷ୍ଟା କରନ୍ତି, ଲୋକେ ଜୀବନ ଦେବାକୁ ପ୍ରସ୍ତୁତ ହେବା ଦରକାର । ପ୍ରାୟ ୨୫୦ ବର୍ଷ ତଳେ ରାଜସ୍ଥାନର ଗୋଟିଏ ପ୍ରାକ୍ତନ ଗଡ଼ଜାତରେ ଜଙ୍ଗଲ ସୁରକ୍ଷା ପାଇଁ ୩୦୦ ଲୋକ ପ୍ରାଣବଳୀ ଦେଇଥିଲେ । ଏ ବଳୀଦାନରେ ଅମୃତ ଦେବୀ ନାମକ ଜଣେ ମହିଳା ନେତୃତ୍ୱ ନେଇଥିଲେ ।

ସମ୍ବରବିନ୍ଧା ଗ୍ରାମ ଜଙ୍ଗଲରେ ଏପର୍ଯ୍ୟନ୍ତ କାଁ ଭାଁ ବାରହା, କୁଟରା, ମିରିଗ, ସମ୍ବର ଦେଖା ଯାଆନ୍ତି । ଗ୍ରାମରେ ମହୁଲି ମଦର ବ୍ୟାପକ ପ୍ରଚଳନ ରହିଛି । ମହିଳାମାନେ ମଦ୍ୟପାନ କରନ୍ତି ନାହିଁ । ଯୌତୁକର ଦୌରାତ୍ମ୍ୟ ଏଠାରେ ନାହିଁ । ବିବାହ ବିଛେଦ ହେଲେ, ବାପ ପାଖରେ ପିଲାମାନେ ରହନ୍ତି । ମା ଯଦି ପୁନର୍ବିବାହ ନକରେ, ବାପାର ସମ୍ମତିରେ ପିଲାଙ୍କୁ ନେଇ ପାରେ । ଗ୍_ାମର ଏକତା ଦୁର୍ବଳ, ତେବେ ଥାନା,କୋର୍ଟରେ କେଶ ନାହିଁ । ମଜୁରୀ ଟ ୨୫ ରହିଛି । ପ୍ରତି ବର୍ଷ ଗୋଟିଏ ଜନ୍ତାଳ ହୁଏ । ଭାତ, ଡ଼ାଲି, ମାଂସ ଆବାଳ ବୃଦ୍ଧ ବନିତା ଖାଆନ୍ତି । ଅଧାପିଲା ଲଙ୍ଗଳା ଦେଖିଲୁ । ରତ୍ରି ଭୋଜନ କଲା ବେଳକୁ ରାତି ଘ ୧୨.୩୦ ମିନିଟ ହେଲାଣି ।

ତାପରେ ନୂଆପଲ୍ଲୀରେ ପହଞ୍ଚିଲୁ । ଖଣ୍ଡାୟତ ଓ ହରିଜନ ମିଶି ୪୫ ଘର । ଅଠର ତାରିଖରେ ରୂପାପଲ୍ଲୀ ଗ୍ରାମରେ ପହଞ୍ଚିଲୁ । ତିରିଶି ଘର । ତିନୋଟି ମିଡ଼ିୟମ୍ ଡ଼ଗ୍ ୱେଲ ଦେଖିଲୁ । ସାରା ଦେଶରେ ଆଦିବାସୀ, ଦଳିତ ଓ ଦରିଦ୍ର ଚାଷୀଙ୍କ ପାଇଁ ଏକ ନିୟୁତ ସେଚକୂଅ ଖୋଳା ଯାଉଛି । ଗୋଟିଏ କୂଅ ପାଇଁ ପ୍ରାୟ ଟ୧୫,୦୦୦ଟଙ୍କା ଚାଷୀଙ୍କୁ ଦିଆଯାଉଅଛି । ଜଳସେଚନ ପାଇଁ । ଏଇ ତିନୋଟି କୂଅ ଦେଖିଲୁ ଯେ ଅତି ଅଳ୍ପ ପାଣି ଅଛି । ଶୁଣିବାକୁ ପାଇଲୁ ଯେ, କାହାକୁ ସେଚକୂଅ ମଞ୍ଜୁରୀ ହୋଇଛି, ତାହା କଣ୍ଟ୍ରାକ୍ଟର ବ୍ଲକରୁ ଆଣି ଯାଉଛନ୍ତି । ତାପରେ ଆସି କୂଅମଞ୍ଜୁରୀ ପାଇଥିବା ଚାଷୀଙ୍କୁ ୧୦୦୦/୨୦୦୦ ଟଙ୍କା ଦେଇ ଦେଉଛନ୍ତି । ତପରେ କଣ୍ଟ୍ରାକ୍ଟର ନିମ୍ନ ମାନର କୂଅଟିଏ କରି ଦେଉଛନ୍ତି । କିଛି ଟଙ୍କା ବ୍ଲକର କର୍ମଚାରୀଙ୍କୁ ଦେଇ ତାଙ୍କ ମୁହଁ ବନ୍ଦ କରି ଦେଉଛନ୍ତି । କୁରୁଣା ଗଡ଼ିଅଳ ସାହିରେ ୪୪ ଘର ଗ୍ରାମରେ ପଶୁପଶୁ ଜଣେ ଦଳିତ ମହିଳା କହିଲେ, ଜଙ୍ଗଲ ଜଗିଲେ ଆମେ କାଠ କେଉଁଠୁ ଆଣି ବିକିବୁ? ବଞ୍ଚିବୁ କିପରି? ତାଙ୍କୁ ଯେତେବେଳେ ଆମେ ବୁଝାଇଲୁ ଯେ ଆଉ ଅଳ୍ପ ବର୍ଷପରେ ଜଙ୍ଗଲ ସରିଗଲା ପରେ, ସେମାନେ କେଉଁଠୁ କାଠ ଆଣି ବିକ୍ରି କରି ବଞ୍ଚିବେ, ସେ ମହିଳାଙ୍କର ବାକସ୍ଫୁର୍ତ୍ତୀ ହେଲାନାହିଁ । ତପରେ ୧୧୦ ଘର ବିଶିଷ୍ଟ ପଥର ଖଣ୍ଡ ଗ୍ରାମରେ ପହଞ୍ଚିଲୁ । ଏକ ଶତ ଘର ବିଶିଷ୍ଟ ସରପୋଖରୀ ଗ୍ରାମବାସୀ ୨୫ ବର୍ଷ ହେଲା ଜଙ୍ଗଲ ଜଗିଛନ୍ତି । ଦୁଇ ଜଣ ଠେଙ୍ଗାପାଳି କରୁଛନ୍ତି । ଏହି ଗ୍ରାମବାସୀ ନିଜ ଜଙ୍ଗଲ ଜଗିବା ସଙ୍ଗେ ସଙ୍ଗେ ଦୂର ଜଙ୍ଗଲ ନଷ୍ଟ କରୁଛନ୍ତି । କୁଞ୍ଜବେରି ଗ୍ରାମରେ ପହଞ୍ଚିଲା ବେଳକୁ ଦିନ ୧୨ଟା ହେଲାଣି । ଛୟାଳିଶି ଘର ବିଷିଷ୍ଟ ଏହି ଗ୍ରାମବାସୀ ୪୦ ବର୍ଷ ହେଲା ଜଙ୍ଗଲ ଜଗୁଛନ୍ତି । ଗ୍ରାମକୁ ବିଜୁଳି ଆସିଥିଲା । କିନ୍ତୁ ତାର ଚୋରି ହୋଇଯିବାରୁ ବର୍ତ୍ତମାନ ଗ୍ରାମରେ ବିଜୁଳି ନାହିଁ । ଏ ଅଞ୍ଚଳରେ ସଂଘବଦ୍ଧ

ଭାବରେ ଆଲୁମିନିୟମ ବିଜୁଳିତାର ଚୋରି କରାଯାଇ, କଣ୍ଟିଲୋ ବେଲପଡ଼ା, ବନମାଳୀପୁର ଆଦିଗ୍ରାମର ଆଲୁମିନିୟମ୍ କରାଖାନାକୁ ତାରଚୋର ବିକ୍ରି କରୁଛନ୍ତି । ଗ୍ରାମସଭାରେ ପ୍ରାୟ ୭୦ ଲୋକ ଯୋଗ ଦେଇଥିଲେ । ମଧ୍ୟାହ୍ନ ଭୋଜନ ବେଳକୁ ଦିନ ଘ ୨.୩୦ ମି ହେଲା । ରାକେଶିୟା ଗ୍ରାମରେ ୪୨ ଘର । ଏମାନେ ଜଙ୍ଗଲ ଜଗିଛନ୍ତି । ତାପରେ ଆମେ ପହଞ୍ଚିଲୁ ୧୪ ଘର ବିଶିଷ୍ଟ ପିତାମହୁଲ ଗ୍ରାମରେ । ପଞ୍ଚତିରିଶି ଘର ବିଶିଷ୍ଟ ନଟବରପୁର ଶାସନରେ ମଧ ଜଙ୍ଗଲ ରକ୍ଷାପାଇଁ ସଭା କରାଯାଇଥିଲା । ସେଦିନ ସଂଧ୍ୟାରେ ୧୨୦ ଘର ବିଶିଷ୍ଟ ନୂଆଗଡ଼ିଆ ସାହିରେ ପହଞ୍ଚିଥିଲୁ ।

ସଭାରେ ପ୍ରାୟ ୫୦ ଲୋକ ଯୋଗ ଦେଇଥିଲେ । କେତେକ ଲୋକ କହିଥିଲେ ଯେ, ସରକାରଙ୍କ ଉପରେ ସେମାନଙ୍କର ଭରସା ନାହିଁ । ଗ୍ରାମକୁ ରାସ୍ତା ପାଇଁ ଯଦି କୋଡ଼ିଏ ହଜାରଟଙ୍କା ମଞ୍ଜୁରୀ ହେଲା କଣ୍ଟ୍ରାକ୍ଟର ଗ୍ରାମକୁ ଆସି ପ୍ରଥମେ ୨୦୦୦/୩୦୦୦ ଟଙ୍କା ଗ୍ରାମବାସୀଙ୍କୁ ଦେଇ ଦେଉଛି । ତାପରେ ୧୦୦୦/ ୨୦୦୦ ହଜାର ଟଙ୍କାରେ କାମ କରି, ବାକିତକ ଟଙ୍କା କଣ୍ଟ୍ରାକ୍ଟର ଓ ସରକାରୀ କର୍ମଚାରୀ ବାଣ୍ଟି ନେଉଛନ୍ତି । କଣ୍ଟ୍ରାକ୍ଟର ଆସି ଗ୍ରାମ ରାସ୍ତା ତିଆରି ହୋଇଛି ବୋଲି ଗ୍ରାମବାସୀଙ୍କର ଦସ୍ତଖତ ନେଇଯାଉଛି । ଗ୍ରାମବାସୀଙ୍କର ନୀତି ହେଲା - କାନ୍ଦୁଥବ ଗୋଟାଉଥବ । ସେମାନଙ୍କର ଧାରଣା ଯେ ଖଇଚା କାମର ପ୍ରତିବାଦ କଲେ, କିଛି କାମ ହେବନାହିଁ । ଲୋକମାନେ ନିଜକୁ ଅସହାୟ ମଣୁଥିବା ଯୋଗୁ ଅଗତ୍ୟା ଏପରି କରୁଛନ୍ତି ।

ଏସବୁ ଦେଖିଲେ ମନେ ହୁଏ ଦେଶବାସୀ ଓ ପୃଥିବୀବାସୀ ନିମ୍ନଲିଖିତ ବିଷଚକ୍ର ଭିତରେ ସଢୁଛନ୍ତି । ବସ୍ତୁତୃଷ୍ଣା, ଭୋଗବାଦ ଓ ଉପଭୋକ୍ତା ବାଦ ଯୋଗୁ ଓ ଅନ୍ୟାନ୍ୟ କାରଣ ଯୋଗୁଁ ପ୍ରାୟ ୨୫୦ ବର୍ଷ ତଳେ, ବିଲାତରେ ଶିଳ୍ପ ବିପ୍ଳବ ଆରମ୍ଭ ହେଲା । ଏହି ଶିଳ୍ପ ବିପ୍ଳବ ଫଳରେ ପୁଞ୍ଜିବାଦର ଅଭ୍ୟୁଥାନ ହେଲା । ଶିଳ୍ପୀକରଣ ଯୋଗୁଁ ନଗରୀ କରଣର ଉଦ୍ଭବ ହେଲା । ପୁଞ୍ଜିପତି ମାନେ ନଗର ମାନଙ୍କରେ ଠୁଳ ହେଲେ । ଆର୍ଥନୀତିକ କେନ୍ଦ୍ରୀକରଣ ହେଲା । ପୁଞ୍ଜିପତିମାନଙ୍କର ସ୍ୱାର୍ଥ ରକ୍ଷା ପାଇଁ ଏକ କେନ୍ଦ୍ରୀଭୂତ ରାଜନୀତିକ ବ୍ୟବସ୍ଥା ସୃଷ୍ଟି କରାଗଲା । ବର୍ତ୍ତମାନ ସାରା ପୃଥିବୀର ପ୍ରାୟ ସବୁ ଦେଶରେ ଏକ କେନ୍ଦ୍ରୀଭୁତ ରାଜନୀତିକ ବ୍ୟବସ୍ଥାର ପ୍ରଚଳନ ଚାଲିଛି । ଏହି ବ୍ୟବସ୍ଥା ଧନୀକ ଶ୍ରେଣୀର ସ୍ୱାର୍ଥରକ୍ଷା ପାଇଁ ଉଦ୍ଦିଷ୍ଟ । ଏକ କେନ୍ଦ୍ରୀଭୁତ ରାଜନୀତିକ ବ୍ୟବସ୍ଥା ନାମହୀନ ଓ ହୃଦୟହୀନ । ଏହା ଲୋକମାନଙ୍କଠାରୁ ବହୁଦୂରରେ ଥିବାଯୋଗୁ ଓ କ୍ଷମତାର ମଦମତ୍ତତାରେ ନିଜକୁ ହରାଇ ଦେଇଥିବା ଯୋଗୁଁ, ଲୋକଙ୍କର ଦୁଃଖ

ଦୁର୍ଦ୍ଦଶା ପ୍ରତି ସ୍ପର୍ଶକାତରତା ହରାଇ ଥାଏ, ଭାରତ ଭଳି ବିଶାଳ ଦେଶରେ ଏହି ସମସ୍ୟାର ଉତ୍କଟତା ବଢ଼ିଥାଏ ।

ଏକ କେନ୍ଦ୍ରୀୟ ରାଜନୀତିକ ବ୍ୟବସ୍ଥା ସଂସଦୀୟ ବା ରାଷ୍ଟ୍ରପତୀୟ ହୋଇପାରେ । ଉଭୟ ବ୍ୟବସ୍ଥା ରାଜନୀତିକ ଦଳମାନଙ୍କ ଜରିଆରେ ନିଜକୁ କ୍ରିୟାଶୀଳ କରନ୍ତି । ଏହି ରାଜନୀତିକ ଦଳମାନେ ନିଜର ସ୍ୱାର୍ଥସାଧନ ପାଇଁ, ଦେଶବାସୀଙ୍କୁ ଭାଗ ଭାଗ କରିରଖନ୍ତି । ଏହା ବର୍ତ୍ତମାନ ବହୁଗ୍ରାମରେ ଦେଖାଯାଏ । ଓଡ଼ିଶାର ବହୁ ଗ୍ରାମ ଜନତା - କଂଗ୍ରେସ ଭିତ୍ତିରେ ଭାଗ ଭାଗ ହୋଇଛନ୍ତି । ରାଜନନୀତିକ ଦଳମାନେ ଭାବନ୍ତି ଯେ, ଗ୍ରାମମାନଙ୍କୁ ଭାଗ ଭାଗ ନକଲେ ସେମାନେ ବଞ୍ଚିପାରିବେ ନାହିଁ । ସେମାନଙ୍କର ଭାବନା ଯେ ଗ୍ରାମରେ ଏକତା ସେମାନଙ୍କର ସ୍ୱାର୍ଥର ପରିପନ୍ଥୀ, ଗ୍ରାମରେ ରହିଲେ, ସାଧାରଣତଃ ଲୋକମାନେ ଗୋଟିଏ ଦଳକୁ ଭୋଟ ଦେବେ । ଗ୍ରାମରେ ଏକତା ରହିଲେ ଗ୍ରାମବାସୀଙ୍କର ସ୍ୱାତନ୍ତ୍ର୍ୟ ରହେ । ସେମାନେ କାହାର ବଶୀଭୂତ ନହୋଇ ସ୍ୱାଧୀନଭାବରେ ଭୋଟ ଦିଅନ୍ତି । କିନ୍ତୁ ଗ୍ରାମମାନଙ୍କୁ ଭାଗ ଭାଗ କରି ରଖିଲେ ଗ୍ରାମର ଦୁଇ ଅଂଶ ସର୍ବଦା ରାଜନୀତିକ ଦଳଙ୍କର ହାତ ମୁଠାରେ ରହିବ । ଗ୍ରାମଗୁଡ଼ିକୁ ଭାଗ ଭାଗ ହେଲେ, ରାଜନୀତିକ ଦଳ ହିସାବ କରି ପାରିବେ କେଉଁ ଗ୍ରାମରୁ କେତେ ଭୋଟ ପାଇବେ । ବଡ଼ ଦୁଃଖର କଥା ସରଳ ଗ୍ରାମବାସୀ ଏ ଅଭିସନ୍ଧି ନବୁଝି, ରାଜନୀତିକ ଦଳମାନଙ୍କର ସ୍ୱାର୍ଥ ସାଧନର ଶୀକାର ହୁଅନ୍ତି । ଆଗରୁ ଗ୍ରାମ ମାନଙ୍କର ଆର୍ଥନୀତିକ ଓ ସାମାଜିକ ବିଭେଦ ରହୁଥିଲା । କିନ୍ତୁ ସମୟକ୍ରମେ ପ୍ରାକୃତିକ ଉପାୟରେ ଏହି ବିଭେଦର ବିଲୋପ ସାଧନ ହେଉ ଥିଲା । ଆର୍ଥନୀତିକ ଓ ସାମାଜିକ ବିଭେଦ, ରାଜନୀତିକ ସମର୍ଥନ ପାଇଲା ପରେ, ଗ୍ରାମମାନଙ୍କରେ ବିଭେଦର ପ୍ରାଚୀର ସ୍ଥାୟୀ ହୋଇ ଯାଇଛି । ଏତଦ୍ୱାରା ଗ୍ରାମମାନଙ୍କରେ କୌଣସି ଗଠନମୂଳକ କାମ ହୋଇପାରୁ ନାହିଁ । ଗ୍ରାମର ବିକାଶ ପାଇଁ କାମ କରିବା ପରିବର୍ତ୍ତେ ଗ୍ର ାମବାସୀ ନିରନ୍ତର କଳହରେ ବ୍ୟାପୃତ ରହୁଛନ୍ତି । ପିଟାପିଟି, ହଣାହଣି, ବମ୍ ଫୁଟା ସାଙ୍ଗକୁ ଘିଅ କଟାକଟି ଚାଲିଛି । ଏପରିକି ଗୋଟିଏ ସାହିବାଲି ନିଜ ସାହିରେ ନିଆଁ ଲଗାଇଦେଇ, ବିରୋଧୀ ସାହି ଲଗାଇ ଦେଇଛି ବୋଲି ଥାନା ଓ କୋର୍ଟରେ ଅଭିଯୋଗ କରୁଛନ୍ତି । ଅଭାବରେ ଷଡୁଥିବା ଗ୍ରାମବାସୀ ଛୋଟଛୋଟ ବିବାଦକୁ ଭିତ୍ତିକରି ଥାନା ଓ କୋର୍ଟର ଆଶ୍ରୟ ନେଉଛନ୍ତି । କଠିନ ଶ୍ରମକରି ମୁଣ୍ଡ ଛାଳ ତୁଣ୍ଡରେ ମାରି ଯେଉଁ ପଇସା ରୋଜଗାର କରୁଛନ୍ତି ତାହା ପିଲାଙ୍କ ପାଟିରେ ନଦେଇ ଥାନ ଓ କୋର୍ଟରେ ବ୍ୟୟକରୁଛନ୍ତି । ଥାନା ଓ କୋର୍ଟରେ କେଶ୍ କରିବା ସହଜ, କିନ୍ତୁ ସେଥିରୁ ମୁକ୍ତିର ବାଟ ମିଳେ ନାହିଁ । ଜିତିବା ଓ ହାରିବା ଉଭୟ ବିବାଦମାନେ ଗୋଷ୍ଠୀ ସର୍ବସ୍ୱାନ୍ତ ହୁଅନ୍ତି । ଭାରତରେ ପାଞ୍ଚହଜାର ବର୍ଷର ସଭ୍ୟତା ରହିଛି । ଏ ଦେଶରେ ଗ୍ରାମବାସୀମାନେ ନିଜ ନିଜ ମଧ୍ୟରେ ଝଗଡ଼ା ଗ୍ରାମରେ ତୁଟାଉ

ଥିଲେ । ଦୁଇଶହ ବର୍ଷର ବ୍ରିଟିଶ ଶାସନ ଗ୍ରାମବାସୀଙ୍କୁ ଏପରି ମୋହାଶକ୍ତ କରି ରଖିଛି ଯେ, ଥାନା ଓ କୋର୍ଟକୁ ଯିବା ଅଭ୍ୟାସରୁ, ଗ୍ରାମବାସୀମାନେ ଏପର୍ଯ୍ୟନ୍ତ ମୁକୁଳି ପାରୁନାହାନ୍ତି । ମାନସିକ ଦାସତ୍ୱ ଏପରି ହୋଇଯାଇଛି ଯେ, ଆମେ ନିଜ ଉପରେ ବିଶ୍ୱାସ ହରାଇଛୁ । ଦେଶବାସୀଙ୍କ ମାନସିକତାର ପରିବର୍ତ୍ତନ ଅପରିହାର୍ଯ୍ୟ ହୋଇ ପଡ଼ିଛି । ସମାଜସେବୀ ମାନଙ୍କ ପାଇଁ ବିଷମ ପରିସ୍ଥିତି ଏକ ଆହ୍ୱାନ ରୂପେ ଦେଖା ଦେଇଛି ।

ରାଜନୀତିକ ଦଳମାନେ ନିର୍ବାଚନ ବେଳେ ଗ୍ରାମବାସୀ ମାନଙ୍କୁ କହୁଛନ୍ତି ୧୦,୦୦୦/୨୦,୦୦୦ ଟଙ୍କା ନିଅ ଓ ଭୋଟ ଆମ ଦଳୀୟ ପ୍ରାର୍ଥୀଙ୍କୁ ଦିଅ । ଗ୍ରାମବାସୀଙ୍କର ସରକାରଙ୍କ ଉପରେ ଏତେ ଅନାସ୍ଥା ଭାବ ଯେ, ସେମାନେ ଭାବୁଛନ୍ତି ଏଟଙ୍କା ହାତଛଡ଼ା କରିବା ବିଜ୍ଞତାର କାର୍ଯ୍ୟ ହେବନାହିଁ । ଫଳରେ ଗ୍ରାମବାସୀ ନିଜ ଅଜାଣତରେ ନିଜର ଭୋଟ୍ ବିକ୍ରି କରୁଛନ୍ତି । ଏହା ଫଳରେ ଗ୍ରାମବାସୀ ନିଜର ଆତ୍ମନିୟନ୍ତ୍ରଣ ଅଧିକାର ହରାଉଛନ୍ତି । ପ୍ରଚଳିତ ରାଜନୀତିକ ବ୍ୟବସ୍ଥା ଗ୍ରାମବାସୀଙ୍କର ଆତ୍ମନିର୍ଭରଶୀଳତା ନଷ୍ଟ କରି ଦେଉଛି । ଗ୍ରାମବାସୀମାନେ ପରମୁଖାପେକ୍ଷୀ ହୋଇ ଯାଇଛନ୍ତି । ବର୍ତ୍ତମାନ ବିକାଶ ପାଇଁ ସେମାନେ ସରକାରଙ୍କ ଉପରେ ସଂପୂର୍ଣ୍ଣ ନିର୍ଭରଶୀଳ । ରାଜନୀତିକ ବ୍ୟବସ୍ଥା ଲୋକଙ୍କୁ ଭିକାରୀ, ମାଗିଖିଆ ପଙ୍ଗୁ ଓ ସ୍ଥାଣୁ କରିଦେଇଛି । ଏତଦ୍ୱାରା ଲୋକଶକ୍ତି ଅଥର୍ବ ହୋଇଯାଇଛି । ଦେଶବାସୀ ତାଙ୍କର ସ୍ୱାତନ୍ତ୍ର୍ୟ ହରାଇଛନ୍ତି । ଯେଉଁ ଦେଶବାସୀ ନିଜର ଭୋଟ ବିକ୍ରି କରି ପଇସା ସଂଗ୍ରହ କରିବେ, ସେମାନେ ସରକାରଙ୍କ ଉପରେ ନିୟନ୍ତ୍ରଣ ହରାଇ ବସିବେ । ସରକାର ଅଙ୍କୁଶ ବିହୀନ ହୋଇ ମଦମତ୍ତ ଶାସନ କରିବେ । ଲୋକ ଶକ୍ତି ସବୁ ପ୍ରେରଣାର ଉତ୍ସ । ଲୋକଶକ୍ତିର ବିନାଶ ଘଟିଲେ, ଦେଶରେ ଉଦ୍ୟମ ଓ ନେତୃତ୍ୱ ରହିବ ନାହିଁ । ପଦଯାତ୍ରାରେ ଅନେକ ଗ୍ରାମରେ ଦେଖାଯାଇଥିଲା ଯେ, ଗ୍ରାମବାସୀମାନେ ପୋଖରୀର ମାଛ ବାଣ୍ଟି କରି ଖାଉଛନ୍ତି । ମାଛ ଟଙ୍କାରେ ଗ୍ରାମର ବିକାଶ ସାଧନ ପାଇଁ ସେମାନେ ପ୍ରସ୍ତୁତ ନୁହନ୍ତି । ଗ୍ରାମର ବିକାଶସରକାରଙ୍କ କାର୍ଯ୍ୟ ବୋଲି ଲୋକମାନେ ଧରିନେଲେଣି ।

ପ୍ରଚଳିତ ରାଜନୀତିକ ବ୍ୟବସ୍ଥାକୁ ପରିତ୍ୟାଗ ନକଲେ ଭାରତ ଓ ପୃଥିବୀର ଭବିଷ୍ୟତ ଅନ୍ଧାରମୟ । କ୍ଷମତା ଓ ସମ୍ବଳ କେନ୍ଦ୍ରସରକାର ଓ ରାଜ୍ୟ ସରକାର ନିଜ ହାତରେ ରଖି, ଗ୍ରାମବାସୀ, ନଗରବାସୀମାନଙ୍କୁ କ୍ଷମତା ଓ ସମ୍ବଳ ଦିଅନ୍ତୁ । ଲୋକମାନଙ୍କୁ ନିଜକଥା ନିଜକୁ ବୁଝିବାକୁ ଦିଆଯାଉ । ତାହା ହେଲେ ସେମାନେ ଆତ୍ମ ନିର୍ଭଳଶୀଳ ହେବେ, ଦାୟୀତ୍ୱସଂପନ୍ନ ହେବେ । ନିଜର ଦୋଷ ପାଇଁ ଅନ୍ୟ ମୁଣ୍ଡରେ ଅଠା ବୋଳିବେନାହିଁ । ଲୋକ ପ୍ରତିନିଧିମାନେ ଲୋକମାନଙ୍କର ଅଭାବ ଅସୁବିଧା ଜାଣି ତାର ନିରାକରଣ କରିବେ ।

ବର୍ତ୍ତମାନ ଉପସ୍ଥିତି ଅନୁଧ୍ୟାନ କଲେ  ମନେ ହୁଏ ଯେ କେନ୍ଦ୍ର ବା ରାଜ୍ୟ ସରକାର ଲୋକମାନଙ୍କୁ କ୍ଷମତା ଓ ସମ୍ବଳ ହସ୍ତାନ୍ତର କରିବେ ନାହିଁ । କ୍ଷମତା ଓ ସମ୍ବଳ ଲୋକମାନଙ୍କର, ତା ଉପରେ ନିଜର ଅଧିକାର ଫେରି ପାଇବାକୁ, ଜନ ଆନ୍ଦୋଳନ କରିବାକୁ, ଏହି ଆନ୍ଦୋଳନର ସଫଳତା ସକ୍ରୀୟ ସମାଜସେବୀଙ୍କ ଶ୍ରମ, ତ୍ୟାଗ ଓ ସାଧନା ଉପରେ ନିଭର କରୁଛି ।

ଏ ପଦ ଯାତ୍ରାର ଦଶଦିନ ପୂର୍ବରୁ ୮ ତାରିଖରେ ନୟାଗଡ଼ ଓ ବାଣପୁର ମଝିରେ ଥିବା ରତ୍ନମାଳା ପାହାଡ଼ର ପାଦଦେଶରେ ଗୋଛା ଗ୍ରାମରେ ୬ ଟି ଆଦିବାସୀ ଗ୍ରାମମାନଙ୍କର ପ୍ରତିନିଧିମାନଙ୍କରେ ଏକ ଆଲୋଚନା ଚକ୍ର ହୋଇଥିଲା । ପ୍ରାୟ ୭୦ ଜଣ ପୁରୁଷ ଓ ମହିଳା ଉପସ୍ଥିତ ଥିଲେ । ଜଙ୍ଗଲକୁ ସେଣ୍ଟ୍ରାଲ ରିଜର୍ଭ ପୋଲିସ୍ ଜଗି ରହିଛି । ତେଣୁ ଲୋକମାନେ ଭାବୁଛନ୍ତି ଯେ ସି. ଆ.ର୍.ପି. ରହିବା ପର୍ଯ୍ୟନ୍ତ ତାଙ୍କର ଜଙ୍ଗଲ ସୁରକ୍ଷିତ ରହିବ । କିନ୍ତୁ ବନ୍ଧୁକ ମୁନରେ ଜଙ୍ଗଲ ରଖାଯାଇ ପାରିବ ନାହିଁ ।

ତା ୯.୬.୯୬ ରିଖ ଦିନ ଖତିଆ ଗ୍ରାମରେ ଲୋକମାନଙ୍କ ସାଙ୍ଗରେ ଲେଖକର ଆଲୋଚନା ହୋଇଥିଲା । ବହୁ ବର୍ଷ ହେଲା ଏକ ଶାଳ ଜଙ୍ଗଲର ରକ୍ଷା କରି ଖତିଆ ଗ୍ରାମବାସୀ ବର୍ତ୍ତମାନ ଦୁଇଭାଗରେ ବିଭକ୍ତ । ଜନତା - କଂଗ୍ରେସର ବିଷ ଚକ୍ରରେ ସେମାନେ ପଡ଼ିଯାଇଛନ୍ତି । ଗ୍ରାମରେ ଏକତା ନ ଥିବାରୁ ଓ ଦୁଇସାହିଙ୍କ ମଧ୍ୟରେ ଶତ୍ରୁତା, କ୍ରୋଧ, ହିଂସା ବଢ଼ିବାରୁ ଦୁଇ ସାହିଙ୍କର ମଧରେ କ୍ରୋଧର ଶିକାର ଜଙ୍ଗଲ ହେଲା । ଉଭୟ ସାହି ଶାଳ ଅନ୍ୟାନ୍ୟ ଗଛ କାଟିବାରେ ଲାଗିଲେ ।  କେହି ହେଲେ ଭାଇର ହାତ ଧରିବାକୁ ପ୍ରସ୍ତୁତ ନୁହନ୍ତି । ଆପୋଷ ରାଜିନାମାରେ ବିଶ୍ୱାସ ନାହିଁ । ତେଣୁ ଗୋଟିଏ ସାହି ଡ଼ି. ଏଫ. ଓ.ଙ୍କ ପାଖକୁ ଗଲା । ଜଙ୍ଗଲ ବିଭାଗ କର୍ମକର୍ତ୍ତା ତିରିଶ ଜଣ ବନ୍ଧୁକଧାରୀ ପୋଲିସ୍  ସହିତ ଗ୍ରାମରେ ପହଞ୍ଚିଲେ ।  ଉଭୟ ସାହି ଜମାକରିଥିବା କାଠକୁ ଟ୍ରକ୍‌ରେ ନେବାପାଇଁ ଉଦ୍ୟତ ହେଲେ । ଲୋକମାନେ ବାଧାଦେଲେ । କହିଲେ "ଆମେ ଜଙ୍ଗଲ ଜଗିଛୁ ଆପଣ କାଠନେବେ କିପରି ?" ଜଙ୍ଗଲ ବିଭାଗ ୱ୍ୟାରଲେସ ଦ୍ୱାରା ଅଧିକ ବନ୍ଧୁକଧାରୀ ପୋଲିସ୍ ମଗାଇଲେ । ବନ୍ଧୁକଧାରୀ ଫୋର୍ସ ଗାଁରେ ଛାଇଗଲେ । ଲୋକମାନେ ଶଙ୍କିତ ହେଲେ । ଉଭୟ ସାହିରୁ ୫ ଟ୍ରକ କାଠନେଇ ଜଙ୍ଗଲ ବିଭାଗ ନୟାଗଡ଼ ଚାଲିଗଲା । ଏଥିରେ ଲାଭ କାହାର ହେଲା ? ଲୋକେ ଜଙ୍ଗଲ ଜଗିଥିଲେ, କାଠନେଲା ଜଙ୍ଗଲ ବିଭାଗ । ଏଥିରୁ ଲୋକଙ୍କୁ କ'ଣ ମିଳିଲା ? ଦୁଇଜଣଙ୍କ ବିବାଦରେ ତୃତୀୟ ଲୋକର ଲାଭ ହୁଏ । ଦୁଇ ବିରାଡ଼ିଙ୍କ ପିଠା ପାଇଁ କଳି ସମସ୍ତେ ଜାଣନ୍ତି । ମାଙ୍କଡ଼କୁ ପିଠା ବାଣ୍ଟିବାକୁ ଡ଼ାକିଲେ । ମାଙ୍କଡ଼ ପିଠାକୁ ଭାଗ କରି ନିକିତିର ଦୁିପଟେ ରଖିଲା । ଯେଉଁ ପଟ

ନିକିତି ତଳକୁ ଯାଏ ସେପଟ ପିଠାରୁ ଖଣ୍ଡେ ଖାଇଦିଏ । ଏପରି କରି ସମସ୍ତ ପିଠା ଖାଇ ଡ଼ିଆଁ ମାରି ଗଛରେ ଚଢ଼ିଲା । ବିରାଡ଼ି ଦୁଇଟି ବୋକା ବନି କାନମୁଣ୍ଡା ଆଉଁସି ରହିଲେ । ଆମଦେଶବାସୀ ଓ ଗ୍ରାମବାସୀଙ୍କ ପାଇଁ ଭାଇ ଭଗାରୀ ହେବା କେବେ ବନ୍ଦ ହେବ ! ଲୋକମାନେ ଗ୍ରାମ ମାନଙ୍କର ବିବାଦ ପାଇଁ ପୋଲିସ୍, କୋର୍ଟ, ଜଙ୍ଗଲ ବିଭାଗ, ରାଜସ୍ୱ ବିଭାଗ ଆଦିର ଦ୍ୱାରସ୍ଥ ହେଲେ, ଅଖାଧୋଉଥିବେ ଗୁଣ ଗାଉଥିବେ ।

ତା ୯.୬.୯୬ରିଖ ଦିନ ଓଡ଼ଗାଁ ବ୍ଲକର ଡ଼ମସାହି ଜଙ୍ଗଲ ପରିଚାଳନା କମିଟର ସଭା ଅପରାହ୍ନରେ ବସିଥିଲା । ଲେଖକ ସଭାରେ ଉପସ୍ଥିତ ଥିଲା । ପ୍ରାୟ ୫୦ ଜଣ ସଭ୍ୟ ଉପସ୍ଥିତ ଥିଲେ । ଜଙ୍ଗଲପାଇଁ ଡ଼ମସାହି ଓ ଗୋଡ଼ିପଡ଼ା ମଧ୍ୟରେ ବିବାଦ ଲାଗିଛି । ଗୋଡ଼ିପଦା ଆଦିପ୍ରାୟ ୩୫ଟି ଗ୍ରାମ ରତ୍ନମାଳା ପର୍ବତର ବନଜାତ ଦ୍ରବ୍ୟକୁ ବ୍ୟବହାର କରିବେ ବୋଲି ରାଜସ୍ୱ ଓ ଜଙ୍ଗଲ ବିଭାଗର ରେକର୍ଡ଼ ରହିଛି । ଡ଼ମସାହି ୧୪ଟି ଗ୍ରାମ ସମୂହ ପଥରମୁଣ୍ଡ ପର୍ବତର ଜଙ୍ଗଲଜାତ ଦ୍ରବ୍ୟ ବ୍ୟବହାର କରିବେ ବୋଲି ରେକର୍ଡ଼ ରହିଛି । ଦୁଇପାହାଡ଼ ମଝିରେ ପ୍ରାୟ ୧୦୦ ଏକରର ଏକ ଶାଗୁଆନ ଜଙ୍ଗଲ ରହିଛି । ତାକୁ ଡ଼ମସାହି ପଞ୍ଚାୟତର ଗ୍ରାମ ସମୁହ ଜଗିଛନ୍ତି । ବର୍ତ୍ତମାନ ଗୋଡ଼ିପଡ଼ା ଓ ତାରସହଯୋଗୀ ଗ୍ରାମ ସମୁହ ଉପରୋକ୍ତ ୧୦୦ ଏକର ଶାଗୁଆନ ଜଙ୍ଗଲ ଉପରେ ନିଜର ଅଧିକାର ସାବ୍ୟସ୍ତ କରୁଛନ୍ତି । ଏହି ସମସ୍ୟା ଆପୋଷ ରାଜିନାମାରେ ନ ତୁଟାଇ, ଡ଼ମ ସାହି ଗ୍ରାମ ସମୁହ ରେଞ୍ଜରଙ୍କର ଦ୍ୱାରସ୍ତ ହୋଇଛନ୍ତି । ରେଞ୍ଜରଙ୍କୁ ନିଜ ପଟକୁ ନେବାକୁ ଉଭୟ ଗୋଷ୍ଠୀ ପନିପରିବା, ଫଳ ଆଦି ଦେବାରେ ଲାଗିଛନ୍ତି ବୋଲି ଖବର ପ୍ରଚାରିତ ହେଉଛି । ନିଜ କଥା ନିଜ ମଧ୍ୟରେ ନତୁଟାଇ ପର ଉପରେ ନିର୍ଭର କରିବା ଅଭ୍ୟାସ ଓ ମାନସିକତା ଆମ ଗ୍ରାମବାସୀମାନେ କେବେ ଛାଡ଼ିବେ ?

୧୨.୦୬.୯୬ ତାରିଖରେ ନୂଆଗାଁ ବ୍ଲକର ମହୀପୁର ନିକଟବର୍ତ୍ତୀ ମାଳିସର ଗ୍ରାମରେ ଏକ କର୍ମଶାଳା ଅନୁଷ୍ଠିତ ହୋଇଥିଲା । ଏଥିରେ ପାଟୁଳୀସାହି, ନିମସାହି, ପଥରପାଟଣା, ପୋଖରା, କମଳା ପାଟଣା, ନନ୍ଦିଘୋଷପୁର, ମାଳିସର, ଆନ୍ଦକିଆରୀ, ବାଣୁଆଁସାହି, ଗୁହାଳପଲ୍ଲୀ, ରାଧାନାଥପୁର, ବଡ଼ଗୋଠ, କରଡ଼ାପଲ୍ଲୀ, ବେଣାଗାଡ଼ିଆ, ନୂଆପଲ୍ଲୀ, ବନମାଳୀପୁର, ଭିରୁଡ଼ା, ଢ଼େଙ୍କଣା, ତୁଳସୀପୁର ଆଦି ଗ୍ରାମର ପ୍ରାୟ ୬୦ ଜଣ ପ୍ରତିନିଧି ଯୋଗ ଦେଇଥିଲେ । ଏହି ଗ୍ରାମମାନେ ପାଶ୍ୱବର୍ତ୍ତୀ ଶୂଳିଆ ଜଙ୍ଗଲ ସୁରକ୍ଷା କରୁଛନ୍ତି । ଏଠାରେ ଲୋକମାନେ ଉପସ୍ଥିତ ଥିବା ସ୍ୱେଚ୍ଛାସେବୀ ମାନଙ୍କୁ ପ୍ରଶ୍ନ କଲେ ଯେ, ସରକାର ମିଳିତ ଜଙ୍ଗଲ ପରିଚାଳନା ସମିତିରେ ମିଶିବାକୁ ଗ୍ରାମବାସୀଙ୍କୁ ପ୍ରବର୍ତ୍ତାଉଛନ୍ତି । ଆମ୍ଭେମାନେ ତାଙ୍କୁ କହିଲୁ ଯେ ଆପଣମାନେ ଉପରୋକ୍ତ କମିଟିରେ ନିଜ ନିଜ ଗ୍ରାମମାନଙ୍କୁ ସାମିଲ କରନ୍ତୁ ନାହିଁ । ସରକାର ଜଙ୍ଗଲ

ଜଗିପାରିଲେ ନାହିଁ । ବର୍ତ୍ତମାନ ଲୋକମାନେ ଜଙ୍ଗଲ ଜଗୁ ଛନ୍ତି । ମିଳିତ ଜଙ୍ଗଲ ପରିଚାଳନା ସମିତିରେ ଫରେଷ୍ଟର ସଂପାଦକ ହେବେ । ସରକାର ଓ ଗ୍ରାମବାସୀଙ୍କ ମଧ୍ୟରେ ଜଙ୍ଗଲ କଟାହେଲେ ଅଧା ଭାଗ ହେବ । ଲୋକମାନେ ଯେତେବେଳେ ଜଙ୍ଗଲ ଜଗୁଛନ୍ତି ସେତେବେଳେ ସରକାର କାହିଁକି ଅଧାଭାଗ ନେବେ । ଜଙ୍ଗଲ ସୁରକ୍ଷା ସମିତିରେ ସରକାର ପ୍ରତିନିଧି ରହିଲେ, ଜଙ୍ଗଲ ପରିଚାଳନା ବିଷାକ୍ତ ହେବ । ଗ୍ରାମବାସୀମାନେ ନିଜକୁ ଓ ପଡ଼ୋଶୀ ଗ୍ରାମମାନଙ୍କୁ ନିୟନ୍ତ୍ରଣ କରିବା କଷ୍ଟକର ହେଉଛି । ସରକାର ପ୍ରତିନିଧିଙ୍କ ଉପରେ ଗ୍ରାମବାସୀଙ୍କର କୌଣସି ନିୟନ୍ତ୍ରଣ ନାହିଁ । ସରକାର ପ୍ରତିନିଧିଙ୍କୁ ଲୋକମାନେ ନିୟନ୍ତ୍ରଣ କରିପାରିବେ ନାହିଁ । ଏଠାରେ କେତେକ ଆମକୁ ପଚାରିଲେ ଯେ, ଯେହେତୁ ଜଙ୍ଗଲ ସରକାରଙ୍କ ନାଆଁରେ ଅଛି, ଆମେ ଜଙ୍ଗଲ ଜଗିଲେ ସରକାର ଜଙ୍ଗଲ ଜାତ ଦ୍ରବ୍ୟ ଉପରେ ନିଜର ଅଧିକାର ସାବ୍ୟସ୍ତ କରିବେ । ଆମେ ବାଧାଦେଲେ ଆମକୁ ଗିରଫ କରିବେ । ଆମେ ଉତ୍ତରରେ କହିଲୁ ଯେ, ସରକାର ୫ ଜଣଙ୍କୁ ଗିରଫ କଲେ ୫୦ ଜଣ, ୫୦୦ଜଣ ଗିରଫ ହେବାକୁ ପ୍ରସ୍ତୁତ ହେବେ । ହିଂସାଦ୍ୱାରା ସରକାରଙ୍କର ସମ୍ମୁଖୀନ ହୋଇପାରିବ ନାହିଁ । ଅଂହିସା ଉପାୟରେ ସରକାରଙ୍କର ଲୋକ ବିରୋଧୀ କାର୍ଯ୍ୟର ସମ୍ମୁଖୀନ ହେବେ ।

**ସଂକଳ୍ପ, ୧୯୯୬ - ୯୭, ସଂପାଦନା :ଅତନୁସବ୍ୟସାଚୀ**

# ଗ୍ରାମେ ଗ୍ରାମେ ପରିବେଶ

ନାରାୟଣ ହଜାରୀ
ସନ୍ତୋଷ କୁମାର ସାହୁ

'ବୃକ୍ଷ ଓ ଜୀବର ବନ୍ଧୁ' ଅନୁଷ୍ଠାନ ପକ୍ଷରୁ ଲେଖକ ଏକାକୀ ଅଠର ଦିନ ବ୍ୟାପି ଅଠରଟି ଗ୍ରାମରେ ପଦ ଯାତ୍ରା କରିଥିଲା । ପ୍ରତ୍ୟେକ ଗ୍ରାମରେ ଭାଗବତ ପାଠ କରି ୧୮ ଦିନରେ (ଜୁନ୍ ୭ - ୨୪, ୧୯୯୪) ୧୮ଟି ଗ୍ରାମରେ ଭାଗବତର ୧୨ଟି ଯାକ ସ୍କନ୍ଦ ସମ୍ପୂର୍ଣ୍ଣ କରାଯାଇଥିଲା । ଦିନକୁ ଥରେ ମାତ୍ର ସଂଧ୍ୟା ବେଳେ ଭୋଜନ କରୁଥିଲା । ଏହିପରି ଆଉ ଦୁଇ ଥର ଲେଖକ ଏକାକୀ ବିଭିନ୍ନ ଗ୍ରାମରେ ପଦଯାତ୍ରା କରି ଭାଗବତ ସମ୍ପୂର୍ଣ୍ଣ କରିଥିଲା । ଭାଗବତ ପାଠ କଲା ବେଳେ ଲେଖକ ଅଶ୍ରୁପାତ କରୁଥିଲେ । ଶ୍ରୋତାମାନଙ୍କ ମଧ୍ୟରୁ ଜଣେ ଜଣେ ମଧ୍ୟ ଅଶ୍ରୁପାତ କରୁଥିଲେ । ଗ୍ରାମରେ ଯାହାର ଭଲ କଣ୍ଠ ଥାଏ, ସେ ଭାଗବତ ପଢ଼ନ୍ତି । ଭାଗବତ ପାଠ ବେଳେ ମୁଷ୍ଟିମେୟ ଲୋକ ଯୋଗ ଦେଉଥିଲେ । ଭାଗବତ ପାଠର ଏକ ଉଦ୍ଦେଶ୍ୟ ଥିଲା, ଭାଗବତର ପୁନଃରୁଦ୍ଧାର ।

ପଦଯାତ୍ରା କରାଯାଉଥିବା ଗ୍ରାମଗୁଡ଼ିକ ହେଉଛି ପାଟୁଳସାହି, ସାନ ଗୋରଡ଼ା, ବଡ଼ଗୋରଡ଼ା, ଆଙ୍ଗିସିଙ୍ଗୀ, ପୁଆଣିଆ, ଗମ୍ଭାରିଡ଼ିହ, ଗମେଇ, ବିଞ୍ଜଗିରି, ଚିନ୍ନରା, ବେଗୁନିଆଁପାଟଣା, କଳିକାପ୍ରସାଦ, ନାଗମଣ୍ଡଳୀ, ମାନପୁର ଆଡ଼ଚେର, ହରିପୁର, ଡ଼ିମିସର, ଗୋଡ଼ିପଡ଼ା ଓ ବୁଦ୍ଧଗ୍ରାମ । ଏହି ଗ୍ରାମର ପ୍ରାୟ ୩୦ ହଜାର ଲୋକଙ୍କ ସହିତ ମିଳାମିଶା କରି ସେମାନଙ୍କର ସମସ୍ୟା ଅନୁଧ୍ୟାନ କରାଯିବା ସଙ୍ଗେ ସଙ୍ଗେ ଅନେକ ଉପାଦେୟ ତଥ୍ୟ ଜାଣିବାକୁ ମିଳିଥିଲା ।

## ସାଂସ୍କୃତିକ ପରିବେଶ

ଯେଉଁ ଗ୍ରାମରେ ସଂକୀର୍ତ୍ତନ ଓ ଅନ୍ୟାନ୍ୟ ଲୋକକଳା ଥିଲା ତାକୁ ଆମ୍ଭେମାନେ ଦେଖୁ ଥିଲୁ । ଏତଦ୍ୱାରା କଳାକାରମାନଙ୍କୁ ଉତ୍ସାହିତ କରିବା ଆମର ଲକ୍ଷ୍ୟ ଥିଲା । ହରିପୁର ଗ୍ରାମର ଶ୍ରୀଯୁକ୍ତ ବାଉରୀବନ୍ଧୁଙ୍କ ସଂକୀର୍ତ୍ତନ, ସେଦିନ ସଂଧ୍ୟାରେ ନିଜ ଗ୍ରାମରେ

ଏକ ଅପୂର୍ବ ଆଧ୍ୟାତ୍ମିକ ପରିବେଶ ସୃଷ୍ଟି କରିଥିଲା । ସେ ପ୍ରହ୍ଲାଦ ଚରିତ ବର୍ଣ୍ଣନା କରିଥିଲେ । ଏହି ସଂକୀର୍ତ୍ତନରେ ବହୁ ଲୋକ ଯୋଗ ଦେଇଥିଲେ । ଆଧୁନିକତାର ପ୍ରଭାବରେ ସାଂପ୍ରତିକ ଲୋକକଳାର ଅବକ୍ଷୟ ସମ୍ପର୍କରେ ପ୍ରଶ୍ନମାନ ବାଉରୀବନ୍ଧୁଙ୍କୁ କରାଯାଇଥିଲା । ଭାରତର ଆତ୍ମା ଗ୍ରାମମାନଙ୍କରେ ରହିଛି । ରାମାୟଣ, ମହାଭାରତ, ଭାଗବତ ଗ୍ରାମମାନଙ୍କରେ ଆଧ୍ୟାତ୍ମିକ, ନୈତିକ ଓ ମାନବିକ ମୂଲ୍ୟବୋଧର ମୂଳଭିତ୍ତି ଥିଲା । ବସ୍ତୁବାଦିତା ଓ ଆଧୁନିକତା(ଟେଲିଭିଜନ, ରେଡ଼ିଓ, ଚଳଚିତ୍ର)ର ପ୍ରଭାବରେ ସାମାଜିକ ମୂଲ୍ୟବୋଧର ଦ୍ରୁତ ଅବକ୍ଷୟ ଘଟିବାରେ ଲାଗିଛି । ପଥଯାତ୍ରା ସମୟରେ ଭାଗବତ ପାଠକରି ଶାସ୍ତ୍ରମାନଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତିର ପୁନରୁଦ୍ଧାର ପାଇଁ ଉଦ୍ୟମ କରାଯାଉଥିଲା । ପ୍ରତିଦିନ ସଂଧ୍ୟାରେ ଗ୍ରାମମାନଙ୍କରେ ସଭା କରାଯାଉଥିଲା । ଗ୍ରାମର ସମସ୍ୟା ଓ ତା'ର ସମାଧାନ ସମ୍ପର୍କରେ ଆଲୋଚନାମାନ ହେଉଥିଲା । ଆଙ୍ଗିସିଙ୍ଗ ଗ୍ରାମରେ ରାତିରେ ଦୁଆରୀ ନାଚ ଅଭ୍ୟାସ କରାଯାଉଥିଲା । ସେଠାରେ ଲେଖକ ଘଣ୍ଟାଏ ବସି ଏହାକୁ ନିରୀକ୍ଷଣ କରିଥିଲା । ଅର୍ଜୁନ ଆସି ଦ୍ୱାରିକାରେ ଶ୍ରୀକୃଷ୍ଣଙ୍କର ଅତିଥି ହୋଇଛନ୍ତି । ଅର୍ଦ୍ଧରାତ୍ରରେ ସୁଭଦ୍ରା ଅର୍ଜୁନଙ୍କୁ ସାକ୍ଷାତ କରିବାକୁ ଆସିଛନ୍ତି । ଦୁଆରୀ ତାଙ୍କୁ ନାନା ପ୍ରଶ୍ନମାନ ପଚାରିଛି । ଉକ୍ତ କଥୋପକଥନ ଶୁଣି ଅର୍ଜୁନ ବାହାରକୁ ଆସି ଦୁଆରୀକୁ କାହା ସଙ୍ଗରେ କଥା ହେଉଛନ୍ତି ବୋଲି ପଚାରୁଛନ୍ତି । ଏହି ଘଣ୍ଟାଏ ନାଚ ଦେଖିବା ଭିତରେ ଦେଖିବାକୁ ମିଳିଲା ଯେ, ସୁଭଦ୍ରା ୩ ଥର ଅର୍ଜୁନଙ୍କ ଦେହ ସ୍ପର୍ଶ କରି କାମଭିକ୍ଷା କରିଛନ୍ତି । ଲେଖକ ପଚାରିଛନ୍ତି ଏପରି ଅଶ୍ଳୀଳତା କାହିଁକି ପରିବେଶଷ କରୁଛନ୍ତି । ଏହାର ଉତ୍ତରରେ ନାଚଗୁରୁ କହିଛନ୍ତି, " ଏପରି ନ କଲେ ଲୋକମାନଙ୍କୁ ଆକର୍ଷିତ କରି ହେଉନାହିଁ ।" ଏଥିରେ ମର୍ମାହତ ହୋଇ ଲେଖକ ମନ୍ତବ୍ୟ ପ୍ରଦାନ କରିଥିଲେ, "ଗୁରୁଙ୍କ କର୍ତ୍ତବ୍ୟ ହେଉଛି ଲୋକମାନଙ୍କ ରୁଚିକୁ ଉନ୍ନତ ଓ ମାର୍ଜିତ କରିବା – ରୁଚିର ଅବକ୍ଷୟ ନୁହେଁ । ଗୁରୁ ଲୋକଙ୍କ ରୁଚିକୁ ଉନ୍ନତ କରିବେ । କେତେକ ବିଭ୍ରାନ୍ତ ଓ ଉଦ୍‌ଭ୍ରାନ୍ତ ବ୍ୟକ୍ତିଙ୍କର ଚାହିଦାକୁ ଲୋକରୁଚି ଭାବି ତଦ୍ୱାରା ପରିଚାଳିତ ହେବା ଉଚିତ ନୁହେଁ । ଉପରୋକ୍ତ କଥା କଳାକାର ବାଉରୀବନ୍ଧୁ ସେନାପତିଙ୍କୁ କହିବାରୁ, ସେ ତାଙ୍କ କଳାକାର ଜୀବନର ଏକ ବିଶିଷ୍ଟ ଅନୁଭୂତି ବର୍ଣ୍ଣନା କରିଥିଲେ । କିଛିବର୍ଷ ତଳେ ସେ ଖୋର୍ଦ୍ଧା ଜିଲ୍ଲାର ବୋଲଗଡ଼ଠାରେ ସଂକୀର୍ତ୍ତନ କରୁଥିଲେ । ପ୍ରାୟ ୨୦୦୦ ଦର୍ଶକ ସମବେତ ହୋଇଥିଲେ । ସଂକୀର୍ତ୍ତନର ବିଷୟବସ୍ତୁ ଚାଲିଥିବାବେଳେ ବାଉରୀବନ୍ଧୁ ଲୋକପ୍ରିୟ କରାଇବା ପାଇଁ ଉଦାହରଣ ଛଳରେ ଅଶ୍ଳୀଳତା ଭିତ୍ତିକ ଏକ ବର୍ଣ୍ଣନା ବାଢ଼ିଥିଲେ । ଜଣେ ଦର୍ଶକ ଠିଆହୋଇ କହିଲେ "ଆପଣ ଏପର୍ଯ୍ୟନ୍ତ ବାଟରେ ଥିଲେ, ଏବେ ଅବାଟକୁ ଓହ୍ଲାଇଲେ କାହିଁକି ?"

ଏଥିରେ ବାଉରିବନ୍ଧୁ ହଠାତ୍ ସତର୍କ ହୋଇ ଯାଇଥିଲେ ଏବଂ ଅଶ୍ଳୀଳତା ପଥରୁ ନିବୃତ୍ତ ହୋଇଥିଲେ । ସେ କହିଥିଲେ ଯେ, ଏଇ ଘଟଣା ତାଙ୍କ ଜୀବନରେ ଏକ ମହାଶିକ୍ଷା ଥିଲା । ସେହିଦିନୁ ଆଧ୍ୟାତ୍ମିକତା ଭିତରେ ଅଶ୍ଳୀଳତାର ବିଷ ପ୍ରୟୋଗ କରିବାରୁ ସେ କ୍ଷାନ୍ତ ହୋଇଥିଲେ ।

## ଆର୍ଥନୀତିକ ପରିବେଶ

ପାଟଳି ସାହି ଗ୍ରାମରେ ଦେଖାଯାଇଥିଲା ଯେ, ଗ୍ରାମରେ ୧୧ଟି ଯାକ କୂପ ପ୍ରାୟ ଶୁଖିଲା ପଡ଼ିଥିଲା । ଗ୍ରାମରେ ପ୍ରାୟ ୨୦୦ ନଡ଼ିଆ ଗଛର ଅନେକ ବାହୁଙ୍ଗା ମରିଯାଇଥିଲା । ଗ୍ରାମର ଦୁଆଣ୍ଟ ନଦୀ ନିକଟସ୍ଥ ଏକ ଗଜା ଆମ୍ବ ଗଛ ମରିଯାଇଥିଲା । ଗ୍ରାମ ସଂଲଗ୍ନରେ ଦୁଆଣ୍ଟ ନଦୀ ବହି ଯାଇଛି । ଅପରପଟରେ କୁସୁମୀ ନଦୀ ପ୍ରବାହିତ । ଦୁଇଟି ନଦୀ ମଧ୍ୟରେ ଗ୍ରାମଟି ଅବସ୍ଥିତ ଥିଲେ ମଧ୍ଯ ଜଳସଙ୍କଟ ଭୀଷଣ ଆକାର ଧାରଣ କରି ଥିଲା । ଏ ସମ୍ବନ୍ଧରେ ସନ୍ଧ୍ୟାରେ ଗ୍ରାମସଭାରେ ଆଲୋଚନା କରାଯାଇଥିଲା । ଏ ପ୍ରକାର ଅସ୍ୱାଭାବିକ କାରଣର ଅନୁସନ୍ଧାନ କରିବାରୁ ଜଣାପଡ଼ିଲା ଯେ, ଗ୍ରାମର ଅର୍ଦ୍ଧାଧିକ ଜମିରେ ଆଖୁ ଚାଷ କରାଯାଇଛି । ଆଖୁ ଫସଲ ବହୁ ପାଣିର ଆବଶ୍ୟକ କରେ । ଏକ ଅନୁଧ୍ୟାନରୁ ଜଣାଯାଇଛି ଯେ, ଯଦି ଶତକଡା ୩ ଜମିରେ ଆଖୁ ଫସଲ କରାଯାଏ, ସେଥିପାଇଁ ଜଳ ସମ୍ପଦ ୮୦ଭାଗ ବିନିଯୋଗ ହେବ । ଏହି ଗ୍ରାମରେ ଅର୍ଦ୍ଧାଧିକ ଜମିରେ ଆଖୁ ଚାଷ ହେତୁ ଜଳର ବହୁଳ ଉପଯୋଗ ହୋଇ ଜଳ ସଙ୍କଟ ପଡ଼ିବାରୁ ଗ୍ରାମରେ ୬ଟି ବୋରିଂଟିଉବ କୂପ ବସାଯାଇଛି । କୂଅପିଛା ୪୫୦୦୦ ଟଙ୍କା ଖର୍ଚ୍ଚ କରାଯାଇଛି । ଏ ପ୍ରକାର କୂପ ୧୦୦, ୨୦୦ ଫୁଟ ତଳୁ ପାଣି ଅ ।ଣି ଜଳସେଚନ କରେ । ଜଳ ତିନିଟି ସ୍ତରରେ ଥାଏ । ମାଟିର ଉପର ପାଣି ଯାହା ନଦୀ , ପୋଖରୀ, ହ୍ରଦ ଆଦିରେ ଥାଏ । ମାଟି ତଳେ ପାଣି ଯାହା ୧୫/୩୦ ଫୁଟ୍ ତଳେ କୂଅରେ ଥାଏ । ଭୂତଳ ପାଣି ଯାହା ୧୦୦/୨୦୦ ଫୁଟ ତଳେ ଥାଏ । ବୈଜ୍ଞାନିକମାନଙ୍କ ମତରେ ଭୂମିତଳ ପାଣି ଉପଯୋଗ କରିବା ବିପଦପୂର୍ଣ୍ଣ । କାରଣ ଭୂମିତଳ ପାଣି ସରିଗଲେ ମାଟିତଳ ପାଣିକୁ ତାହା ଟାଣିନିଏ । ମାଟିତଳ ପାଣି ସରିଗଲେ ମାଟି ଉପରେ ପାଣି ଉପରେ ଚାପ ପଡ଼େ । ଉକ୍ତ ଗ୍ରାମର ଭୂମିତଳର ପାଣିର ଅପପ୍ରୟୋଗ ଯୋଗୁ ନଦୀତ ଶୁଖିଲା ପଡ଼ିଥିଲା, କୂଅ, ପୋଖରୀ ମଧ୍ୟ ଶୁଖିଲା ପଡ଼ିଥିଲା । ଏହାଯୋଗୁ ଗଛମାନଙ୍କ ମୂଳ ପର୍ଯ୍ୟନ୍ତ ପାଣି ଆସିପାରୁ ନଥିଲା । ତେଣୁ ଆମ୍ବ ଗଛଗୁଡ଼ିକ ମରିଯାଇଥିଲା ।

ବିଂଜଗିରି ଗ୍ରାମରେ ପ୍ରାୟ ୬ ବର୍ଷ ମଧ୍ୟରେ ୫୦ଟି ବିଶାଳକାୟ ଆମ୍ବଗଛ ମରିଯାଇଥିବାର ଲୋକମାନେ କହିଥିଲେ । ଚିନ୍ନରା ଗ୍ରାମରେ ଥିବା ୧୨ଟି ଡ଼ଗୱେଲ

ଶୁଖିଲା ପଡ଼ିଥିଲା । ତାର କାରଣ ହେଉଛି ସେ ଗ୍ରାମରେ ୫୦ଟି ବୋରିଂଟ୍ୟୁବକୂଅ ଖୋଳାଯାଇଥିଲା । ତାର ପାର୍ଶ୍ୱବର୍ତ୍ତୀ ଭୁତଡ଼ି ଗ୍ରାମରେ ୩୦ଟି ଡ଼ଗୱେଲ ଶୁଖିଲା ପଡ଼ିଥିଲା । କାରଣ ହେଲା ଏହି ଗ୍ରାମରେ ୧୧ଟି ବୋରିଂଟ୍ୟୁବ କୂଅ କରାଯାଇଥିଲା । ଜଳସଙ୍କଟ ସଂକ୍ରାନ୍ତ ଗ୍ରାମଗୁଡ଼ିକର ଗ୍ରାମସଭାର ଆଲୋଚନାରେ ଦେଖାଦେଇଥିଲା ଯେ, ଲୋକମାନେ ୧୦୦/୨୦୦ ଫୁଟ ତଳୁ ପାଣି ନେଇଯିବା ହେତୁ ନଦୀ, ପୋଖରୀ, କୂଅ, ଡ଼ଗୱେଲ ଶୁଖିଯିବା ସମ୍ପର୍କରେ ସଚେତନ ଥିଲେ । କିନ୍ତୁ ଆମ୍ବ ଗଛଗୁଡ଼ିକ ମରିଯିବା ସମ୍ପର୍କରେ ଅଜ୍ଞ ଥିଲେ । ତାଙ୍କୁ ବୁଝାଇ ଦିଆଗଲା ଯେ, ପାଣିର ପତନ ତଳକୁ ଖସିଯିବା ହେତୁ, ଗଛମାନଙ୍କର ମୂଳକୁ ପାଣି ଆସିନପାରିବା ଯୋଗୁ ଗଛଗୁଡ଼ିକ ମରିଯାଇଛନ୍ତି ।

ଲୋକମାନଙ୍କୁ ବୁଝାଯାଇଥିଲା ଯେ, ଯେଉଁ ବ୍ୟକ୍ତିମାନେ ଭୂମିତଳ ପାଣି ଆଣି ବୋରିଂଟ୍ୟୁବ୍‌କୂଅ ଦ୍ୱାରା ଜଳସେଚନ କରୁଛନ୍ତି, ସେମାନେ କେବଳ ନିଜ ଜମିତଳ ପାଣି ବ୍ୟବହାର କରୁନାହାଁନ୍ତି । ଅନ୍ୟମାନଙ୍କ ଜମିତଳ ପାଣି ମଧ୍ୟ ବ୍ୟବହାର କରୁଛନ୍ତି । ଲୋକଙ୍କର ପାଣି ଲୋକମାନଙ୍କୁ ବିକୁଛନ୍ତି । ଏହି ଭଳି ସମସ୍ୟା ପଞ୍ଜାବ, ହରିଆଣା, ମହାରାଷ୍ଟ୍ର, ଗୁଜୁରାଟ ଆଦି ରାଜ୍ୟରେ ଉତ୍କଟ ଆକାର ଧାରଣ କରିଛି । ଧନୀ ଚାଷୀମାନେ କ୍ଷୁଦ୍ର ତଥା ନାମମାତ୍ର ଚାଷୀଙ୍କର ଜମିର ପାଣିକୁ ନେଇ ସେମାନଙ୍କୁ ବିକ୍ରୀ କରୁଛନ୍ତି । ତା ଫଳରେ କ୍ଷୁଦ୍ର ଓ ନାମମାତ୍ର ଚାଷୀ ସର୍ବସ୍ୱାନ୍ତ ହେଉଛନ୍ତି । ଶେଷରେ ନିଜର ଜମିବାଡ଼ି ବିକ୍ରୀ କରି ସହରକୁ ଯିବା ଛଡ଼ା ଅନ୍ୟ ପନ୍ଥା ପାଉନାହାନ୍ତି । ଯାହା ହାତରେ ଉନ୍ନତ ଟେକ୍ନୋଲୋଜି, ତା ହାତରେ ଅର୍ଥନୀତିକ କ୍ଷମତା । ଅର୍ଥନୀତିକ କ୍ଷମତା ଯାହାର ହାତରେ, ତାହା ହାତରେ ରାଜନୀତିକ କ୍ଷମତା । ଏଇ ସମସ୍ୟା ଯୋଗୁ ଭାରତରେ ଆଜି ଗଣତନ୍ତ୍ର ବିପନ୍ନ ହେବାକୁ ଯାଉଛି । ଆମ୍ଭେମାନେ ବୁଝିବା ଉଚିତ୍ ଯେ ଉନ୍ନତ ଟେକ୍ନୋଲୋଜି ଆଦୌ ନିରପେକ୍ଷ ନୁହେଁ । ଏହା ସଦାସର୍ବଦା ଧନୀକ ଶ୍ରେଣୀକୁ ସୁହାଏ । ଭାରତ ପରି ଜନବହୁଳ ଦେଶରେ, ଯେତେବେଳେ ବେକାରୀ ହେଉଛି ଆମର ମୁଖ୍ୟ ସମସ୍ୟା, ସେତେବେଳେ ଆମକୁ ଉଚ୍ଚ ଟେକ୍ନୋଲୋଜିର ପ୍ରୟୋଗ ସତର୍କତାର ସହିତ କରିବାକୁ ପଡ଼ିବ । ଯେତେବେଳେ ଲୋକଙ୍କୁ କାମ ମିଳୁନି, ସେତବେଳେ ଲୋକଙ୍କ ହାତରୁ କାମ ଛଡ଼ାଇନେବା ଉଚିତ ହେଉନାହିଁ । ଏ ପ୍ରକାର ଆତ୍ମଘାତୀ ନୀତି , ସରକାରଙ୍କ ଭୂମିକା ସମ୍ପର୍କରେ ଗାଁଗହଳରେ ଲୋକମାନେ ସଚେତନ ନୁହନ୍ତି । ରାଜନୀତିକ ନେତା ଓ ସରକାରୀ କର୍ମଚାରୀମାନେ ଲୋକଙ୍କୁ ବିକାଶ ନାଁରେ ଭୂଆଁ ବୁଲାଇବାରେ ଲାଗିଛନ୍ତି । ଭୁତଡ଼ି ଗ୍ରାମରେ ୩୦ଟି ଡ଼ଗୱେଲ ଅକାମୀ ହେବାର ଦେଖାଯାଇଥିଲା । ଗୋଟିଏ ଗୋଟିଏ

ଡ଼ଗ୍‌ୱେଲ କରିବା ପାଇଁ ଚାଷୀ ପ୍ରାୟ ୮୦୦୦ ଟଙ୍କ ସରକାରଙ୍କଠାରୁ ଋଣ କରେ । ବୋରିଂ ଟ୍ୟୁବ କୂଅ ପାଇଁ ଚାଷୀ ସରକାରଙ୍କଠାରୁ ପ୍ରାୟ ୪୫୦୦୦ ଟଙ୍କ ଋଣ କରେ । ଯେଉଁ ସରକାର ଡ଼ଗୱେଲ କରିବା ପାଇଁ ଋଣ ଦେଉଛନ୍ତି, ସେହି ଧରକାର ବୋରିଂଟ୍ୟୁବ କିପରି କରିବା ପାଇଁ ପ୍ରୋତ୍ସାହିତ କରୁଛନ୍ତି ? ସରକାର କ'ଣ ଜାଣିପାରୁନାହାନ୍ତି ଯେ, ବୋରିଂ ଟ୍ୟୁବୱେଲ କରିବା ଦ୍ୱାରା ଡଗୱେଲଗୁଡ଼ିକ ଆପେ ଆପେ ଅକାମୀ ହୋଇଯାଉଛି । ଏଥିରୁ ଗୋଟିଏ କଥା ମନେହୁଏ "ଗୋଦରା କୋଡ଼େ ଯେତେ ମାଡ଼େ ସେତେ" । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ପ୍ରାୟ ୨୦ ବର୍ଷ ତଳେ ଆମେରିକୀୟ ବୈଜ୍ଞାନିକ ପଞ୍ଜାବରେ ବହୁଳ ବୋରିଂ ଟ୍ୟୁବ କୂଅର ପ୍ରଚଳନ ଦେଖି ମନ୍ତବ୍ୟ ଦେଇଥିଲେ, "ପଞ୍ଜାବ ଏକ ଶତାବ୍ଦୀ ମଧ୍ୟରେ ମରୁଭୂମିରେ ପରିଣତ ହେବ ।" ଲୋକ ସଚେତନତା ଓ ଲୋକ ସଙ୍ଗଠନ ଅଭାବରୁ ଦେଶରେ ଏପରି ଘଟୁଛି । ବୁଦ୍ଧଗ୍ରାମ ପରିବେଶ ଆନ୍ଦୋଳନରେ ଜଙ୍ଗଲ ସମ୍ପଦର ଅବକ୍ଷୟକୁ ରୋକିବା ମୁଖ୍ୟ ଆଭିମୁଖ୍ୟ ଥିଲା । ଏଇ ୧୮ଟି ଗ୍ରାମର ପଦଯାତ୍ରାରୁ ଦେଖାଗଲା ଯେ, ଜଙ୍ଗଲ ଅବକ୍ଷୟ ଜନିତ ସମସ୍ୟାଠାରୁ ଜଳ ସଙ୍କଟ ଅଧିକ ଉତ୍‌କଟ ହୋଇପଡ଼ିଛି । ଆଖୁ ଚାଷକୁ ଏକ ସୀମା ଭିତରେ ନରଖିଲେ ଜଳ ସଙ୍କଟର ସମାଧାନ ହୋଇପାରିବ ନାହିଁ ।

## ସାମାଜିକ ପରିବେଶ

ଗ୍ରାମମାନଙ୍କରେ ବିଭିନ୍ନ ସାମାଜିକ ସମସ୍ୟା ମଧ୍ୟରେ ବୃଦ୍ଧ ଲୋକମାନଙ୍କର ସମସ୍ୟା ବିଶେଷ ଭାବେ ପ୍ରତୀୟମାନ ହୋଇଥିଲା । ଗମ୍ଭାରିଡ଼ିହ ଗ୍ରାମରେ ଜଣେ ୭୦ବର୍ଷ ବୟସ୍କ ବୃଦ୍ଧଙ୍କ ସଙ୍ଗେ ଦୁଃଖ ସୁଖ ହେବାବେଳେ, ସେ ତାଙ୍କର ଦୁଃଖର କାହାଣୀ କହିଥିଲେ । ତାଙ୍କର ତିନୋଟି ପୁଅ । ସମସ୍ତେ ବିବାହିତ । ସାନପୁଅ ଆର୍ଥିକ ଦିଗରୁ ଦୁର୍ବଳ । ତେଣୁ ବାପା ସମୟେ ସମୟେ ସହି ନପାରି ସାନ ପୁଅର ଜମିରେ କାମ କରନ୍ତି । ଏଥିରେ ଅନ୍ୟ ଦୁଇ ପୁଅଙ୍କର ଗାତ୍ରଦାହ ହୁଏ । ବୁଢ଼ା ବୁଢ଼ୀ ଗୋଟିଏ ପୁଅ ପାଖରେ ଗୋଟିଏ ଦିନ ଖାଆନ୍ତି । ତା ପରଦିନ ଅନ୍ୟ ପୁଅ ଘରେ ଖା'ନ୍ତି । ସାନ ପୁଅ ଜମିରେ ସେ କାମ କରୁଥିବା ହେତୁ ଅନ୍ୟ ପୁଅ ଓ ବୋହୂମାନେ କ୍ଷୁବ୍‌ଧ ହୁଅନ୍ତି । ଅନ୍ୟ ଦୁଇ ପୁଅଙ୍କ ଘରେ ଯେତେବେଳେ ପାଳି ପଡ଼େ, ସେମାନେ ତାଙ୍କ ଚାଲିଚଳନୀ ଓ ଚାହାଣୀରେ ବାପାଙ୍କ ପ୍ରତି ଅସନ୍ତୋଷକୁ ପରିପ୍ରକାଶ କରନ୍ତି । ସେମାନେ ସତେ ଯେପରି କହନ୍ତି "ବୁଢ଼ା ଯା କାମ କରୁଛି ତା ଘରେ ଖାଉ" । ଅନ୍ୟ ଜଣେ ୬୫ ବର୍ଷ ବୟସ୍କ ବୃଦ୍ଧଙ୍କ ସହିତ ଆଳାପ ସମୟରେ ସେ କହିଲେ ଯେ, ତାଙ୍କର କେବଳ ଗୋଟିଏ ପୁଅ । ସେ ବାର୍ଦ୍ଧକ୍ୟ ଓ ଅସୁସ୍ଥତାବଶତଃ କେତେଦିନ

ଜମିରେ କାମ କରିପାରନ୍ତି ନାହିଁ । ଯେଉଁଦିନ ସେ ଓ ତାଙ୍କ ପତ୍ନୀ କାମ କରିପାରନ୍ତି ନାହିଁ, ପୁଅ, ବୋହୂ ତାଙ୍କ ଉପରେ ବିରିବିରି ହୁଅନ୍ତି । ସତେ ଯେପରି କହନ୍ତି "କାମ ବନ୍ଦ ତ ଖାଇବା ବନ୍ଦ" । ପୁଆଁଣିଆ ଗ୍ରାମରେ ଜଣେ ୬୦ ବର୍ଷର ହରିଜନ ବୃଦ୍ଧଙ୍କ ସଙ୍ଗେ ଦେଖା ହୋଇଥିଲା । ସେ ଜୀର୍ଣ୍ଣଶୀର୍ଣ୍ଣ ଦେଖାଯାଉଥିଲେ । କିପରି ଅଛନ୍ତି ବୋଲି ପଚାରିବାରୁ, ସେ କହିଲେ ଯେ, ତାଳଗଛ ଚଢ଼ି ତାଳ ହାଣି ବିକ୍ରୀ କରି ପେଟ ପୋଷନ୍ତି । ତାଙ୍କର ସନ୍ତାନଙ୍କ ସମ୍ପର୍କରେ ପଚାରିବାରୁ ସେ କହିଲେ, "ଯଦିଓ ମୋର ଦୁଇ ପୁଅ ଅଛନ୍ତି, ଦୁଇଜଣଯାକ ବାପା, ମା'ଙ୍କୁ ପଚାରନ୍ତି ନାହିଁ ।" ଏ ଅସହାୟ ଅବସ୍ଥାରେ ସେ ଭବିଷ୍ୟତରେ କିପରି ଜୀବନଯାପନ କରିବେ ବୋଲି ପଚାରିବାରୁ ସେ କହିଲେ, "ରୋଜଗାର କରିନପାରିଲେ ଆମେ ବୁଢ଼ାବୁଢ଼ୀ ଶୁଖି ଶୁଖି ମରିବୁ ।" ଯେ କୌଣସି ସମାଜରେ ବୁଢ଼ା ବୁଢ଼ୀ , ପିଲା ଓ ନାରୀମାନଙ୍କ ପ୍ରତି ବ୍ୟବହାରରୁ ସେ ସମାଜର ସାମାଜୀକତା, ସଂସ୍କୃତି, ମଣିଷପଣିଆ, ନୈତିକତା ଓ ମୂଲ୍ୟବୋଧ ଜଣାପଡ଼େ । ଆଧୁନିକ ସମାଜରେ ସ୍ୱାର୍ଥପରତା ଯାହା ଶିକ୍ଷିତ, ପଦସ୍ଥ ଓ ଧନୀକ ଶ୍ରେଣୀମାନଙ୍କ ବିଶେଷଭାବେ ପରିଲକ୍ଷିତ ହୁଏ, ତାହା ଗାଁ ଗହଳିର ସାଧାରଣ ଲୋକମାନଙ୍କ ମଧ୍ୟକୁ ଦ୍ରୁତଗତିରେ ପ୍ରସାର ଲାଭ କରୁଛି । ଶିକ୍ଷିତ ଲୋକଙ୍କର ଦୋଷ ଦୁର୍ବଳତା, ବସ୍ତୁତୃଷ୍ଣା ଗରୀବ ଲୋକଙ୍କ ମଧ୍ୟରେ ବ୍ୟାପିବାରେ ଲାଗିଛି । ୧୦/୨୦ ବର୍ଷ ତଳେ ଗାଁଗହଳ ବୁଢ଼ାବୁଢ଼ୀମାନେ ଏକାଦିକ୍ରମେ ଗୋଟିଏ ପୁଅ ପାଖରେ କିଛିମାସ ରହିବା ପରେ ଅନ୍ୟ ପୁଅ ପାଖକୁ ଯାଇ ରହୁଥିଲେ । ବର୍ତ୍ତମାନ ଏ ସାମାଜିକ ବ୍ୟବସ୍ଥା ଭୁଷୁଡ଼ି ପଡ଼ିଛି । କୌଣସି ପୁଅ, ବୋହୂଙ୍କ ପାଖରେ ଏକାଧିକ ଦିନ ରହିବାକୁ, ବୁଢ଼ାବୁଢ଼ୀମାନେ ନିରାପଦ ମଣୁନାହାନ୍ତି । ଗୋଟିଏ ଦିନ ଅନାଦର ପରେ, ପରିବର୍ତ୍ତନ ପାଇଁ ଅନ୍ୟ ପୁଅ ପାଖକୁ ଯିବାକୁ ବ୍ୟାକୁଳ ହେଉଛନ୍ତି । ଏଇ କଥାରୁ ଆମର ସାମାଜିକ ଜୀବନରେ ଯେ, କି ଘୋର ନୈତିକ ଅବକ୍ଷୟ ଘଟିଛି, ତାହା ପରିସ୍ଫୁଟ ହୁଏ । ସବୁଠାରୁ ଆଶ୍ଚର୍ଯ୍ୟ ଲାଗେ, କିପରି ଅଦୃଶ୍ୟରେ ଅନ୍ତଃସଲୀଳ ଫଲ୍‌ଗୁ ପରି ସମାଜରେ ବିରାଟ ପରିବର୍ତ୍ତନ ଘଟୁଛି ।

## ପ୍ରାକୃତିକ ପରିବେଶ

ଆଙ୍ଗିସଙ୍ଗି ଗ୍ରାମରେ ଦେଖାଯାଇଥିଲା ଯେ, ପାର୍ଶ୍ୱବର୍ତ୍ତୀ କୁସୁମୀ ନଦୀର କୂଳେ କୂଳେ ଗ୍ରାମବାସୀ ଆମ୍ବ, ପଣସ ତୋଟା ସୃଷ୍ଟି କରିବାରେ ଲାଗିଛନ୍ତି । ଏହି ଜାଗାଗୁଡ଼ିକ ଗ୍ରାମ କୋଠର । ଗ୍ରାମବାସୀ ସମୂହ ଉଦ୍ୟମରେ ଏହି ଜାଗାମାନଙ୍କରେ ଗଛ ଲଗାଇବାକୁ ଉଦ୍ୟମ କରି ବିଫଳ ହେବାରୁ, ଅଭିନବ କୌଶଳ ଅବଲମ୍ବନ କରିଥିଲେ । ଗ୍ରାମବାସୀମାନେ ଖଣ୍ଡେ ଖଣ୍ଡେ ଜାଗାକୁ ୧୦ଟି ପରିବାରକୁ ୧୦ ବର୍ଷ

ପାଇଁ ଲିଜ୍ ଦେଇଥିଲେ । ଚୁକ୍ତି ଥିଲା ଯେ, ସେମାନେ ଆମ୍ବ, ପଣସ, ବାଉଁଶ ଆଦି ଉତାରିବେ ଓ ତା ସଙ୍ଗେ ସଙ୍ଗେ ଜମିରେ ବିରି, କୋଳଥ ଆଦି ଫସଲ କରି ନିଜେ ଉପଭୋଗ କରିବେ । ଏହି ଉପାୟରେ ପ୍ରାୟ ୩୦ ଏକର ଜାଗାରେ ଗଛ ଉତାରିଛନ୍ତି । ଏହି ପଦ୍ଧତି ଅବଲମ୍ବନ କଲେ ସମଗ୍ର ଦେଶରେ ସବୁଜିମା ଭରିଯିବ ।

**ସମାଜ ସପ୍ତାହିକ ୧୦.୦୧.୧୯୯୬**

# ଗ୍ରାମେ ଗ୍ରାମେ ପରିବେଶ

ନାରାୟଣ ହଜାରୀ

'ବୃକ୍ଷ ଓ ଜୀବର ବନ୍ଧୁ' ଅନୁଷ୍ଠାନ ପକ୍ଷରୁ ନୟାଗଡ଼ ଓ ଖୋର୍ଦ୍ଧା ଜିଲ୍ଲାର ପ୍ରାୟ ୧୭ ଶହ ଗ୍ରାମରେ ପଦଯାତ୍ରା କରାଯାଇ ଲୋକମାନଙ୍କୁ ସଚେତନ, ସଂଗଠିତ ଓ କ୍ରିୟାଶୀଳ କରିବାକୁ ଆନ୍ତରିକ ଉଦ୍ୟମ ହୋଇଛି । ପରିବେଶବିତ୍‌ମାନଙ୍କ ପାଇଁ ବୁଦ୍ଧଗ୍ରାମ ଏକ ତୀର୍ଥ ସ୍ଥାନରେ ପରିଣତ ହୋଇଛି ।

୧୯୯୬ ଫେବୃୟାରୀ ୧୦ ଓ ୧୧ ତାରିଖ ଦୁଇ ଦିନ ନିମ୍ନ ଲିଖିତ ୧୯ଟି ଗ୍ରାମରେ ଅନୁଷ୍ଠାନ ତରଫରୁ ପଦଯାତ୍ରା ହୋଇଥିଲା । ଗ୍ରାମଗୁଡ଼ିକ ହେଲା ଗୋଡ଼ିପଡ଼ା, ତୋଟାପଡ଼ା, ଟାଙ୍ଗିସାହି, ହରିଡ଼ାପଡ଼ା, ତୋଟାପଡ଼ା, ଖଜୁରି ପଠା, ଜାକେଡ଼ା, ଦୟଣାଝରୀ, ଜାମୁସାହି, କେଶପାନିଆ, ମଝିଆଁଖଣ୍ଡ, ପଂଚୁମୁ, ଭାଲିଆ ଡ଼ିହ, ବଡ଼କୁଟୁଣୀ, ସାନକୁଟୁଣୀ, କଜଳାଇପଲୀ, ତୋଡ଼ିବାରୀ, ପାଙ୍କାଳବାଡ଼ି, ମକାମାରୁ । ଲେଖକଙ୍କ ସହିତ ବସନ୍ତ, ନୀଳମଣି, କୈଳାସ, ସୁଶାନ୍ତ ପଦଯାତ୍ରାରେ ଯୋଗ ଦେଇଥିଲେ । ଗୋଟିଏ ଗାଁରୁ ଅନ୍ୟ ଗାଁକୁ ଗଲାବେଳେ ସ୍ଥାନୀୟ ପାଞ୍ଚ ସାତ ଜଣ ଲୋକ ମଧ୍ୟ ପଦଯାତ୍ରାରେ ଯୋଗ ଦେଉଥିଲେ ।

ପାଞ୍ଚ ହଜାର ଲୋକ ସଂଖ୍ୟା ବିଶିଷ୍ଟ ଗୋଡ଼ିପଡ଼ା ଗ୍ରାମରୁ ପଦଯାତ୍ରା ଆରମ୍ଭ ହୋଇଥିଲା । ତାପରରେ ୪୪ ଘର ବିଶିଷ୍ଟ ତୋଟା ପଡ଼ା ଗ୍ରାମରେ ପଦଯାତ୍ରୀ ଦଳ ପହଞ୍ଚିଥିଲେ ।ସଭାରେ ୨୦ ଜଣ ଉପସ୍ଥିତ ଥିଲେ । ପଡ଼ୋଶୀ ତଲାରିବନ୍ଧ ଗ୍ରାମର ଲୋକେ ସମାମାଜିକ ବନୀକରଣ ବିଭାଗ ଦ୍ୱାରା ଶୋଷିତ ହୋଇଥିବା କଥା ଜଣା ପଡ଼ିଲା । ସାମାଜିକ ବନୀକରଣ ବିଭାଗୀୟ କର୍ମଚାରୀମାନେ ଲୋକମାନଙ୍କୁ ସାମାଜିକ ବନୀକରଣ ଜଂଗଲ କାଟିବାକୁ ଉସୁକାଉଛନ୍ତି । ସେମାନେ କହୁଛନ୍ତି ୧୦/୧୨ ବର୍ଷ ପରେ ଗଛଗୁଡ଼ିକ ମରିଯିବ । ତା ଆଗରୁ କାଟି ଦେଇ ବିକ୍ରି କରି ଦେବା ଭଲ । ପୁଣି ଗଛ ଲଗାଅ । କାଠ ବିକ୍ରିରୁ ଜଂଗଲ ବିଭାଗ କର୍ମଚାରୀ ୨୫ ପ୍ରତିଶତ ଓ ଗ୍ରାମବାସୀ ୭୫ ପ୍ରତିଶତ ଅର୍ଥ ନେଉଛନ୍ତି । ଲୋକମାନଙ୍କଠାରୁ କ୍ୱିଣ୍ଟାଲ ୪୨ ଟଙ୍କାରେ

କିଣି ୧୧୮ ଟଙ୍କାରେ ଭୁବନେଶ୍ୱରରେ ବିକ୍ରି କରୁଛନ୍ତି । କେତେକ ସ୍ୱାର୍ଥନ୍ୱେଷୀ ଜଂଗଲ ବିଭାଗର କର୍ମଚାରୀମାନଙ୍କର ଅଭିସନ୍ଧି, ସରଳ ଗ୍ରାମବାସୀ ବୁଝିପାରୁ ନାହାନ୍ତି । ଏହି ପ୍ରକାର କର୍ମଚାରୀମାନଙ୍କୁ ପରିବେଶବିତ୍ ଶ୍ରମିକ ଯୋଗୀ କାଠଖିଆ ବାଘ ବୋଲି ଅଭିହିତ କରିଛନ୍ତି । କୌଣସି ଗ୍ରାମର ଲୋକମାନେ ପ୍ରଲୋଭିତ ହୋଇ ବା ଦିଗଭ୍ରଷ୍ଟ ହୋଇ ଜଂଗଲ ନଷ୍ଟ କଲେ ପଡ଼ୋଶୀ ଗ୍ରାମବାସୀମାନେ ଏହାର ଅହିଂସା ପ୍ରତିରୋଧ କରିବା ଉଚିତ । ତାପରେ ଟାଙ୍ଗିସାହି ଗ୍ରମରେ ପହଞ୍ଚିଲୁ ।

ଛପନ ଘର ବିଶିଷ୍ଟ ହରିଡ଼ାବନ୍ଧ ଗ୍ରାମରେ ଆମ୍ଭେମାନେ ପହଞ୍ଚିଲୁ । ସଂକୀର୍ତ୍ତନ ହରିବୋଲ, ହୁଳହୁଳି ସହ ଗ୍ରାମବାସୀ ପଦଯାତ୍ରୀମାନଙ୍କର ଭବ୍ୟ ସମ୍ବର୍ଦ୍ଧନା କରିଥିଲେ । ପ୍ରାୟ ୧୫୦ ଜଣ ଲୋକ ସଭାରେ ଯୋଗ ଦେଇଥିଲେ ଓ ୫୦ ଜଣ ନାରୀ ଅନତିଦୂରରେ ଠିଆହୋଇ ଶୁଣିଥିଲେ । ପଡ଼ୋଶୀ ତଲାରୀ ବନ୍ଧ ଗ୍ରାମରେ ଗୋଟିଏ ଜଳ ପ୍ରକଳ୍ପ କରିବା ପାଇଁ ପ୍ରାୟ ୧ଲକ୍ଷ ଟଙ୍କାର ଗଛ କାଟିବାରୁ ସେ କଥା କହି ଦାସ କାଠିଆ ଗାୟକ ଗୋପାଳ ସିଠ କାନ୍ଦି ପକାଇଥିଲେ । ଗଛଗୁଡ଼ିକ ଚାଲିଯିବା ଦ୍ୱାରା କେବଳ ତଲାରୀବନ୍ଧର କ୍ଷତି ହୋଇନାହିଁ, ପଡ଼ୋଶୀ ଗ୍ରାମମାନଙ୍କର ମଧ୍ୟ କ୍ଷତି ହୋଇଛି । ବାୟୁରେ ଅମ୍ଳଜାନ କମିଛି ବର୍ଷା ପରିମାଣ କମିଛି । ଭୂମି ତଳ ଜଳ ପତନ ନିମ୍ନଗାମୀ ହୋଇଛି ଓ ଉତ୍ତାପ ବଢ଼ିଛି ।

ପଞ୍ଚଷଠି ଘର ବିଶିଷ୍ଟ କୋମଣ୍ଡା ଗ୍ରାମ ସଭାରେ ପ୍ରାୟ ୬୦ ଜଣ ଲୋକ ଯୋଗ ଦେଇଥିଲେ। ଗ୍ରାମର ଲୋକେ ଗମନାଗମନର ଅସୁବିଧା କଥା କହିଲେ । ଚାରି କିଲୋମିଟର ଦୂରରେ ଡାକ୍ତରଖାନା ରହିଛି । ବିଜୁଳି ନାହିଁ। ଦୁଇଟି ନଳ କୂପ ରହିଛି । ଗ୍ରାମ ପୋଖରୀଗୁଡ଼ିକ ପୋତି ହୋଇପଡ଼ିଛି । କାହିଁକି ଖୋଲୁ ନାହାନ୍ତି ବୋଲି ପଚାରିବାରୁ ଲୋକେ କହିଲେ ଯେ, ସରକାର ବା ପଞ୍ଚାୟତ ପୋଖରୀ ନିଲାମ କରି ପଇସା ପାଇବେ ଆମେ କାହିଁକି ପୋଖରୀ ଖୋଳିବୁ । ପଦଯାତ୍ରୀମାନେ ଗ୍ରାମ ପରିକ୍ରମା କଲାବେଳେ ଯେତେ କହିଲେ ମଧ୍ୟ ୭/୧୦ ବର୍ଷର ଝିଅମାନେ ଧାଡ଼ିରେ ନଯାଇ, ରାସ୍ତା କଡ଼େ କଡ଼େ କଣ୍ଟା, ପଥର, କାଚ କୁଦି କୁଦି ଯାଉଥାଆନ୍ତି । ଆମ ଦେଶର ଝିଅମାନଙ୍କ ମଧ୍ୟରେ ହୀନମନ୍ୟତା ଯୁଗ ଯୁଗ ଧରି ବସା ବାନ୍ଧି ରହିଛି । ସେମାନେ ପୁରୁଷମାନଙ୍କ ଠାରୁ ନିଜକୁ ହୀନ ବୋଲି ଭାବନ୍ତି । ନିଜକୁ ମଣିଷ ବୋଲି ଭାବନ୍ତି ନାହିଁ । 'ଆମେ କେଉଁ ମଣିଷରେ ଗଣା ଯେ ସଭାରେ ଯୋଗ ଦେବୁ ।' ଏହି ପ୍ରକାର ମାନସିକତା ସେମାନଙ୍କ ମଧ୍ୟରେ ବିଦ୍ୟମାନ । ମହିଳାମାନେ ଯେ, ସଂସାରର ସାମାଜିକ ସମସ୍ୟା ସଂପର୍କରେ ଅବହିତ ହେବା ଉଚିତ ଓ ସେମାନଙ୍କ ସ୍ଥାନ ଯେ, କେବଳ ରୋଷେଇ ଘରେ ଏବଂ ଘର କୋଣରେ ଆବଦ୍ଧ ନୁହେଁ - ଏହି

ମନୋଭାବ ପୁରୁଷମାନେ ମହିଳାମନଙ୍କ ମନରେ ସୃଷ୍ଟି କରିବାକୁ ହେବ । ଏହି ଗ୍ରାମରେ ଏକତା ନାହିଁ । ଗ୍ରାମର ବିକାଶରେ ପୂର୍ଣ୍ଣଚ୍ଛେଦ ପଡ଼ିଛି । ଦୁଇ ଷଣ୍ଢ ଲଢ଼େଇରେ ବାଛୁରୀ ଗୋଡ଼ ଛୋଟା । ଗ୍ରାମବାସୀ ଭୋଜନର ବ୍ୟବସ୍ଥା କରୁଥିଲେ ।

ସାତ ଘର ବିଶିଷ୍ଟ ଆଦିବାସୀ ଗ୍ରାମ ଖୁଜୁରୀପଡ଼ାରେ ପହଞ୍ଚି ଲୋକମାନଙ୍କର ଶୋଚନୀୟ ଅବସ୍ଥା ବିଶେଷ ଦୁଃଖ ଲାଗିଥିଲା । ଗ୍ରାମମାନଙ୍କରେ ପଦଯାତ୍ରୀମାନେ ନିମ୍ନଲିଖିତ ସ୍ଲୋଗାନମାନ ଦେଇ ଅ ।ଗେଇ ଚାଲୁ ଥିଲେ ।

ପୃଥିବୀର ଏହି ସୁନ୍ଦର ବନ
କମି କମି ଆସେ ଦିନକୁ ଦିନ ।
ସଜାଡ଼ି ସାଇତି ନଦେଲେ ବନ
ଅବେଳରେ ଯିବ ଆମ ଜୀବନ ।
ଜଙ୍ଗଲ, ପାହଡ଼ ହେଲାଣି ଲଣ୍ଡା
କାହିଁରେ ଜଳିବାଏନ୍ତୁଡ଼ି ସୁଣ୍ଡା ।
ଚେର ମୂଳ ଏବେ ହେଲାଣି ତଡ଼ା,
କେଉଁଥିରେ ଆମେ ହେବାରେ ପୋଡ଼ା ।
ଗଛ ପରି ଆଉ ଦେବତା ନାହିଁ
କେବେ ହେଲେ ଭୋଗ ସେ ଖାଏ ନାହିଁ ।

ଜାକେଡ଼ା ଗ୍ରାମରେ ୧୦୦ ଘର । ସେଥିରୁ ଦଳିତ ବା ହରିଜନ ୩୧ ଘର । ସଭାରେ ପ୍ରାୟ ୨୫ଜଣ ଲୋକ ଯୋଗ ଦେଇଥିଲେ । ରତ୍ନମାଳା ପାଦ ଦେଶରେ ଏହି ଗ୍ରାମଟି । ରତ୍ନମାଳା ପର୍ବତ (ଯାହା ବାଣପୁର ଓ ନୟାଗଡ଼ ମଝିରେ ପ୍ରାଚୀର ପରି ଦଣ୍ଡାୟମାନ)ର ସୁରକ୍ଷା ଏହି ପଦଯାତ୍ରାର ଉଦ୍ଦେଶ୍ୟ ଥିଲା । ଗ୍ରାମବାସୀଙ୍କଠାରୁ ଜାଣିବାକୁ ପାଇଲୁ ଯେ ପାହାଡ଼ଟି ନଷ୍ଟ ହୋଇଯାଇଥିଲା । କେବଳ ପୋକଶୁଙ୍ଗା, ଟୁଙ୍ଗାଡ଼ଙ୍କ ପାହାଡ଼ସାରା ମାଡ଼ି ଯାଇଥିଲା । ଗୋଡ଼ିପଡ଼ା, ଡ଼ିମିସର, ପାଟୁଳି ସାହି, କୁରଡ଼ଙ୍ଗ, ଖଲର ପଟି, କଇଁଫୁଲିଆ, ତୋଟାପଡ଼ା, ହରିଡ଼ାବନ୍ଧ, ତୋଟାପଡ଼ା, କୋମଣ୍ଡା ଆଦି ୯ଟି ଗ୍ରାମର ଲୋକମାନେ ୫ବର୍ଷ ପାହାଡ଼ ଜଗିଲା ପରେ ଶାଳ, ପିଆଶାଳ, ଶିଶୁ, ବାନ୍ଧଣ, ଧଉରା, ଗିରିଙ୍ଗ, ହରିଡ଼ା ବାହାଡ଼ା, ଅଳାଁ, ଅସନ, କୁମ୍ଭୀ, ସିବା, କୁରୁମା, ବେଲ, କେନ୍ଦୁ, ଜରି, ମଇ, ଭେଣ୍ଟିଆମର୍ଦ୍ଦନ, ଶିମିଳି, ବର, କୁରୁମ ଆଦି ଗଛ ମୂଳରୁ ଗଜା ବାହାରି ଆଖି ଦୃଶିଆ ହେଲାଣି । ଦୁଇ ବର୍ଷ ହେଲ ହାତୀ

ପାହଡ଼କୁ ଆସୁଛନ୍ତି । ୧୯୯୫ରେ ୪ଟି ହାତୀ ଆସି କୋମଣ୍ଡୀ ଗ୍ରାମରୁ ଧାନ ଖାଇଛନ୍ତି । ପାହାଡ଼ରେ କରଡ଼ାପତ୍ରି, ଗୟଳ ବାରହା,କୋଟରା, ଝିଙ୍କ ଆଦି ପଶୁ ମୟୁର, କୁକୁଡ଼ା, କଇଜର ଆଦି ପକ୍ଷୀ ଓ ଅଜଗର, ଅହିରାଜ ଆଦି ସରୀସୃପ ରହିଛନ୍ତି ।

ପାହାଡ଼ ତଳେ ଆଠ ଜଣ ଲୁଙ୍ଗି ପିନ୍ଧା ଯୁବକଙ୍କୁ ଦେଖିଲୁ । କାନ୍ଧରେ କୁରାଢ଼ି ପକାଇ ସେଥିରେ ବ୍ୟାଗ ଓହଳାଇ ଚାଲିଛନ୍ତି । ସେମାନେ ବାଣପୁର ପାର୍ଶ୍ୱବର୍ତ୍ତୀ ଧୂଆଁନଳୀ ଜଙ୍ଗଲ ଅଭିମୁଖେ ଅପରୋହ୍ନ ୪ଟା ବେଳେ ବାହାରିଥାନ୍ତି । ରାତି ପ୍ରାୟ ୯ଟାରେ ସେଠରେ ପହଞ୍ଚି ରୋଷେଇ କରି, ଖିଆପିଆ ସାରି ତା ଆରଦିନ ପାଇଁ ପଖାଳ ରଖିବେ । ସକାଳୁ ଶାଳ କାଠ ହାଣି ପକାଇଦେବେ । ତା ପରେ ପଖାଳ ଖାଇ ବିଶ୍ରାମ ନେଇ ନିଜ ଗ୍ରାମ ଅଭିମୁଖେ ଫେରିବେ । ଦିନେ ବା ଦୁଇ ଦିନ ପରେ ହଳ ନେଇ ହାଣିଥିବା କାଠକୁ ଆଣିବେ । ପ୍ରତ୍ୟେକ ବ୍ୟକ୍ତି କାଠ ବିକ୍ରି କରି ପ୍ରାୟ ୧୦୦୦ ଟଙ୍କା ପାଇବେ । ଆଉ ଥରେ ଧୂଆଁନଳୀ ଜଂଗଲରେ ଥିବା ସେଣ୍ଟ୍ରାଲ ରିଜର୍ଭ ପୋଲିସ ତାଙ୍କର ପିଠି ପଡ଼ିଆପଟା କରନ୍ତି । ଏତେ ମାଡ଼ ଖାଇ ମଧ ନିଆଁ ଗିଳା କାମ ଚାଲୁ ରହିଛି । ଏଠାରେ ଜାଣିବାକୁ ପାଇଲୁ ଯେ ଜାକେଡ଼ା, ଦୟଣାଝରୀ, ପଙ୍କାଳବାଡ଼ି ଏହି ତିନୋଟି ଗ୍ରାମ ରତ୍ନମାଳାର ୬ଶହ ଏକର ଜଙ୍ଗଲ ଜଗୁଛନ୍ତି । ପ୍ରତି ଦିନ ୨ଜଣ ଲେଖାଏଁ ଜଗୁଆଳି ପାଳି କରି ରହୁଛନ୍ତି ।

ବାଉନ ଘର ବିଶିଷ୍ଟ ଦୟଣାଝରୀ ଗ୍ରାମରେ ପହଞ୍ଚିଲୁ । ସେଠାରେ ୨୦ ଘର ହରିଜନ ଅଛନ୍ତି । ସଭାରେ ୫୦ ଜଣ ଲୋକ ଉପସ୍ଥିତ ଥିଲେ । ରାତି ୭ଟା ୩୦ରେ ୩ କି.ମି. ଦୂର କେଶପାନିଆ ଅଭିମୁଖେ ବାହାରିଲୁ। ବାଟରେ ଦୁଇଟି କାଠ ବୋଝେଇ ଟ୍ରକ ଦେଖିଲୁ । କୌଣସି ଗ୍ରାମବାସୀ ବ୍ୟବସାୟିକ ଉଦ୍ଦେଶ୍ୟ ପାଇଁ ଗଛ କାଟିଲା ବେଳେ, ପଡ଼ୋଶୀ ଗ୍ରାମବାସୀ ତାର ପ୍ରତିରୋଧ କରିବାକୁ ହେବ । ଯେଉଁ ଗ୍ରାମ ବାଟେ କାଠ ବୋଝେଇ ଟ୍ରକ ଯିବ ସେହି ଗ୍ରାମବାସୀ ଟ୍ରକକୁ ଛାଡ଼ିବେ ନାହିଁ । ଗୋଟିଏ ଗ୍ରାମର ଲୋକଙ୍କ ପକ୍ଷରେ ଏହା ସମ୍ଭବ ନହେଲେ ଅନ୍ୟ ଗ୍ରାମର ଲୋକମାନଙ୍କ ସହିତ ଯୋଗଯୋଗ କରି ଜନ ଆନ୍ଦୋଳନ ମାଧ୍ୟମରେ ଗଛ କଟା ଓ କାଠ ବୁହା ଟ୍ରକ ବନ୍ଦ କରିବାକୁ ହେବ ।

ରାତି ୯ଟା ବେଳେ ୧୬୦ ଘର ବିଶିଷ୍ଟ କେଶପାନିଆଁ ଗ୍ରାମରେ ପହଞ୍ଚିଥିଲୁ । ଏହା ଥିଲା ସେଦିନ ପଦଯାତ୍ରାର ଶେଷ ଗ୍ରାମ । ଏହି ଗ୍ରାମବାସୀ ସ୍ୱକୀୟ ଉଦ୍ୟମରେ ମଧ୍ୟ ଇଂରେଜୀ ବିଦ୍ୟାଳୟ ଓ ଉଚ୍ଚ ବିଦ୍ୟାଳୟ କରିଛନ୍ତି । ଏହି ଗ୍ରାମ ସଭାରେ ପ୍ରାୟ ୬୦ ଜଣ ଲୋକ ଯୋଗ ଦେଇଥିଲେ । ଗ୍ରାମରେ ଏକତା ନଥିବାର ଲକ୍ଷ୍ୟ କରାଯାଇଥିଲା । ଗ୍ରାମବାସୀମାନେ ଅ ।ମର ରାତ୍ରି ଭୋଜନର ବ୍ୟବସ୍ଥା କରିଥିଲେ ।

ଏଗାର ତାରିଖ ଦିନ ସକାଳ ୮ଟା ଠାରୁ ପଦଯାତ୍ରୀ ଦଳ ଜାମୁସାହି ଅଭିମୁଖେ ଯାତ୍ରାରମ୍ଭ କରିଥିଲେ । ସଭାରେ ୧୦ ଜଣ ଲୋକ ଯୋଗ ଦେଇଥିଲେ । ଏହି ଗ୍ରାମ ୩୫ ଘର ବିଶିଷ୍ଟ । ସେଥିରୁ ହରିଜନ ୧୦ ଘର । ସବର୍ଣ୍ଣ ଅସବର୍ଣ୍ଣ ବିବାଦରୁ ସଂଘର୍ଷ ଜାତ ହୋଇ ନିକଟ ଅତୀତରେ ହରିଜନ ଘର ସବୁ ପୋଡ଼ି ଦିଆଯାଇଛି । ଥାନା ଓ କୋର୍ଟରେ କେଶ୍ କରି ୨ ବର୍ଷରେ ୨ ଲକ୍ଷ ଟଙ୍କା ଗ୍ରାମବାସୀ ଶ୍ରାଦ୍ଧ କରିଛନ୍ତି । ୩୦ ଜଣ ସବର୍ଣ୍ଣ ଲୋକ ୨୦ଦିନ ଜେଲ ଦଣ୍ଡ ଭୋଗ କଲେ । ଏଠାରୁ ଜାଣିବାକୁ ପାଇଲୁ ଯେ, ସେଣ୍ଟ୍ରାଲ ରିଜର୍ଭ ପୋଲିସକୁ ୧୦୦୦ ଟଙ୍କା ଲାଞ୍ଚ ଦେଲେ କାଠଗାଡ଼ି ଛାଡ଼ି ଦେଉଛନ୍ତି । ଲୋକେ ଅଭିଯୋଗ କଲେ, ରକ୍ଷକ ଭକ୍ଷକ ପାଲଟିଛନ୍ତି ।

ତୋଡ଼ିବାରି ଗ୍ରାମରେ ୫୧ ଘର । ହରିଜନ ୨୫ ଘର ଓ ସବର୍ଣ୍ଣ ୨୬ ଘର । ତାପରେ ଆଦିବାସୀ ଗ୍ରାମ ପଙ୍କାଳବାଡ଼ିରେ ପହଞ୍ଚିଲୁ । ସଭାରେ ୫ ଜଣ ଯୋଗ ଦେଇଥିଲେ । ଟାଙ୍ଗା ପାଣିଆକୁ, କଡ଼ବା ଖାଇ ତିନି ଚାରି ଦିନ ପର୍ଯ୍ୟନ୍ତ ଏହି ଗ୍ରାମବାସୀମାନେ ରହିଯାଆନ୍ତି । ଖାଦ୍ୟ ଅଭାବରେ ସେମାନେ ସଢୁଥାନ୍ତି । ଟୁଙ୍ଗାକୁ ବାଟି, କ୍ଷତ ଓ ହାଡ଼ଭଙ୍ଗାର ଚିକିତ୍ସା କରନ୍ତି । ଏହି ଗ୍ରାମର ୩ ଜଣ ବିଧବା ୩ ଥର ଦରଖାସ୍ତ କରି ମୁଣ୍ଡରେ ହାତ ଦେଇ ବସିଛନ୍ତି । ବିଧବା ଭତ୍ତା ମିଳୁ ନାହିଁ । ସରକାରୀ ବ୍ୟବସ୍ଥା ଉପରେ ଲୋକମାନଙ୍କ ବିଶ୍ୱାସ ତୁଟି ଯାଇଛି । ଆଠ ଘର ବିଶିଷ୍ଟ ମକାମାରୁ ଗ୍ରାମ ସଭାରେ ୯ଜଣ ଲୋକ ଉପସ୍ଥିତ ଥିଲେ ।

ପ୍ରାୟ ଦିନ ୨ଟା ବେଳେ ୪୦ ଘରବିଶିଷ୍ଟ ସାନ କୁଟୁଣୀ ଗ୍ରାମରେ ପହଞ୍ଚିଲୁ । ଗ୍ରାମସଭାରେ ୨୫ ଜଣ ଲୋକ ଉପସ୍ଥିତ ଥିଲେ । ଏହି ଗ୍ରାମର ଲୋକମାନେ ନିକଟସ୍ଥ ତୁଗୁରି ଜଂଗଲ ରକ୍ଷା କରନ୍ତି । ପରିକ୍ରମା କରାଯାଇଥିଲା । ସଭାରେ ପ୍ରାୟ ୨୦୦ ଲୋକ ଯୋଗ ଦେଇଥିଲେ । ରତ୍ନମାଳାପର୍ବତର ସୁରକ୍ଷା ପାଇଁ ଏହି ଗ୍ରାମର ଏକ ବିଶେଷ ଭୂମିକା ରହିଛି । ଏହି ଗ୍ରାମଟି ରତ୍ନମାଳାର ଦ୍ୱାର ଦେଶରେ ଅବସ୍ଥିତ । କାଠ କଟାଳିମାନେ ଏହି ବାଟ ଦେଇ ଶଗଡ଼ ନିଅନ୍ତି । ଏହି ଗ୍ରାମବାସୀମାନେ ଜଗିଦେଲେ ଶଗଡ଼ ଯିବା ବନ୍ଦ ହୋଇଯିବ । କିନ୍ତୁ ଗ୍ରାମର ଏକତା ନଥିବାରୁ ଗ୍ରାମ ଅଥର୍ବ ଓ ଅସହାୟ ହୋଇ ପଡ଼ି ରହିଛି । ଗ୍ରାମ ସଭାରେ ଲୋକମାନେ ନିଜକୁ ନିଜେ ଠିକ୍ କରିବା ପାଇଁ ଉଦ୍‌ବୋଧନ ଦେଇଥିଲୁ । ନିଜକୁ ନିଜେ ସାହାଯ୍ୟ କରିବା ବିକାଶର ନିର୍ଭରଶୀଳ ପଥ । ଲୋକମାନଙ୍କୁ ବୁଝାଇ, ଗ୍ରାମଦାଣ୍ଡରେ ଅଧିଆ ପଡ଼ି, ଅନଶନ କରି, ଗ୍ରାମ ଏକତା ଫେରାଇ ଆଣିବାକୁ ଗ୍ରାମବାସୀଙ୍କୁ ନିବେଦନ କରିଥିଲୁ ।

ସଭାରେ 'ବୃକ୍ଷ ଓ ଜୀବର ବନ୍ଧୁ' ୩ ଜଣ ସ୍ୱେଚ୍ଛାସେବୀ ସଦାନନ୍ଦ, ଅଳକା ଓ ଭାଗ୍ୟଲକ୍ଷ୍ମୀଙ୍କର ପ୍ରେରଣାଦାୟକ ସତ୍ୟାଗ୍ରହର ଉଦାହରଣ ଦେଇଥିଲୁ । ରଣପୁର ବ୍ଲକର

ନୋତର ଏକ ବଡ଼ ଗ୍ରାମ । ଏହି ଗ୍ରାମର ଗ୍ରାମବାସୀମାନେ ଏକ ଜଂଗଲ ରକ୍ଷା କରିଛନ୍ତି । ବର୍ତ୍ତମାନ ଗ୍ରାମ ବିବାଦ ଲାଗି ରହିଥିବା ଯୋଗୁଁ ଗ୍ରାମବାସୀ ଗଛ କାଟିବାରେ ମାତିଛନ୍ତି । ଜାନୁୟାରୀ ୧୭ ତାରିଖ ଦିନ ଉପରୋକ୍ତ ୩ ଜଣ ସ୍ୱେଚ୍ଛାସେବୀ ପ୍ରାତଃ ୫ଟାରୁ ନୋତର ଗ୍ରାମଦାଣ୍ଡରେ ଶୋଇ ରହିଥିଲେ ଅପରାହ୍ନ ୪ଟା ୩୦ ମିନିଟ ପର୍ଯ୍ୟନ୍ତ । ନଖାଇ ନପିଇ ଅଧିଆ ପଡ଼ିଥାନ୍ତି । ପ୍ରାୟ ୨୦୦ ଲୋକ ଚାରିପାଖେ ବସି ରହି ଦେଖୁଥାନ୍ତି । ଜଣେ ବୁଢ଼ୀ କାନ୍ଦି କାନ୍ଦି କହୁଥାନ୍ତି 'ଏଇ ଗାଁରେ ମଣିଷ ନାହାନ୍ତି, ଏମାନଙ୍କର ହୃଦୟ ନାହିଁ । ଅଂଚଳ ଯାକ ଚହଳ ପଡ଼ି ଯାଇଥିଲା । ପଡ଼ିଶା ଗାଁର ଲୋକମାନେ ଓ ବାଟୋଇମାନେ ମଧ୍ୟ ଆସି ସମବେତ ହୋଇଥାନ୍ତି । କିଛି ମହିଳା ଅଶ୍ରୁବର୍ଷଣ କରୁଥାନ୍ତି । ଅପରାହ୍ନ ୫ଟା ବେଳକୁ ୨ ଦଳର ଲୋକମାନେ ଗ୍ରାମର ବିବାଦ ନିଜ ନିଜ ଭିତରେ ତୁଟାଇ ଦେବାକୁ ଲେଖି କରି ଦେଲେ । ତାପରେ ସତ୍ୟାଗ୍ରହୀମାନେ ଉଠିଲେ । ବଡ଼ କୁଟୁଣୀରେ ସଭା ଚାଲିଥିଲା ବେଳେ ବର୍ଷା ହୋଇଥିଲା । ପଦଯାତ୍ରା ହେଲା ବେଳେ ପ୍ରାୟ ବର୍ଷା ହୁଏ । ଏଥିରୁ ଈଶ୍ୱରଙ୍କ ସ୍ୱୀକୃତି ଅଛି ବୋଲି ଜଣାପଡ଼େ । ତାପରେ ପଡ଼ୋଶୀ ଗ୍ରାମ କଜଳାଇ ପଲ୍ଲୀ ପରିକ୍ରମା କରିଥିଲୁ ।

ତାପରେ ଭାଲିଆ ଡିହ ଗ୍ରାମରେ ପହଞ୍ଚିଥିଲୁ । ଏହି ଗ୍ରାମରେ ବିବାଦ ଲାଗି ରହିଛି । ପଞ୍ଝୁମୁ, ମଝିଆଁ ଖଣ୍ଡ ଗ୍ରାମ ମଧ୍ୟ ପଦଯାତ୍ରୀମାନେ ପରିକ୍ରମା କରିଥିଲେ ।

**ବର୍ତ୍ତମାନ ସମାଚାର ୫.୧୨.୯୬**

# ଗ୍ରାମେ ଗ୍ରାମେ ପରିବେଶ

ନାରାୟଣ ହଜାରୀ

ନୟାଗଡ଼ ଜିଲାର ବୁଦ୍ଧଗ୍ରାମ (କେଶରପୁର)ରେ ଅବସ୍ଥିତ "ବୃକ୍ଷ ଓ ଜୀବର ବନ୍ଧୁ" ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ । ଏହି ପରିବେଶ ସୁରକ୍ଷା ଓ ନିରବଚ୍ଛିନ୍ନ ବିକାଶ ପାଇଁ ୧୯୭୨ ମସିହାରୁ କାର୍ଯ୍ୟ କରିଆସୁଛି ଏବଂ ଲୋକମାନଙ୍କ ମଧ୍ୟରେ ସଚେତନତା, ସଙ୍ଗଠନ ଓ କର୍ମପ୍ରବଣତା ସୃଷ୍ଟି ପାଇଁ ଉଦ୍ୟମ କରୁଛି । ସମୂହ ସ୍ୱାର୍ଥ ରକ୍ଷା ପାଇଁ ଲୋକଙ୍କ ସକ୍ରିୟ ଅଂଶଗ୍ରହଣ ଉପରେ ଏହା ପ୍ରାଧାନ୍ୟ ଦେଇଆସିଛି । ନୟାଗଡ଼, ଗଞ୍ଜାମ, ଫୁଲବାଣୀ ଓ ଖୋର୍ଦ୍ଧା ଜିଲାର ପ୍ରାୟ ୨୦୦୦ ଗ୍ରାମରେ ପଦଯାତ୍ରୀ ଓ କର୍ମଶାଳା କରି "ବୁଦ୍ଧଗ୍ରାମ ପରିବେଶ ଆନ୍ଦୋଳନ"ର ବାର୍ତ୍ତା ପହଞ୍ଚାଇବା ପାଇଁ କାର୍ଯ୍ୟକରି ଆସିଛି ।

ବାଣପୁର ଓ ନୟାଗଡ଼ ମଝିରେ ଥିବା ରତ୍ନମାଳା ପର୍ବତର, ରଣପୁରଠାରୁ ଓଡ଼ଗାଁ ପର୍ଯ୍ୟନ୍ତ ବିସ୍ତୃତି । ତାର ପାଦଦେଶରେ ଅବସ୍ଥିତ ପଞ୍ଚମୁ, କଦଳାଇପଲ୍ଲୀ, ଶିଖରପୁର ଓ ବରସାହି ପଞ୍ଚାୟତ । ଏ ଅଞ୍ଚଳରେ ଜଙ୍ଗଲରେ ଗଛକଟା ଅବାରିତ ଭାବେ ଚାଲିଛି । ତେଣୁ ୨୭ ଟି ଗ୍ରାମରେ ପରିବେଶ ସୁରକ୍ଷା ପାଇଁ ଜନସଚେତନତା ସୃଷ୍ଟି ସକାଶେ ପଦଯାତ୍ର ଆରମ୍ଭ କରାଯାଇଥିଲା ।

ଜାନୁଆରୀ ୨୨ ଓ ୨୩ରେ ଲେଖକଙ୍କ ସମେତ ପାଞ୍ଚଜଣ ପଦଯାତ୍ରୀ କୁଞ୍ଜବନପଲ୍ଲୀ, ମକାମାରୁ, ସାନକୁଟୁଣୀ, ବଡ଼କୁଟୁଣୀ, କଜଳାଇପଲ୍ଲୀ, ବଧିସାହି, ପାଣିଭଣ୍ଡାର, ଖଲାରପାଟଣା, ଗନ୍ଧବାରଣ, କୁରୁମଣ୍ଡାଳି, ବରସାହି, ସିଙ୍ଗାପୁରର ଆଦି ୧୨ଟି ଗ୍ରାମରେ ପଦଯାତ୍ରା କରିଥିଲେ । ଜାନୁଆରୀ ୨୫, ୨୬ ଓ ୨୮ରେ ଧୁଷୁମା (ଲୋକସଂଖ୍ୟା ୧୫୦୦), ଗୋଲଗାଁ (ଲୋକସଂଖ୍ୟା ୨୫୦୦), ଶିଖରପୁର (ଲୋକସଂଖ୍ୟା ୬୦୦୦) ଗ୍ରାମକୁ ଲେଖକ ଏକାକୀ ପଦଯାତ୍ରା କରିଥିଲେ । ଫେବୃଆରୀ ୫ ଓ ୬ ରେ ଲେଖକ ସମେତ ୨୦ ଜଣ ପଦଯାତ୍ରୀ ଖଇରପଙ୍ଗା, ତୋଟାପଡ଼ା, ହରିଡ଼ାବନ୍ଧ, କୋମଣ୍ଡା, ଜାକଡ଼ା, ଜୟଣାଝରି, ତୋରିବାରି,

କେଶପାନିଆଁ, ମଝିଆଖଣ୍ଡ, ପଞ୍ଚମୁ, ଜାମ୍ବୁସାହି, ଭାଲିଆଡ଼ିହ ଆଦି ୧୨ ଟି ଗ୍ରାମରେ ପଦଯାତ୍ରା କରିଥିଲେ । ଲୋକଙ୍କର ବିଭିନ୍ନ ସମସ୍ୟା ଓ ତାହାର ସମାଧାନ ସମ୍ପର୍କରେ ଲୋକଙ୍କର ମତାମତ ନିଆଯାଇ ଆଲୋଚନା କରାଯାଇଥିଲା । ବିଶେଷ ଭାବରେ ଉଜୁଡ଼ି ଯାଉଥିବା ରତ୍ନମାଳା ପର୍ବତର ସୁରକ୍ଷା କିପରି ହେବ ତାହା ସଂପର୍କରେ ବିଶ୍ଳେଷଣ କରାଯାଇଥିଲା ।

ପଦଯାତ୍ରାରେ ନିମ୍ନଲିଖିତ ସ୍ଲୋଗାନମାନ ଦିଆଯାଇଥିଲା ।

ପର୍ବତ ଗଛ ଆଦିରେ ଛନ୍ଦି,
ଚିରସ୍ରୋତା ହୋଇବ ନଦୀ ।

ଗଛ ଲଗାଅ ଆଉ ବଞ୍ଚାଅ,
ପାଣିର ସ୍ତର ଉପରେ ଥୁଅ ।

ଜଙ୍ଗଲ ଆମ ଧନ ସମ୍ପଦ,
ତାକୁ ଧ୍ୱଂସ କଲେ ଆସେ ବିପଦ ।

ଜଙ୍ଗଲ ହୋଇଗଲେ ଶେଷ,
ହୋଇବ ନାହିଁ ଆଉ ଚାଷ ।

ଚେରମୂଳ ଏବେ ହେଲାଣି ଡଡ଼ା,
କାହିଁରେ ମଣିଷ ହୋଇବ ପୋଡ଼ା ।

ପର ଉପକାର ବୃକ୍ଷର ଧର୍ମ,
ପର ପାଇଁ ସହୁଅଛି କଷଣ ।

ଗଛ ଛାଇରେ ଆମେ ରହି,
ଗଛକୁ କାଟୁ ଅନ୍ଧ ହୋଇ ।

ତଥାପି ବୃକ୍ଷ କରେ ଦୟା,
କୃତଘ୍ନ ନରେ ହୁଏ ସାହା ।

ଗଛକୁ ଫୋପାଡ଼ିଲେ ଟେକା,
ପାଚିଲା ଫଳ ଦିଏ ଏକା ।

ବଣ ପଶୁ, ପକ୍ଷୀ ଆମରି ସାଥି,
ତାଙ୍କ ସୁରକ୍ଷାରେ ଯିବାରେ ମାତି ।

ଛୁଆ ଜନମ କମାଇ ଦେବା,
ଗଛ ସଂଖ୍ୟା ବଢ଼ାଇଦେବା ।

ଯିଏ ପିଏ ନିଶାପାଣି,
ବିନା ବିଚାରେ ଗଛ ହାଣି ।

ଖଇପରପଙ୍ଗା ଗ୍ରାମର ଶିକ୍ଷକ ହରିହର ବାହିନୀପତି ପଦଯାତ୍ରୀ ଦଳଙ୍କୁ ସ୍ୱାଗତ କରି ପଲ୍ଲୀ କବି ନନ୍ଦ କିଶୋର ବଳଙ୍କ 'ଗଛ ଓ କାଠୁରିଆ' କବିତାରୁ ଗାଇଥିଲେ,

"ରହ ଆରେ କାଠୁରିଆ ନପକାଅ ହାଣି,
ଶୁଣ କାନଡ଼େରି ଥରେ ଏ ଗଛ କାହାଣୀ ।
ମନେ ପଡ଼େ ପିଲାଦିନେ ଏହାରି ମୂଳରେ,
ଖେଳୁଥିଲି ମୁହିଁ ଖେଳସାଥୀ ଗହଣରେ ।
ନ ହାଣ ଏ ଗଛ ଶୁଣ ଶୁଣ ମୋର ବାଣୀ,
ଥାଇ ମୁଁ ଜୀବନେ ଗଛ ନ ପାରିବ ହାଣି ।
ଦେଖି ତାଙ୍କ କେତେ କଥା ହୁଏ ମୋ ସ୍ମରଣ,
ତା' ସାଙ୍ଗେ ଜଡ଼ିତ ମୋର ବିଗତ ଜୀବନ ।"

ଲୋକମାନଙ୍କ ସହିତ ଆଲୋଚନାରେ ଜଙ୍ଗଲ ସୁରକ୍ଷାରେ ସରକାରଙ୍କ ଭୂମିକା ସମ୍ପର୍କରେ ବାରମ୍ବାର ପ୍ରଶ୍ନ ଉଠିଥିଲା । ଲୋକେ ଜଙ୍ଗଲକୁ ଫସଲ ସହିତ ଓ ସରକାରଙ୍କୁ ବାଡ଼ ସହିତ ତୁଳନା କରିଥିଲେ । କହୁଥିଲେ, " ବାଡ଼ ଯଦି ଫସଲ ଖାଇଲା, ଫସଲ ହେବ କିପରି ?" ସରକାର ଜଙ୍ଗଲ ରଖିପାରିଲେ ନାହିଁ ଓ ପାରିବେ ନାହିଁ ବୋଲି ସହମତି ପ୍ରକାଶ ପାଇଥିଲା । ଯେଉଁଦିନ ଲୋକେ ଜଙ୍ଗଲ ରକ୍ଷା କରିବେ ସେଦିନ ଜଙ୍ଗଲ ରକ୍ଷା ହେବ । ଜଙ୍ଗଲ, ଜଳ, ଜମି ଲୋକଙ୍କର । ଜନ ଆନ୍ଦୋଳନ କରି ଜଙ୍ଗଲକୁ ଲୋକମାନଙ୍କ ହାତକୁ ଫେରାଇ ଆଣିବାକୁ ପଡ଼ିବ ।

ସରକାର ଜଙ୍ଗଲ ଉଜୁଡ଼ିବାର ଅନ୍ୟତମ ପ୍ରଧାନ କାରଣ ବୋଲି ମତାମତ ପ୍ରକାଶ ପାଇଥିଲା । ରାଜନେତା, ପ୍ରଶାସନ ଓ ମାଫିଆଗୋଷ୍ଠିଙ୍କର ସଲାସୁତରାରେ ଜଙ୍ଗଲ ସାହାଣ ମେଲା ହୋଇଯାଇଛି । ସରକାର ଶିଳ୍ପପତିଙ୍କ ସ୍ୱାର୍ଥ ପାଇଁ ବ୍ୟବସାୟିକ ଜଙ୍ଗଲ ଉପରେ ପ୍ରାଧାନ୍ୟ ଦେଉଛନ୍ତି । ପୃଥିବୀର ୯୦ ପ୍ରତିଶତ ବଣ୍ୟସମ୍ପଦ ନଷ୍ଟ ହୋଇ ସାରିଲାଣି । ଭାରତରେ ଆଉ ମାତ୍ର ୯ ପ୍ରତିଶତ ଅରଣ୍ୟ ରହିଛି । କିନ୍ତୁ ସ୍ଥଳଭାଗର ଏକ ତୃତୀୟାଂଶ ଜଙ୍ଗଲ ରହିବା କଥା ।

ଜଙ୍ଗଲ ହଜାର ହଜାର ବର୍ଷ ଧରି ଲୋକଙ୍କର ଥିଲା । ଉନବିଂଶ ଶତାବ୍ଦୀର ୮୦ ଦଶକରେ ବ୍ରିଟିଶ ସରକାର ଆଇନ କଲେ ଯେ ଜଙ୍ଗଲ ସରକାରଙ୍କର । ଏହାଫଳରେ ଲୋକଙ୍କର ଜଙ୍ଗଲ ପ୍ରତି ମମତା ତୁଟିଗଲା । ଜଙ୍ଗଲ ବିରୋଧୀ ମନୋବୃତ୍ତି ଲୋକଙ୍କ ମନେରେ ସୃଷ୍ଟି ହେଲା ।

ଜନସଂଖ୍ୟା ବିସ୍ଫୋରଣ ବଣ୍ୟସମ୍ପଦର କାଳ ହେଲା । ୧୬୫୦ ମସିହାରେ ପୃଥିବୀର ଲୋକସଂଖ୍ୟା ୫୨ କୋଟି ଥିଲା । ବର୍ତ୍ତମାନ ତାହା ୬୦୦ କୋଟିରେ ପହଞ୍ଚିଲାଣି । ଅର୍ଥାତ୍ ପ୍ରାୟ ବାରଗୁଣ ବଢ଼ିଗଲାଣି । ୧୯୪୭ରେ ଭାରତର ଲୋକସଂଖ୍ୟା ଥିଲା ୩୨ କୋଟି । ତେପନ ବର୍ଷରେ ଏହା ହେଲାଣି ୧୦୦ କୋଟି । ଚାଷ ଜମିର ଅଭାବ ଯୋଗୁଁ ଲୋକେ ଜଙ୍ଗଲକୁ ଚାଷ ଜମିରେ ପରିଣତ କଲେଣି । ଜଙ୍ଗଲ, ଜଳ ଓ ଜମିର ଘୋର ଅଭାବ ଦେଖାଦେଲାଣି । ଗ୍ରାମ ଗ୍ରାମ, ନଗର, ନଗର ଓ ଦେଶ ଦେଶ ମଧ୍ୟରେ ପାଣି ପାଇଁ ବିବାଦ ଓ ସଂଘର୍ଷ ଚାଲିଛି । ଭବିଷ୍ୟତ ଦ୍ୱିତୀୟ ଯୁଦ୍ଧ ମଧ ପାଣିପାଇଁ ହେବ ।

ବୃହତ୍ ଜଳ ବିଦ୍ୟୁତ୍ ପ୍ରକଳ୍ପମାନଙ୍କ ଯୋଗୁଁ ବିରାଟ ଅରଣ୍ୟମାନ ପାଣିରେ ବୁଡ଼ିଗଲା ।

କଳକାରଖାନାମାନଙ୍କର ପ୍ରସାର ସଙ୍ଗେ ସଙ୍ଗେ ସହର ଓ ନଗରମାନ ସ୍ଥାପିତ ହେଲା । ସେଗୁଡ଼ିକ ବଣ୍ୟସମ୍ପଦକୁ ଗିଳି ପକାଇଲା ।

ରାସ୍ତାଘାଟର ବିସ୍ତାର ସହିତ ଜଙ୍ଗଲ ହ୍ରାସ ପାଇବାରେ ଲାଗିଲା ।

ଲୋକମାନଙ୍କ ମଧ୍ୟରେ ଉଚ୍ଛୃଙ୍ଖଳତା ବଢ଼ିବାରେ ଲାଗିଛି । ସାମାଜିକ ନିୟନ୍ତ୍ରଣ ଦୁର୍ବଳ ଓ ଶିଥିଳ ହେବାରେ ଲାଗିଛି । 'ଯେ ଯା ହାତରେ ଚଉଦ ପା' । ଗ୍ରାମବାସୀଙ୍କ ଭାଷାରେ ଆଉ ସାନବଡ଼ ନାହିଁ । ଲୋକେ ଆଇନକୁ ହାତକୁ ନେଉଛନ୍ତି । ଜଙ୍ଗଲରୁ କେବଳ ଜାଳେଣି, ଚାଷ ଉପକରଣ, ଗୃହ ଉପକରଣ ଅଣାଗଲା ନାହିଁ । କାଠ ବ୍ୟବସାୟ ଚାଲିଲା । "ରାତିକେ ଆଣିବା ହାତିଏ" ମନବୃତ୍ତି ରହିଲା । ରାତାରାତି ଧନୀ ହେବାର ସ୍ୱପ୍ନ କେତେକ ଦେଖିଲେ । ଭୋଗବାଦୀ ସଭ୍ୟତାରେ ବିଳାସ ବ୍ୟସନ ବଢ଼ିଲା । କାଠର ଚାହିଦା ଆଶାତୀତ ଭାବେ ବଢ଼ିଗଲା ।

ଜଙ୍ଗଲ ଶେଷ ହୋଇଗଲେ କିପରି ଚଳିବେ ବୋଲି ସ୍ୱେଚ୍ଛାସେବୀଙ୍କର ପ୍ରଶ୍ନର ଉତ୍ତରରେ ଜନସାଧାରଣ କହୁଥିଲେ, "ସମସ୍ତେ ଯେପରି ଚଳିବେ ଆମେ ସେହିପରି ଚଳିବୁ ।" ଏ ପ୍ରକାର ଉତ୍ତର ପଛରେ କେବଳ ଅସହାୟତା ଥିଲା । ଯେଉଁ ସମସ୍ୟାର ସମାଧାନରେ ସମୂହ ପ୍ରଚେଷ୍ଟାର ଆବଶ୍ୟକତା ରହିଛି, ସେଠାରେ ଲୋକମାନେ ଆଗଭର ହେଉନାହାନ୍ତି । କିଏ ତାଙ୍କ ପାଇଁ କରିଦେବ, ଏହି ଭାବ । ବାସ୍ତବିକ ସାରାଦେଶରେ ନେତୃତ୍ୱ ସଙ୍କଟ ଦେଖାଦେଇଛି । ଲୋକମାନଙ୍କୁ ଦିଗ୍‌ଦର୍ଶନ ଦେବା ପାଇଁ ସମାଜକର୍ମୀ ନ ବାହାରିଲେ, ସମାଜର ଭବିଷ୍ୟତ ଅନ୍ଧାକାର ।

ଲୋକମାନଙ୍କ ମଧ୍ୟରେ ସଂହତି ଓ ଏକତା ନଥିବାରୁ ସମୂହ ସମସ୍ୟାର ସମାଧାନ କରିପାରୁ ନାହାନ୍ତି । ରାଜନୀତିକ ଦଳମାନେ ଗ୍ରାମବାସୀଙ୍କୁ ଭାଗ ଭାଗ

କରି ରଖିଛନ୍ତି । ଗାଁରେ ସଂହତି ରହିଲେ, ଗ୍ରାମବାସୀ କାହାକୁ ଭୋଟ ଦେବେ ସେ ନିଷ୍ପତ୍ତି ନେବା ପାଇଁ ତାଙ୍କର ସ୍ୱାଧନତା ରହିବ । ଗାଁ ରାଜନୀତିକ ଦିଗରୁ ବିଭକ୍ତ ରହିଲେ, ଗାଁର ଗୋଷ୍ଠୀଗୁଡ଼ିକ ରାଜନୀତିକ ଦଳର ହାତମୁଠରେ ରହିବେ । ତାଙ୍କର କ୍ରୀଡାନକ ହେବ । ଗାଁରେ ବିଭେଦ ଓ ସଂଘର୍ଷ ଲାଗି ରହିଲେ ପୁଲିସ ଓ କୋର୍ଟକୁ ଧାଇଁ ଧାଇଁ ଅର୍ଥ, ଶକ୍ତି ଓ ସମୟ ନଷ୍ଟ କରି ଗ୍ରାମବାସୀ ନୟାନ୍ତ ହେବେ, ତଳିତଳାନ୍ତ ହେବେ ଏବଂ ଦୁର୍ବଳ ହେବେ । ଆମ ଦେଶର ରାଜନୀତିକ ବ୍ୟବସ୍ଥା ଲୋକମାନଙ୍କୁ ସରଳ କରିବାକୁ ଚାହେଁନାହିଁ । ଲୋକମାନଙ୍କୁ ପଙ୍ଗୁ କରିଦେବାକୁ ଚାହେଁ । ତା'ହେଲେ ସରକାରଙ୍କର ଆସୁରିକ ଶକ୍ତିର ପ୍ରତିରୋଧ ଜନସାଧାରଣ କରିପାରିବେ ନାହିଁ । ଗାନ୍ଧିଜୀ କେନ୍ଦ୍ର ଓ ରାଜ୍ୟ ସରକାର ହାତରେ ସର୍ବନିମ୍ନ କ୍ଷମତା ଦେବାକୁ ଚାହୁଁଥିଲେ । ଗ୍ରମବାସୀ ଓ ନଗରବାସୀଙ୍କୁ ସମ୍ବଳ ଓ କ୍ଷମତା ଦେବା ସପକ୍ଷରେ ଥିଲେ । ଲୋକଙ୍କ ପରିଚାଳନା ଓ ବିକାଶ ଲୋକଙ୍କର ଦାୟିତ୍ୱ ହେଉ । ଗ୍ରାମ ସ୍ୱରାଜ୍ୟର କଥା କହୁଥିଲେ । "ହମାରା ଗାଓଁ ମେଁ ହମାରା ରାଜ" କଥା ବର୍ତ୍ତମାନ ଦେଶରେ ଉଠିଛି ।

ପଦଯାତ୍ରୀମାନେ ଗ୍ରାମ ମାନଙ୍କରେ ସହରାଭିମୁଖୀ ଦୃଷ୍ଟିକୋଣ ଲକ୍ଷ୍ୟ କରିଥିଲେ । ପୃଥିବୀର ୫୦ ପ୍ରତିଶତ ଲୋକ ସହରରେ ରହିଲେଣି । ୧୯୯୧ ଜନଗଣନାରେ ଭାରତର ପ୍ରାୟ ୭୫ ପ୍ରତିଶତ ଲୋକ ଗ୍ରାମରେ ରହୁଥିଲେ । ୨୦୦୧ ଜନଗଣନାରେ ପ୍ରାୟ ୭୧ ପ୍ରତିଶତ ଲୋକ ଗାଁରେ ରହିବେ । ଗ୍ରାମୀଣ ଜୀବନ ଓ ଚଳଣିର ବିଲୁପ୍ତ ଘଟିବାରେ ଲାଗିଛି । ଯଦିଓ ଗ୍ରାମ ଗୁଡ଼ିକରେ ବସ୍ତୁଗତ ସୁବିଧା ଯଥା : ଗମନାଗମନ, ପରିବହନ, ଟେଲିଫୋନ, ବିଜୁଳି, ଡାକ୍ତରଖାନା, ସ୍କୁଲ, ଦୋକାନ, ବଜାର, ପରିବାପତ୍ର ମିଳିବା ବଢ଼ିବାରେ ଲାଗିଛି; ସାମାଜିକ, ସାଂସ୍କୃତିକ, ମାନବିକ, ନୈତିକ, ଆଧ୍ୟତ୍ମିକ ଦିଗରୁ ଗାଁ ଗୁଡ଼ିକର ମହକ କମିବାରେ ଲାଗିଛି । ରାମାୟଣ, ମହାଭାରତ, ଭାଗବତର ଆଦର କମିବାରେ ଲାଗିଛି । ଟେଲିଭିଜନ ଓ ଭିଡିଓର ଅପସଂସ୍କୃତି ବଢ଼ିବାରେ ଲାଗିଛି ଅଶ୍ଳୀଳତା ଓ ହିଂସା, ଭୋଗବାଦର ଜୀବନଚର୍ଯ୍ୟା ଲୋକଙ୍କୁ ଆକର୍ଷିତ କରିବାରେ ଲାଗିଛି ।

ଅନ୍ୟଦେଶର ସହର ଓ ଆମ ଦେଶର ସହର ମଧ୍ୟରେ ବିଶେଷ ପ୍ରଭେଦ ନାହିଁ । ସବୁ ନଗର ଭୋଗବାଦ, ସ୍ୱାର୍ଥପରତା ଓ ସ୍ନେହକାଙ୍ଗାଳର ସଭ୍ୟତା ବହନ କରେ । ଭାରତ ବା ଯେ କୌଣସି ଦେଶର ସ୍ୱାତନ୍ତ୍ର୍ୟ ଗାଁରେ ରହିଛି । ଗ୍ରାମରେ ବରଣୀୟ ଆବେଗ ରହିଛି । ଗ୍ରାମ ନିଶ୍ଚିହ୍ନ ହେଲେ, ଦେଶର ସ୍ୱାତନ୍ତ୍ର୍ୟ, ସ୍ୱକୀୟତା ଓ ଆତ୍ମାର ସମାଧି ଘଟିବ । ପଦଯାତ୍ରା ବେଳେ ପ୍ରାର୍ଥୀମାନେ ସହାୟକ ଶିକ୍ଷକ (ମାସିକ ଦରମା ୧୫୦୦ ଟଙ୍କା) ପଦ ପାଇଁ ୮୦,୦୦୦ଟଙ୍କା ଉତ୍କୋଚ ଦେଉଥିବାର

ଶୁଣିଲୁ । ଲୁଚାଚୋରା ନାହିଁ । ବଜାରରେ ଡ଼ାକ ଦେଇ ଚାକିରି ବିକ୍ରି ହେଉଛି । ଦୁର୍ନୀତି ସମାଜକୁ ଗ୍ରାସ କରିଦେବାକୁ ବସଛି । ତା ସାଙ୍ଗକୁ ଅଛି ବେକାରୀ, ଦାରିଦ୍ର୍ୟ, ରୋଗ, ଅଶିକ୍ଷା, ପରିବେଶର ଅବକ୍ଷୟ, ଜନସଂଖ୍ୟା ବିସ୍ଫୋରଣ ଆଦି ସମସ୍ୟା । ସାମାଜିକ ପରିବର୍ତ୍ତନ ପାଇଁ ସମାଜକର୍ମୀ ଦରକାର । ତଥାକଥିତ ବୁଦ୍ଧିବାଦୀମାନଙ୍କର ଏଥିରେ ଆଗ୍ରହ ନାହିଁ । ସେମାନଙ୍କର ଅଜ୍ଞତା, ସ୍ଥାଣୁତା ଅସାମାଜିକତା ବିବେକୀ ଲୋକଙ୍କୁ ଘୋର ଦୁଃଖ ଦିଏ । ଲୋଭ , କପଟତା, ସନ୍ଦେହ, ଅହଙ୍କାର ଆଦିର ବିଷଚକ୍ର ମଧ୍ୟରେ ପୃଥିବୀ ଅଣନିଃଶ୍ୱାସୀ ହୋଇପଡୁଛି । ତାମସିକ ଆବେଗଗୁଡ଼ିକ ପାଳି ପୋଷି ହୃଷ୍ଟପୁଷ୍ଟ କରି ଚାଲିଛନ୍ତି ଶିକ୍ଷିତ, ପଦସ୍ଥ, ସ୍ୱଚ୍ଛଳବର୍ଗକୁ । ସବୁଠୁ ଅଧିକ ପାଠୁଆ; ସବୁଠୁଁ ଅଧିକ ଭୋଗବିଳାସ ସର୍ବସ୍ୱ ଓ ହିଂସ୍ର । ଅଧିକ ସ୍ୱଚ୍ଛଳ ମଣିଷ ଅଧିକ ଶୋଷଣ କରୁଛି ନ ପାରିଲା ବୁଭୁକ୍ଷୁମାନଙ୍କୁ । ବିଶ୍ୱବ୍ୟାପୀ ଚହଟୁଛି ପବନରେ ଆସୁରିକ ଉନ୍ମତ୍ତତା । ଆକାଶରୁ ଉଛୁଳି ପଡୁଛି ଶିଳ୍ପ ଓ ନଗର ସଭ୍ୟତାର ବିଷ । ଚେତନା ନିର୍ବାସିତ ହେବାରେ ଲାଗିଛି । ବିରଳ ହୋଇଚାଲିଛନ୍ତି ସଙ୍କଳ୍ପ, ତ୍ୟାଗ, ସାଧନା, ତପସ୍ୟା ଓ ମୂଲ୍ୟବୋଧର ମଣିଷମାନେ ।

ଗ୍ରାମମାନଙ୍କରେ ସ୍ୱେଚ୍ଛାକୃତ ସମୂହ ପରିଶ୍ରମ ଦ୍ୱାରା ବିକାଶର ପଥ ଉନ୍ମୁକ୍ତ କରିବାକୁ ଆଗ୍ରହ ଖୁବ୍ କମ୍ ଲୋକଙ୍କ ମଧ୍ୟରେ ଦେଖାଯାଇଥିଲା । ସଭାକୁ ଆସି ସମୂହ ସମସ୍ୟାର ଆଲୋଚନା ପାଇଁ ଲୋକମାନଙ୍କ ଅନାଗ୍ରହ ଦେଖି ଆସୁଥିଲା ବେଦନା ଓ ଅନ୍ତର୍ଦାହ । ଏହାଭିତରୁ ଆମ ନିର୍ମାଣର ଇଚ୍ଛାଶକ୍ତି । ତ୍ୟାଗ ଓ ନୈତିକ ସାହସର ଅଙ୍ଗୀକାରବଦ୍ଧତା । ସେହି ପୁଞ୍ଜିଦ୍ୱାରା ଆଜିର ଅଗ୍ନିପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ହେବ ।

ସମାଜ ୨୭.୦୨.୨୦୦୦

# ବୁଦ୍ଧଗ୍ରାମ ପରିବେଶ ଆନ୍ଦୋଳନ

ନାରାୟଣ ହଜାରୀ

(ଧ୍ୱସ୍ତ ପାହାଡ଼, ବନସ୍ତ, କ୍ଷେତବାଡ଼ି ଓ ଜନଜୀବନ । ପୁଣି ମଣିଷ ଚାହିଁଲେ ବିପନ୍ନ ପରିବେଶ, ଉଜୁଡ଼ା ଫସଲ ପରିପୂର୍ଣ୍ଣ ହୋଇ ଉଠେ । ପୃଥିବୀରେ କେଉଁ କ୍ଷତ ଅବା ଭରି ହେବ ନାହିଁ । ମାତ୍ର ଏଥିପାଇଁ ଆବଶ୍ୟକ ଏକ ସଚେତନ ପ୍ରୟାସ । ଏଭଳି ଏକ ଅନୁପମ ପ୍ରୟାସ ସଂଘଟିତ ହୁଏ ଆମର ଅଦୂର ନୟାଗଡ଼ ଅଞ୍ଚଳରେ । ଆଜି ସମଗ୍ର ଅଞ୍ଚଳ - 'ବୁଦ୍ଧଗ୍ରାମ' ବିଶ୍ୱ ମାନଚିତ୍ରରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରେ; ଜାତିସଂଘର ପୁରସ୍କାର ଓ ସ୍ୱୀକୃତି ପାଏ । ଉଜୁଡ଼ା ମୂଲକକୁ ପୁଣି ସଜାଡ଼ିବାରେ ଅଗ୍ରଣୀ ଭୂମିକା ନେଇଥିବା ଅନ୍ୟତମ ଚିନ୍ତାଶୀଳ ବ୍ୟକ୍ତି, ଉତ୍କଳ ବିଶ୍ୱବିଦ୍ୟାଳୟର ରାଜନୀତିବିଜ୍ଞାନ ପ୍ରଫେସର ଓ ପରିବେଶବିତ୍ ଡଃ ନାରାୟଣ ହଜାରୀଙ୍କ ଏକ ମାର୍ମିକ ପ୍ରତିବେଦନ : ଏହା 'କ୍ଲାନ୍ତ ବସୁନ୍ଧରା'ର ଅନ୍ୟତମ ପରିପୂରକ ।)

ବୁଦ୍ଧଗ୍ରାମ (କେଶରପୁର) ନୟାଗଡ଼ ଜିଲ୍ଲାର ପ୍ରାୟ ୧୦୦୦ ଲୋକ ସଂଖ୍ୟା ବିଶିଷ୍ଟ ଏକ କ୍ଷୁଦ୍ର ଗ୍ରାମ । ଏହା ଭୁବନେଶ୍ୱର ଠାରୁ ୧୦୦ କି.ମି. ଓ ନୟାଗଡ଼ ସହରଠାରୁ ୧୨ କି.ମି. ଦୂରରେ ଅବସ୍ଥିତ । ଏହି ଗ୍ରାମରୁ ୧୯୪୫ ମସିହାରୁ ଗ୍ରାମ ସଂଗଠନ ଆନ୍ଦୋଳନ ଆରମ୍ଭ ହୋଇ, ଶିକ୍ଷା ଜରିଆରେ, ପରିବେଶ ଆନ୍ଦୋଳନ ୧୯୭୨ ମସିହାରୁ ଆରମ୍ଭ ହେଲା ।

ଏହି ପରିବେଶ ଆନ୍ଦୋଳନ ନୟାଗଡ଼ ଜିଲ୍ଲାର ୮ଟି ଯାକ ବ୍ଲକର ପ୍ରାୟ ୧୫୦୦ ଗ୍ରାମରେ ପ୍ରସାରିତ । ଏହି ଗ୍ରାମରେ 'ବୃକ୍ଷ ଓ ଜୀବର ବନ୍ଧୁ' ନାମକ ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ୧୯୮୨ରୁ ରହିଛି । ଗାଁଟି ବୁଦ୍ଧଗିରି ପର୍ବତର ପାଦ ଦେଶରେ । ବୁଦ୍ଧଗିରି ଓ ମାଳତୀ ପାହାଡ଼ ଚାରିପଟେ ଥିବା ୨୨ଟି ଗ୍ରାମକୁ ନେଇ 'ବୃକ୍ଷ ଓ ଜୀବର ବନ୍ଧୁ' ନାମକ ଅହିଂସା ଓ ପ୍ରେମ ଉପରେ ପ୍ରତିଷ୍ଠିତ ଏହି ସ୍ୱେଚ୍ଛାସେବୀ ଅନୁଷ୍ଠାନ - ପରିବେଶ ସୁରକ୍ଷାରେ ଆନ୍ତରିକତା ଓ ଜନଚେତନା ସୃଷ୍ଟି ଯୋଗୁ, ୧୯୮୬ ମସିହାରେ, ଓଡ଼ିଶା ସରକାରଙ୍କ ପକ୍ଷରୁ 'ପ୍ରକୃତି ମିତ୍ର', ଭାରତ ସରକାରଙ୍କ 'ବୃକ୍ଷମିତ୍ର';

୧୯୮୯ରେ ଜାତିସଂଘ 'ପୃଥିବୀ ୫୦୦ ପରିବେଶ ପୁରସ୍କାର' ଲାଭ କରିଛି । ଏ ସମସ୍ତ ପୁରସ୍କାର ପାଇବାରେ ଏ ଅନୁଷ୍ଠାନ ଓଡ଼ିଶାରେ ପ୍ରଥମ ।

ବୁଦ୍ଧଗ୍ରାମ ପରିବେଶ ଆନ୍ଦୋଳନ, କେବଳ ପରିବେଶ ସଂରକ୍ଷଣ ଓ ପର୍ଯ୍ୟାବରଣର ଉନ୍ନତି ପାଇଁ ନୁହେଁ; ସମାଜର ଅର୍ଥନୀତିକ, ସାମାଜିକ, ରାଜନୀତିକ, ସଂସ୍କୃତିକ, ମାନବିକ, ନୈତିକ ଓ ସର୍ବୋପରି ଆଧ୍ୟାତ୍ମିକ ବିକାଶ ସାଧନ ଏହାର ଲକ୍ଷ୍ୟ । ଜଙ୍ଗଲ ସୁରକ୍ଷା, ବୃକ୍ଷରୋପଣ, କୃଷି ଓ ଜଳସେଚନର ନିରବଚ୍ଛିନ୍ନ ବିକାଶ, ଜୈବିକ ସାର, ପରିବାର ନିୟନ୍ତ୍ରଣ, ଶିକ୍ଷା, ସ୍ୱାସ୍ଥ୍ୟସେବା, ନିଶାନିବାରଣ, ଅସ୍ପୃଶ୍ୟତା ଦୂରୀକରଣ, ଯୌତୁକ ପ୍ରଥାର ନିରାକରଣ, ମହିଳା ବିକାଶ, କୁଟୀର ଶିଳ୍ପର ପୁନରୁଦ୍ଧାର, ଆୟର ପନ୍ଥା ନିର୍ଦ୍ଧାରଣ, ଥାନା ଓ କୋର୍ଟକୁ ନଯାଇ ଗ୍ରାମର ଉନ୍ନତିରେ ନିଜକୁ ସାମିଲ୍ କରିବା ପାଇଁ କର୍ମଚାରୀମାନଙ୍କୁ ପ୍ରବର୍ତ୍ତାଇବା, ସରକାରୀ ସାହାର୍ଯ୍ୟ ଉପରେ ବିଶେଷ ନିର୍ଭର ନକରି ଗ୍ରାମବାସୀମାନେ ସ୍ୱକୀୟ ଉଦ୍ୟମରେ ଗ୍ରାମର ପ୍ରଗତି ପାଇଁ ପଦକ୍ଷେପ ନେବାକୁ ଏବଂ ସର୍ବୋପରି ଗ୍ରାମ ପୁନର୍ଗଠନ ଆଦି - ଏହି ଆନ୍ଦୋଳନର ବହୁମୁଖୀ ଲକ୍ଷ୍ୟ ।

ବହୁଦିନ ତଳରୁ ବୁଦ୍ଧଗ୍ରାମରେ କନ୍ଦଳ ଲାଗିଥାଏ । ସମୂହ ସ୍ୱାର୍ଥପ୍ରତି କାହାର ଦରଦ ନଥାଏ । ଅଜ୍ଞତା, ଭୟ, ସନ୍ଦେହ, ଅବିଶ୍ୱାସ, ଦ୍ୱେଷ, ଘୃଣା, କ୍ରୋଧ ଓ ପ୍ରତିଶୋଧ ପରାୟଣର ଶିକାର ହୋଇଥାନ୍ତି ଗ୍ରାମବାସୀ । ଗ୍ରାମ ଦୁଇଭାଗରେ ବିଭକ୍ତ ହୋଇଥାଏ । ଦୁଇ ଦଳ ଥାନା ଓ କୋର୍ଟକୁ ଧାଉଁ ଥାନ୍ତି । ଉଭୟ ଦଳର ସମ୍ବଳ, ଶକ୍ତି ଓ ସମୟ ଅପରପକ୍ଷକୁ ଧ୍ୱଂସ କରିବାରେ ନିୟୋଜିତ । ଗ୍ରମାବାସୀଙ୍କର କଷ୍ଟୋପାର୍ଜିତ ଧନ ସହରକୁ ବୁହା ଚଲିଥାଏ ।

୧୯୫୪ ମସିହାରେ ଗ୍ରାମର କେତେକ ସଚେତନ, ନିଃସ୍ୱାର୍ଥପର ଯୁବକ ଗ୍ରାମର ଅଧୋଗତିକୁ ରୋକିବାକୁ ବଦ୍ଧପରିକର ହେଲେ ଓ ଗ୍ରାମର ଉନ୍ନିତି ପାଇଁ କାର୍ଯ୍ୟ କରିବାକୁ ଲୋକମାନଙ୍କୁ ପ୍ରବର୍ତ୍ତାଇଲେ । ଗାଁରେ ସ୍କୁଲ ନଥାଏ । ଗ୍ରାମବାସୀଙ୍କର ସ୍ୱେଚ୍ଛାକୃତ ସହଯୋଗରେ, ୧୯୫୮ ମସିହାରେ ପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠିତ ହେଲା । ୧୯୬୬ରେ ମାଧ୍ୟମିକ ଓ ୧୯୭୦ରେ ଉଚ୍ଚବିଦ୍ୟାଳୟ । ଏହି ଗ୍ରାମର କେତେକ ବିଶ୍ୱବିଦ୍ୟାଳୟ ଓ କଲେଜରେ ଥିବା ଅଧ୍ୟାପକ, ବିଦ୍ୟାଳୟର ଶିକ୍ଷକ, ଅଧ୍ୟାପକ, ବିଦ୍ୟାଳୟର ଶିକ୍ଷକ, ଗ୍ରାମର କୃଷକ, ବୁଦ୍ଧଗ୍ରାମ ଓ ତାର ପଡ଼ୋଶୀ ଗ୍ରାମମାନଙ୍କରେ ଜନ ସଚେତନତା ସୃଷ୍ଟି କରିବାରେ ବ୍ରତୀ ହେଲେ । ଏହି ଜନଜାଗରଣ ଫଳରେ ସୃଷ୍ଟିହୁଏ ରାଜନୀତିକ ସକ୍ରିୟତା, ସଂଗଠନ ଓ ସଙ୍କଳ୍ପ। ସେଥିରୁ ଉଦ୍ଭବ ହୁଏ ଆର୍ଥିକ ବିକାଶ ଓ ସାଂସ୍କୃତିକ ଅଭ୍ୟୁଥାନ । ଭାରତରେ ପ୍ରାୟ ୬ ଲକ୍ଷ ଗ୍ରାମ ରହିଛି ।

ପ୍ରାୟ ପ୍ରତ୍ୟେକ ଗ୍ରାମରେ ସ୍କୁଲ ରହିଛି । ଶିକ୍ଷକମାନେ ଚାହିଁଲେ ସାମାଜିକ ସଂସ୍କାର ଓ ଆର୍ଥିକ ପ୍ରଗତିର ବାର୍ତ୍ତାବହ ହୋଇପାରନ୍ତେ । ଦେଶ ଓ ଦଶର ନିର୍ମାଣରେ ପ୍ରଭୁତ ଭୂମିକା ଗ୍ରହଣ କରିପାରନ୍ତେ । ଚୀନରେ ଏକ ପ୍ରବାଦ ଅଛି - ଯଦି ବର୍ଷକ ପାଇଁ ଯୋଜନା କରିବାକୁ ଚାହଁ, ତେବେ କୂଅ ଖୋଳ, ଯାହା ଦ୍ୱାରା ଶସ୍ୟକ୍ଷେତ୍ରରେ ଜଳସେଚନ ହୋଇପାରିବ; ଏବଂ ଯଦି ଶହେ ବର୍ଷପାଇଁ ଯୋଜନା କରିବାକୁ ଚାହଁ, ତେବେ ବିଦ୍ୟାଳୟଟିଏ କର। ଏହା ପ୍ରାଚୀନ ଉକ୍ତି ସୂଚିତ କରେ ଯେ, ବିକାଶର ଚାବିକାଠି ଗଣଶିକ୍ଷା ହାତରେ ରହିଛି । ବୁଦ୍ଧଗ୍ରାମରେ ସ୍କୁଲ ହେବାଯୋଗୁ, ଶିକ୍ଷକମାନେ ନିଯୁକ୍ତହେଲେ ଓ ସେମାନେହିଁ ଏକ ବିସ୍ତୃତ ଅଞ୍ଚଳରେ ତ୍ୟାଗ, ସେବା ଓ ସାଧାରଣ ଆଦର୍ଶ ପ୍ରସାରିତ କଲେ । ବୁଦ୍ଧଗ୍ରାମ ପରିବେଶ ଆନ୍ଦୋଳନର ଏହା ଏକ ମୁଖ୍ୟ ବାର୍ତ୍ତା ।

ଜନସଂଖ୍ୟାର ନିୟନ୍ତ୍ରଣ ବିନା ପରିବେଶର ସଂରକ୍ଷଣ ଓ ବିକାଶ ଅସମ୍ଭବ । ସମାଜସେବୀମାନଙ୍କର ନିଷ୍ଠାପର ଉଦ୍ୟମ ଓ ସରକାରଙ୍କର ବିଭିନ୍ନ ପ୍ରୋତ୍ସାହନମୂଳକ ପଦକ୍ଷେପ ଦ୍ୱାରା ଏହି ଅଞ୍ଚଳର ବହୁଲୋକ ପରିବାର ନିୟନ୍ତ୍ରଣ କରିଛନ୍ତି । ରାବରା ଗ୍ରାମର ଦୁଇ ଜଣ ମୁଲିଆ ଶ୍ରେଣୀର ଯୁବକ ଗୋଟିଏ ପୁଅ ହେବା ପରେ, ଜନ୍ମନିୟନ୍ତ୍ରଣ କରିଛନ୍ତି ।

କୃଷିର ବିକାଶ ପାଇଁ ଜଳସେଚନର ଆବଶ୍ୟକତା ସର୍ବବିଦିତ । ବୁଦ୍ଧଗ୍ରାମ ପରିବେଶ ଆନ୍ଦୋଳନର ସ୍ୱେଚ୍ଛାସେବୀମାନେ ଗାଁ ଗାଁରେ, ପୋଖରୀ ଓ ନଦୀର ପାଣିଦ୍ୱାରା ଜଳସେଚନର ଉତ୍କର୍ଷତା ଓ ବୃହତ୍ ଜଳବିଦ୍ୟୁତ୍ ପ୍ରକଳ୍ପର ଅପକାରିତା ସଂପର୍କରେ ଜନଚେତନା ସୃଷ୍ଟି କରୁଛନ୍ତି । ଏହା ଦ୍ୱାରା ଜମିବାଡ଼ି ତୋଟାପ୍ରାନ୍ତର, ପାହାଡ଼, ପର୍ବତ ଜଳାର୍ଣ୍ଣବ ହୁଏ, ଲକ୍ଷ ଲକ୍ଷ ଲୋକ ବାସଚ୍ୟୁତ ବୁଭୁକ୍ଷୁ ସାଜନ୍ତି, କେନାଲ୍ ପାଣି ବର୍ଷ ବର୍ଷ ମାଡ଼ିବା ଦ୍ୱାରା ଜମି ସର୍ବଦା ଆଦ୍ର ଓ ଲବଣାକ୍ତ ହୁଏ - ତଦ୍ୱାରା ଜମିର ଉତ୍ପାଦିକା ଶକ୍ତି ହ୍ରାସପାଏ ।

ଜଳସେଚନ ପାଇଁ ଯେଉଁ ଜଳ ନିୟୋଜିତ ହୁଏ, ତାହା ତିନିସ୍ତରରେ ରହିଥାଏ । ମାଟି ଉପରେ ଥିବା ଜଳ (ସର୍‌ଫେସ୍ ୱାଟର) ପୁଷ୍କରିଣୀ ଓ ନଦୀମାନଙ୍କରେ ଥାଏ । ମାଟିତଳେ ଥିବା ଜଳ (ସବ୍ ସଏଲ୍ ୱାଟର୍) ମାଟିର ୨୦/୩୦ ଫୁଟ ତଳେ ଥାଏ । ଭୂତଳ ଜଳ (ଅଣ୍ଡର ଗ୍ରାଉଣ୍ଡ ୱାଟର) ମାଟିର ୧୦୦/୩୦୦ ଫୁଟ ତଳେ ଥାଏ । ବୈଜ୍ଞାନିକମାନଙ୍କ ମତରେ, ଭୂମି ତଳୁ ଯେଉଁ ପରିମାଣରେ ଜଳ ବାହାର କରାଯାଏ, ସେତିକି ଜଳ ଆଉ କେବେ ଭରଣା ହୁଏ ନାହିଁ । ଏଥିଯୋଗୁଁ ମାଟି ତଳେ ଥିବା ପାଣି ଓ ମାଟି ଉପରେ ଥିବା ପାଣିର ପରିମାଣ କମିଯାଏ । କୂପ,

ପୁଷ୍କରିଣୀ ଓ ନଦୀର ଜଳ ଶୁଖିଯାଏ । ପଞ୍ଜାବ ଓ ହରିଆଣାରେ ଭୂମିତଳେ ଥିବା ପାଣିର ପର୍ଯ୍ୟାପ୍ତ ବିନିଯୋଗ ଯୋଗୁ ଏ ଦୁଇଟି ରାଜ୍ୟ ଏକ ଶତାବ୍ଦୀ ମଧ୍ୟରେ ମରୁଭୂମିରେ ପରିଣତ ହେବ ବୋଲି ଜଣେ ଆମେରିକୀୟ ବୈଜ୍ଞାନିକ ୨୦ ବର୍ଷ ତଳେ ସତର୍କବାଣୀ ଶୁଣାଇଛନ୍ତି । ଭୂମିତଳ ପାଣିକୁ ଜଳସେଚନ ପାଇଁ ଉପଯୋଗ କରିବା କ୍ଷତିକାରକ( କାଉଣ୍ଟର ପ୍ରଡ୍‌କଟିଭ୍) । ପ୍ରକୃତି ଓ ପରିବେଶ ମଧ୍ୟରେ ସମନ୍ୱୟ ରକ୍ଷାକରି ନିରବଛିନ୍ନ ବିକାଶ କରିବା ହେଉଛି ଏହି ଆନ୍ଦୋଳନର ଆଭିମୁଖ୍ୟ । ଜଙ୍ଗଲ ରକ୍ଷାକରିବା ଓ ବୃକ୍ଷରୋପଣ ଦ୍ୱାରା ଭୂମିତଳ ଜଳପତନକୁ ଉର୍ଦ୍ଧ୍ୱଗାମୀ କରାଯାଇ ପାରିବ । ପୁଷ୍କରିଣୀ, ନିର୍ଝରିଣୀ ଓ ନଦୀମାନଙ୍କରେ ପାଣି ରହିପାରିବ । ଭୂମିତଳ ଜଳର ଉପଯୋଗର ଆବଶ୍ୟକତା ପଡ଼ିବା ନାହିଁ । ମାଟି ଉପର ଜଳ ଓ ମାଟିତଳ ଜଳ ଦ୍ୱାରା ଆବଶ୍ୟକତା ମେଣ୍ଟାଯାଇ ପାରିବ ।

ବୃକ୍ଷଲତା ଦେଉଥିବା ମାଟିରୁ ଆମକୁ ଅମ୍ଳଜାନ, ଖାଦ୍ୟ, ବସ୍ତ୍ର, ବାସଗୃହ, ଜାଳ, ଗୋଖାଦ୍ୟ, ଔଷଧ ମିଳେ । ବୃକ୍ଷ ଛାୟା ପ୍ରଦାନ କରେ ଓ ବାୟୁମଣ୍ଡଳର ଉତ୍ତାପ କମାଏ । ବୁଦ୍ଧଗିରି ଓ ମାଳତୀଗିରିର ସଂରକ୍ଷଣ ଓ ସେଥିରେ ବୃକ୍ଷରୋପଣ ଦ୍ୱାରା, ପାଦଦେଶରେ ଥିବା ଗ୍ରାମବାସୀ ନାଟକୀୟଭାବେ ଉପକୃତ ହୋଇଛନ୍ତି । ମୃତ୍ତିକାକ୍ଷୟ ବନ୍ଦ ହୋଇଛି । ପର୍ବତର ବକ୍ଷ ଦେଶରେ ସୃଷ୍ଟି ହୋଇଥିବା ବିରାଟ ଗର୍ତ୍ତମାନ, ଗୁଳ୍ମଦ୍ୱାରା ଆଚ୍ଛାଦିତ ହେବା ସଙ୍ଗେ ସଙ୍ଗେ ଲୁପ୍ତ ଝରଣାର ଆବିର୍ଭାବ, ହୋଇ ଫସଲ ଜଳସେଚିତ ଓ ପୁଷ୍କରିଣୀମାନଙ୍କରେ ମାଛ ଚାଷ ହେଉଛି । ଗୋମହିଷାଦି ଗୃହପାଳିତ ପଶୁମାନେ ଘାସ, ଡ଼ାଳପତ୍ର ଖାଇବାପାଇଁ ପାଉଛନ୍ତି । ପାହାଡ଼ରେ ଥିବା ପୋକଶୁଙ୍ଘା, ଭୂତିଆରୀ ଆଦି ଅନାବଶ୍ୟକ ଗୁଳ୍ମକୁ ଲୋକମାନେ ବ୍ୟବହାର କରୁଛନ୍ତି । ଛତୁ, କାଙ୍କଡ଼, ଅଡ଼ଙ୍ଗାଶାଗ ଆଦି ଫଳମୂଳ ଲୋକମାନେ ବ୍ୟବହାର କରୁଛନ୍ତି । ଏହି ଅଞ୍ଚଳର ଗରିବ ହରିଜନ ମହିଳାମାନେ ପାହାଡ଼ରୁ ଖିରିକୋଳି, କଣ୍ଢେଇ, ଭଇଁଚ, ଗୁଆକୋଳି ଆଦି ସଂଗ୍ରହକରି ଗ୍ରାମମାନଙ୍କରେ ବିକି ଜୀବିକା ନିର୍ବାହ କରୁଛନ୍ତି । ଏହିପରି ସମାଜର ଦରିଦ୍ରତମ ବ୍ୟକ୍ତି ଜଙ୍ଗଲ ଦ୍ୱାରା ଉପକୃତ । ଖେଳଛୁଟି ସମୟରେ ସ୍କୁଲପିଲାମାନେ ଜଙ୍ଗଲକୁ ଯାଇ ଫଳ, ମୂଳ, କୋଳି ଖାଇ ଯେପରି ଆନନ୍ଦ କୋଳାହଳ କରନ୍ତି, ତାହା ନ ଦେଖିଲେ କେହି ବିଶ୍ୱାସ କରିପାରିବେ ନାହିଁ ।

ବୁଦ୍ଧଗ୍ରାମର ପଦଯାତ୍ରୀମାନେ ବୃକ୍ଷ ରୋପଣର ସଂଗୀତ ଗାନ କରି ଗ୍ରାମେ ଗ୍ରାମେ ଆଗେଇ ଚାଲନ୍ତି । ସ୍ୱାଧୀନତା ପରେ ଲୋକ ସଂଖ୍ୟା ବୃଦ୍ଧି ପାଇଲା । ସରକାରଙ୍କ ଆଇନ ପ୍ରତି କମ ଭୟ, କଳକାରଖାନାର ପ୍ରସାର, ଦ୍ରୁତ ନଗରୀକରଣ, ରାସ୍ତାଘାଟର ସଂପ୍ରସାରଣ ଏବଂ ଜଙ୍ଗଲକୁ ଆୟର ଏକ ପନ୍ଥା ବୋଲି ଗ୍ରହଣ କରି

ନେବାରେ, ପ୍ରକୃତି ଭାରସାମ୍ୟ ରକ୍ଷାକରି ବିକାଶ କରିବାର ମୂଲ୍ୟ କେହି ବୁଝିଲେ ନାହିଁ । ଜଙ୍ଗଲରୁ ଗଛପତ୍ର ଓ ପଥର କଟାହୋଇ ଯିବା ସଙ୍ଗେ ସଙ୍ଗେ ପଶୁପକ୍ଷୀ ଆଦି ବିଲୁପ୍ତ ହେଲେ ଓ ମୃତ୍ତିକାକ୍ଷୟ ଘଟିଲା । ବୁଦ୍ଧଗିରି ଓ ମାଳତୀ ଲଣ୍ଡାହେଲା । ୧୯୭୨ ମସିହାରୁ ନିରବଚ୍ଛିନ୍ନ ଉଦ୍ୟମ ଫଳରେ, ୧୯୭୮ ମସିହାରେ ବୁଦ୍ଧ ଗ୍ରାମରେ ଲୋକେ ଠେଙ୍ଗାପାଳି କଲେ । ଦୁଇଜଣ ଠେଙ୍ଗା ହାତରେ ଧରି ଜଙ୍ଗଲ ସାରା ବୁଲି, ଜଙ୍ଗଲର ସୁରକ୍ଷାକରି ସନ୍ଧ୍ୟାରେ ଗ୍ରାମକୁ ଫେରନ୍ତି । ଛେଳିମାନେ ବୃକ୍ଷଲତାର ପରମ ଶତ୍ରୁ । ଗଛର ଯାହା ନୂଆ ଗଜା ବାହାରିବ, ତାକୁ ସେମାନେ ଖାଇଯିବେ । ଛେଳିମୁହଁ ଯେଉଁଠି ବାଜିବ ତାହା ଉଠିବ ନାହିଁ । ଗ୍ରାମବାସୀ ଏକ ସାହସିକ ଓ ଅଭୂତପୂର୍ବ ପଦକ୍ଷେପ ନେଇ ଛେଳିସବୁ ବିକ୍ରି କରିଦେଲେ । ତା ଫଳରେ ହଜାର ହଜାର ଗଛ ଉଠିଲା ଓ ପର୍ବତ ଅରଣ୍ୟ ପୁଣି ପରିପୂର୍ଣ୍ଣ ହେଲା ।

ଏ ଅଞ୍ଚଳର ଗରିବ ଲୋକମାନେ, ଜାଳେଣି ଅଭାବରୁ ଦିନକୁ ଥରେ ମାତ୍ର ରୋଷେଇ କରନ୍ତି । ସେହି ଭାତ ଦିନକୁ ୩/୪ଥର ଖାନ୍ତି । ଉପରୋକ୍ତ ଘଟଣାରୁ ଜଙ୍ଗଲର ସଂରକ୍ଷଣ ପାଇଁ ଜନସାଧାରଣଙ୍କର ଆନ୍ତରିକତା କଳନା କରାଯାଇପାରେ ।

ବୁଦ୍ଧଗ୍ରାମରେ ଜଙ୍ଗଲ ସୁରକ୍ଷା ପରେ ହଣାଯାଇଥିବା ଗଛମୂଳରୁ ଗଜା ବାହାରିବାରେ ଲାଗିଲା । ପଡ଼ୋଶୀ ଗ୍ରାମବାସୀମାନଙ୍କର ଲୋଲୁପ ଦୃଷ୍ଟି ଏହି ଜଙ୍ଗଲ ଉପରେ ପଡ଼ିଲା । ସ୍ୱେଚ୍ଛାସେବୀମାନେ ଗ୍ରାମେ ଗ୍ରାମେ ପଦଯାତ୍ରାକରି ଜଙ୍ଗଲ ସଂରକ୍ଷଣ ପାଇଁ ଲୋକମାନଙ୍କୁ ବୁଝାଇଲେ । ଯେତେବେଳେ ଗ୍ରାମବାସୀମାନେ ତାଙ୍କ କଥା ଶୁଣିଲେ ନାହିଁ, ସେମାନେ ବାରମ୍ବାର ପଦଯାତ୍ରା କର୍ମଶାଳା କଲେ ଏବଂ ଗ୍ରାମ ଦାଣ୍ଡରେ ଶୋଇ ରହିଲେ ଓ ଅନଶନ କଲେ । ଏହି ନୈତିକ ପ୍ରବର୍ତ୍ତନା ଫଳରେ ଗ୍ରାମବାସୀମାନଙ୍କର ହୃଦୟରେ ପରିବର୍ତ୍ତନ ଆସିଲା । ସେମାନେ ଜଙ୍ଗଲ ସଂରକ୍ଷଣ ପାଇଁ ନିଷ୍ପତ୍ତି ନେଲେ ।

ବୁଦ୍ଧଗ୍ରାମରେ ଛେଳି ବିକ୍ରି କରିଦେଲା ପରେ ଏକ କୌତୂହଳପୂର୍ଣ୍ଣ ଘଟଣା ଘଟିଲା । ଗ୍ରାମରେ କେତେକ ବାବୁଲ ଗଛ ଥିଲା । ବାବୁଲ ଗଛର ଫଳ ଖାଇବାକୁ ଗୋରୁ ଗାଈ ଭଲପାଆନ୍ତି । ବାବୁଲ ଫଳ ଖାଇସାରିଲା ପରେ, ସେମାନେ ଯେଉଁ ମଳତ୍ୟାଗ କରନ୍ତି, ସେହି ମଳର ଉଷ୍ମତା, ବାବୁଲ ମଞ୍ଜିରୁ ଗଜା ସୃଷ୍ଟି କରିବାରେ ଅନୁକୂଳ ହୁଏ । ଏହି ପରି ଭାବରେ ବୁଦ୍ଧଗ୍ରାମର ପାହଡ଼ ତଳ,ପୋଖରୀ ହୁଡ଼ା, ନଦୀକୂଳ ଓ ରାସ୍ତାକଡରେ ଶହ ଶହ ବାବୁଲ ଗଛ ସୃଷ୍ଟିର ଦୃଶ୍ୟ ଅଭୁତ ଓ ଅନୁପମ । ଏହି ସ୍ୱାଭାବିକ ପ୍ରକ୍ରିୟାରେ ହଜାର ହଜାର ଟଙ୍କା ମୂଲ୍ୟର ଗଛ ସୃଷ୍ଟି କରିବାରେ ଗ୍ରାମବାସୀ ସକ୍ଷମ ହୋଇଛନ୍ତି ।

ବୁଦ୍ଧଗ୍ରାମ ପାର୍ଶ୍ୱରେ କୁସୁମୀ ନଦୀ ପ୍ରବାହିତ । ନଦୀକୂଳରେ ଥିବା ଗଛଗୁଡ଼ିକ ନଦୀକୂଳକୁ ସୁରକ୍ଷିତ କରନ୍ତି । ଗଛଗୁଡ଼ିକର ସୁରକ୍ଷା ପାର୍ଶ୍ୱବର୍ତ୍ତୀର ଜମିମାଲିକ କରନ୍ତି । ଯେତେବେଳେ ଗଛଟିଏ ପରିପକ୍ୱ ହୁଏ, ସେତେବେଳେ ଏହି ଗଛ କାଠକୁ ଗ୍ରାମବାସୀ ଓ ଗଛ ଜଗାଳି କୃଷକଙ୍କ ମଧ୍ୟରେ ସମାନଭାବରେ ବାଣ୍ଟିଦିଆଯାଏ । ଗଛର ଫଳ, ଫୁଲ ଓ ପତ୍ର ଗଛ ଜଗାଳି କୃଷକ ପାଇଥାଏ । ଏହି ନିଷ୍ପତ୍ତି ସାରାଦେଶରେ କାର୍ଯ୍ୟକାରୀ ହେଲେ, ଏହାର ସୁଦୂର ପ୍ରସାରୀ ପ୍ରଭାବ ପଡ଼ନ୍ତା । ଜଙ୍ଗଲ ନୀତି କୃଷିର ସହାୟକ ଓ ପରିପୂରକ ହେବା ଉଚିତ । ଜଙ୍ଗଲ ଉପରେ ଜନସାଧାରଣଙ୍କ ମାଲିକାନା, କର୍ତ୍ତୃତ୍ୱ ଓ ପରିଚାଳନାଗତ ଅଧିକାର ରହିବା ଉଚିତ । ରିଜର୍ଭ ଜଙ୍ଗଲ ସରକାରଙ୍କ ନିୟନ୍ତ୍ରଣରେ ରହୁ । ବାକି ଜଙ୍ଗଲକୁ ଲୋକମାନଙ୍କ ନିୟନ୍ତ୍ରଣରେ ଛଡାଯାଉ । ଦଶବର୍ଷ ସରକାର ପରୀକ୍ଷା କରି ପାରନ୍ତି । ଯଦି ସୁଫଳ ହୁଏ, ଜଙ୍ଗଲର ମାଲିକାନା ଓ ନିୟନ୍ତ୍ରଣ ଲୋକଙ୍କ ହାତକୁ ଦିଆଯାଉ । ସୁଇଜରଲ୍ୟାଣ୍ଡରେ ୯୦ ଭାଗ ଜଙ୍ଗଲ ଲୋକମାନଙ୍କ ଦ୍ୱାରା ନିୟନ୍ତ୍ରିତ । ଇସ୍ରାଇଲରେ ଜଙ୍ଗଲ ବିଭାଗ ଆଦୌ ନାହିଁ । ଏହାର ଅର୍ଥ, ସେ ଦେଶର ଜଙ୍ଗଲ ଲୋକମାନଙ୍କ ଦ୍ୱାରା ପରିଚାଳିତ । ପ୍ରାଚୀନ କାଳରୁ ଭାରତର ଜଙ୍ଗଲ ଲୋକମାନଙ୍କ ମାଲିକାନା ଓ ନିୟନ୍ତ୍ରଣରେ ଥିଲା । ୧୯୭୮ ମସିହାରେ ବ୍ରିଟିଶ ସରକାର, ଜଙ୍ଗଲ ଉପରେ ସରକାରଙ୍କର କର୍ତ୍ତୃତ୍ୱ ଘୋଷଣା କଲେ । ତାପରେ ଲୋକମାନେ ଭାବିଲେ ଯେ ଜଙ୍ଗଲ ସେମାନଙ୍କର ହୋଇ ଆଉ ନାହିଁ । ଜଙ୍ଗଲ ଓ ଜନସାଧାରଣଙ୍କ ମଧ୍ୟରେ ବିରୋଧ ଭାବ ଆସିଲା ।

ସ୍ୱେଚ୍ଛାସେବୀମାନେ ଯେବେ ଗାଁରୁ ଗାଁ ପଦଯାତ୍ରା କରନ୍ତି, ସେତେବେଳେ ଅଧିକାଂଶ ଗ୍ରାମର ଗ୍ରାମବାସୀ ଜଙ୍ଗଲ ସଂରକ୍ଷଣ ପାଇଁ ଫରେଷ୍ଟ ଗାର୍ଡ଼ ଦାବି କରନ୍ତି : ଜଙ୍ଗଲର ସୁରକ୍ଷା କେବଳ ଲୋକଙ୍କ ଦ୍ୱାରା ହୋଇ ପାରିବ । ସରକାରୀ କର୍ମଚାରୀମାନଙ୍କର ସାଧାରଣତଃ ସୌଦାଗରୀ ମନୋବୃତ୍ତି ଥାଏ । କେମିତି କେଉଁ ବାଟରୁ ପାଞ୍ଚ ପଇସା ଯୋଗାଡ଼ ହୋଇପାରିବ, ସେଥିପାଇଁ ସେମାନେ ଓର ଉଣ୍ଡୁଥାନ୍ତି । ସେମାନଙ୍କ ସଲାସୁତରାରେ ଲୋକମାନେ ଗଛକାଟି ଜଙ୍ଗଲକୁ ପଦା କରନ୍ତି । ତାପରେ, ଫରେଷ୍ଟ ଗାର୍ଡ଼ ଉକ୍ତ ଅଞ୍ଚଳର ନ ହୋଇପାରନ୍ତି । ତେଣୁ ତାଙ୍କର ବା କାହିଁକି ଜଙ୍ଗଲ ସଂରକ୍ଷଣ ପାଇଁ ଦରଦ ରହିବ ? ସରକାର ଯଦି ଜଙ୍ଗଲର ସଂରକ୍ଷଣ ଓ ସୁରକ୍ଷା କରିପାରିଥାନ୍ତେ, ବର୍ତ୍ତମାନ ସାରା ଦେଶ ପ୍ରାୟ ଜଙ୍ଗଲଶୂନ୍ୟ ହୋଇନଥାନ୍ତା । ଜଙ୍ଗଲର ମାଲିକାନା, କର୍ତ୍ତୃତ୍ୱ ଓ ପରିଚାଳନା ଲୋକମାନଙ୍କ ହାତରେ ରହୁ, କିନ୍ତୁ ଲୋକେ ଜଙ୍ଗଲ ବିଭାଗର ସମ୍ବଳର ବିନିଯୋଗ କରନ୍ତୁ ଓ ବୈଷୟିକ ପରାମର୍ଶ ଜଙ୍ଗଲ ବିଭାଗରୁ ଗ୍ରହଣ କରନ୍ତୁ । ଏହାହିଁ ବୁଦ୍ଧଗ୍ରାମର ପଦଯାତ୍ରୀଙ୍କର ଅନୁଚିନ୍ତା ।

ପଦଯାତ୍ରାବେଳେ ପଦଯାତ୍ରୀବୃନ୍ଦ ନିଜ ହାତରୁ ପଇସା ଖର୍ଚ୍ଚକରି ଖିଆପିଆ କରନ୍ତି ନାହିଁ । ବର୍ଷରେ ପ୍ରାୟ ୩ଥର, (ଶୀତଦିନ ପୂର୍ବରୁ, ଶୀତଦିନ ପରେ ଓ ଖରାଦିନରେ) ପଦଯାତ୍ରା ହୁଏ । ପଦଯାତ୍ରାର ଏକ ମୂଳନୀତି ହେଲା, ଗ୍ରାମବାସୀ ମଧ୍ୟାହ୍ନ ଭୋଜନ, ରାତ୍ର ଭୋଜନ ପାଇଁ ସମ୍ବଳ ଓ ଶ୍ରମ ଦେବା । ଲୋକଙ୍କ ଉପରେ ଭୋଜନ ବ୍ୟବସ୍ଥା ପକାଇବା ଦ୍ୱାରା, ଲୋକମାନଙ୍କ ଦେହକୁ ଲାଗେ । ସେମାନେ ଦୁଇ ଦିନିଆ ପଦଯାତ୍ରୀଙ୍କ ବାର୍ତ୍ତାକୁ ହାଲୁକା ଭାବରେ ନିଅନ୍ତି ନାହିଁ । ଏ ସଂପର୍କରେ ବିତର୍କ ହୁଏ ଓ ଲୋକମାନେ ଗୁରୁତ୍ୱର ସହିତ ଆଲୋଚନା ଏବଂ କାର୍ଯ୍ୟାନୁଷ୍ଠାନ କରନ୍ତି । ଅନେକ ସ୍ଥାନରେ ଅନୁଷ୍ଠିତ ସାଇକଲ ପଦଯାତ୍ରା ଲୋକଙ୍କୁ ଗଭୀର ଭାବେ ସ୍ପର୍ଶ କରେ ନାହିଁ । ଲୋକଙ୍କ ପାଇଁ କଷ୍ଟ ନ ସହିଲେ, ଶ୍ରମ, ଶକ୍ତି, ସ୍ୱେଦ ଓ ସମୟ ନ ଦେଲେ ତପସ୍ୟାର ବାର୍ତ୍ତା ସେମାନଙ୍କ ହୃଦୟକୁ ସ୍ପର୍ଶ କରେନାହିଁ ।

ଯେଉଁ ପାହାଡ଼ରେ ଏ ପର୍ଯ୍ୟନ୍ତ କଟାଗଛର ମୂଳ ରହିଛି, ତାକୁ ଜଗିବା ପାଇଁ 'ବୁଦ୍ଧଗ୍ରାମ ପରିବେଶ ଆନ୍ଦୋଳନ'ର ଆଭିମୁଖ୍ୟ ରହିଛି । ଏପରି ସଂରକ୍ଷଣ ଦ୍ୱାରା ନୟାଗଡ଼, ଖୋର୍ଦ୍ଧା, ଗଞ୍ଜାମ ଓ ଫୁଲବାଣୀ ଜିଲ୍ଲାରେ ଅନେକ ପାହାଡ଼କୁ ସବୁଜିମା ଫେରି ଆସିଛି । ତିରିଶ ବର୍ଷରେ ଗୋଟିଏ ବୃକ୍ଷ ପରିପକ୍ୱ ହୁଏ । ସୁରକ୍ଷାର ୩୦ ବର୍ଷ ପରେ ପୁଣି ପୂର୍ବ ଜଙ୍ଗଲ ପ୍ରତ୍ୟାବର୍ତ୍ତନ କରିବ ।

ସରକାର ଯେତେବେଳେ ଉଜୁଡ଼ା ଜଙ୍ଗଲରେ ବନୀକରଣ କରୁଛନ୍ତି, ଜଙ୍ଗଲରେ ଥିବା ଲଟାବୁଦା କଟାଉଛନ୍ତି । ଏହା ଏକ ତ୍ରୁଟିପୂର୍ଣ୍ଣ ପଦ୍ଧତି । ବୁଦାଲଟା ରହିବା ଫଳରେ ମୃତ୍ତିକା କ୍ଷୟ ରୋକି ହୁଏ, ମାଟିର ଆଦ୍ରତା ସୁରକ୍ଷିତ ରହିବାରୁ ଅନ୍ୟ ବଡ଼ ବଡ଼ ଗଛର ସୁସ୍ଥ ଅଭିବୃଦ୍ଧି ଘଟେ । ଲଟା ଗହଳରେ ଅନେକ ଛୋଟ ପଶୁପକ୍ଷୀ ନିଜକୁ ମାଂସାସୀ ପ୍ରାଣୀ କବଳରୁ ବଞ୍ଚାଇ ରଖନ୍ତି । ସର୍ବୋପରି ଜନ ସାଧାରଣ ଏଥିରୁ ଫଳ, କୋଳି, ପତ୍ର ଏବଂ ଜାଳେଣି ପାଇଥାନ୍ତି । ଯେହେତୁ ସରକାରଙ୍କ ବୃକ୍ଷରୋପଣ, ସାଧାରଣତଃ ବାହାଘରବେଳେ ବାଇଗଣ ରୁଆପରି, ତେଣୁ ଲଗାଯାଇଥିବା ଚାରାରୁ ଖୁବ୍ କମ୍ ବଞ୍ଚେ । ଭାରତ ସରକାରଙ୍କର ସମୀକ୍ଷାରୁ ଜଣାପଡ଼ିଛି ଯେ, ସରକାରଙ୍କ ଜରିଆରେ ଯେଉଁ ବୃକ୍ଷରୋପଣ କରାଯାଏ, ସେଥିରୁ ୨୦ ଶତାଂଶ ବଞ୍ଚେ । ଅନେକ ଜାଗାରେ ଦେଖାଯାଇଛନ୍ତି ଯେ, ଲଟାବୁଦା ତ କଟାହୋଇ ଗଲା, ନୂତନ ଚାରା ମଧ୍ୟ ନାହିଁ ।

ବୁଦ୍ଧଗ୍ରାମର ସ୍ୱେଚ୍ଛାସେବୀମାନେ ଗୋଟିଏ କଥା ଲକ୍ଷ୍ୟ କରିଛନ୍ତି : ଗାଁ ମାନଙ୍କରେ ସାମାଜିକ ସଂହତି ଆଉ ନାହିଁ । ସାମାଜିକ ସଂହତି ସଂଗଠନରୁ ଉଦ୍ଭବ । ସାମାଜିକ ସଂହତି ଓ ରାଜନୀତି ସଂଗଠନ ଯୋଗୁଁ, ବୁଦ୍ଧଗ୍ରାମର ଲୋକେ ୪୧ ବର୍ଷ

ହେଲା ଥାନା, କୋର୍ଟ, କଚେରୀକୁ ଯାଇନାହାନ୍ତି । ଯଦିବା ଯାଇଛନ୍ତି, ସାମାଜିକ ଚାପ ଯୋଗୁଁ ସାଙ୍ଗେ ସାଙ୍ଗେ ଫେରି ଆସିଛନ୍ତି । ଏହା ଫଳରେ ଏହି ଗ୍ରାମରେ ଜଳସେଚନ, ପରିବାର ନିୟନ୍ତ୍ରଣ, ଶିକ୍ଷା, ପରିବେଶ ସଂରକ୍ଷଣ ଆଦି ଅର୍ଥନୀତିକ ବିକାଶ ସମ୍ଭବ ହୋଇଛି । ଯେଉଁ ଗ୍ରାମମାନଙ୍କରେ ସକ୍ରିୟ କର୍ମୀମାନେ ଆଧ୍ୟାତ୍ମିକ, ନୈତିକ ଓ ମାନବିକ ମୂଲ୍ୟବୋଧ ଦ୍ୱାରା ପ୍ରଭାବିତ (ଅର୍ଥ, ପଦପଦବୀ, ପ୍ରଭୁତ୍ୱ ଓ ଯଶପାଇଁ ଲାଳାୟିତ ନୁହନ୍ତି) ଏବଂ ଗ୍ରାମବାସୀଙ୍କୁ ସେହି ମନ୍ତ୍ରରେ ଦୀକ୍ଷିତ କରିପାରିଛନ୍ତି, ସେହି ଗ୍ରାମମାନଙ୍କର ବିକାଶ ତ୍ୱରାନ୍ୱିତ ଓ ସ୍ଥାୟୀ ହୋଇଛି ।

ବୁଦ୍ଧଗ୍ରାମରେ ଏକ ଅଦ୍ୱିତୀୟ ଅନୁପମ ରାଜନୀତିକ ବ୍ୟବସ୍ଥା ପ୍ରଚଳିତ । ସୁଦୂର ଆମେରିକା, ବିଲାତ, ଜର୍ମାନୀ, ସ୍ୱିଡ଼େନ, ଇଣ୍ଡୋନେସିଆ ଆଦି ଦେଶରୁ ସମାଜସେବୀମାନେ ବୁଦ୍ଧଗ୍ରାମକୁ ଆସି ଏହି ବ୍ୟବସ୍ଥାର ଉଚ୍ଚପ୍ରଶଂସା କରିଛନ୍ତି । ୧୯୬୧ ମସିହାରୁ ଏହି ଗ୍ରାମରେ ପ୍ରତିବର୍ଷ, ସାବାଳକ (୧୮ ବର୍ଷ) ଭୋଟଦେଇ ଲୋକପ୍ରତିନିଧି ନିର୍ବାଚନ କରିବା ବ୍ୟବସ୍ଥା ରହି ଆସିଛି । ନିର୍ବାଚନରେ ଗୁପ୍ତମତଦାନର ବ୍ୟବସ୍ଥା ରହିଛି । ଗ୍ରାମବାସୀ ପ୍ରତିବର୍ଷ ୫ ଜଣ ପ୍ରତିନିଧିଙ୍କୁ ଗ୍ରାମ ଚଳାଇବା ଓ ଗ୍ରାମ ବିକାଶ ପାଇଁ ନିର୍ବାଚିତ କରନ୍ତି । ଏହି ପଞ୍ଚାୟତ ଛଡ଼ା, ଗ୍ରାମର ଆୟବ୍ୟୟର ହିସାବ ବୁଝିବାକୁ ଦୁଇ ଜଣ ସେକ୍ରେଟାରୀଙ୍କୁ ନିର୍ବାଚିତ କରାଯାଏ । ପ୍ରତିବର୍ଷ ନିର୍ବାଚନ ହେଉଥିବା ଯୋଗୁଁ, ଲୋକମାନଙ୍କର ନେତୃତ୍ୱ ଉପରେ ଆସ୍ଥା ରହିଛି । ଲୋକ ପ୍ରତିନିଧିମାନଙ୍କର ବିଶ୍ୱାସ ରହୁଛି ଯେ, ତାଙ୍କ ପଛରେ ଜନସମର୍ଥନ ରହିଛି । ରାଜନୀତିକ ପ୍ରକ୍ରିୟାରେ ଲୋକମାନେ ନିୟମିତ ଅଂଶଗ୍ରହଣ କରୁଥିବା ଯୋଗୁଁ ରାଜନୀତିକ ବ୍ୟବସ୍ଥାର ବୈଧତା ଦୃଢ଼ୀଭୂତ ଓ ସଂପ୍ରସାରିତ ହେଉଛି ଏବଂ ବୁଦ୍ଧଗ୍ରାମର ପରିବର୍ତ୍ତନରେ ଗଣତାନ୍ତ୍ରିକ ରାଜନୀତି ଏକ ସୃଜନଶୀଳ ଶକ୍ତିଭାବେ କାର୍ଯ୍ୟ କରୁଛି । ଏହି ବ୍ୟବସ୍ଥା ବୁଦ୍ଧଗ୍ରାମର ପଡ଼ୋଶୀ ଗ୍ରାମ ନାଗମୁଣ୍ଡଳି, ମାନପୁର, କାଳିକାପ୍ରସାଦ, ବୁଦ୍ଧଗିରି, ଗମେଇ, ଖମ୍ବାରିଡ଼ିହ, ପୁଆଣିଆଁ, ଆଙ୍ଗିସିଙ୍ଗ, ବଡ଼ଗୋରଡ଼ା, ସାନଗୋରଡ଼ା, ପାଟୁଳିସାହିକୁ କେତେକାଂଶରେ ପ୍ରସାର ଲାଭ କରିଛି ।

ବୁଦ୍ଧଗ୍ରାମରେ 'ପ୍ରଗତି ଶିଶୁସଂଘ' ନାମରେ ପିଲାମାନଙ୍କର ଏକ ସଂଘ ରହିଛି । ଏହାର ଜନ୍ମ ୧୯୫୮ ମସିହାରେ । ଏଥିରେ ଷଷ୍ଠଶ୍ରେଣୀରୁ ଦଶମ ଯାଏ ପିଲାମାନେ ସଭ୍ୟଥାନ୍ତି । ସଭ୍ୟସଂଖ୍ୟା ପ୍ରାୟ ୩୦ । ଏହି ସଂଘର ଏକ ପାଞ୍ଚଜଣିଆ ମନ୍ତ୍ରୀମଣ୍ଡଳ ରହିଛି ଯଥା : ପ୍ରଧାନମନ୍ତ୍ରୀ, କର୍ମ ଓ ଅର୍ଥମନ୍ତ୍ରୀ, ଶିକ୍ଷାମନ୍ତ୍ରୀ, ସ୍ୱାସ୍ଥ୍ୟମନ୍ତ୍ରୀ ଓ ଆମୋଦ ପ୍ରମୋଦ ମନ୍ତ୍ରୀ । ବାଳକମାନେ ଗ୍ରାମର ସମସ୍ତ ଗଠନମୂଳକ କାର୍ଯ୍ୟ, ସ୍ୱାସ୍ଥ୍ୟ,ଶିକ୍ଷା, ପରିଛନ୍ନତା ପ୍ରତି ସତର୍କ ଦୃଷ୍ଟି ରଖିଥାନ୍ତି ଓ ନିଶା ନିବାରଣ କଡ଼ାକଡ଼ି ପାଳନ କରନ୍ତି ।

ଏହାଫଳରେ ବୁଦ୍ଧଗ୍ରାମରେ ନାଶ, ଗୁଣ୍ଡି, ପାନ, ବିଡ଼ି, ସିଗାରେଟ, ଗଞ୍ଜେଇ, ଗୁଲି, ମଦ ଆଦିର ପ୍ରଚଳନ ଅନେକାଂଶରେ ସୀମିତ । ପ୍ରତିଦିନ କୁସୁମୀ ନଦୀର ବାଲୁକା ଶଯ୍ୟା ଉପରେ ଅପରାହ୍ନରେ ବୋହୂଚୋରୀ ଖେଳର ଆୟୋଜନ ହୁଏ । ଖେଳପରେ ପ୍ରାର୍ଥନା କରାଯାଏ ଓ ନୈତିକ ଶିକ୍ଷା ଦିଆଯାଏ । ଶୁକ୍ଳପକ୍ଷ ରାତ୍ରିରେ ଚନ୍ଦ୍ରମାର ଜ୍ୟୋତ୍ସ୍ନା ପାର୍ଶ୍ୱବର୍ତ୍ତୀ ବୁଦ୍ଧଗିରି ପାହାଡ଼ ଓ କୁସୁମୀର ଶଯ୍ୟାକୁ ପ୍ଳାବିତ କରେ । ସେ ପ୍ରାର୍ଥନା ପରିବେଶ ଆଣେ ମନ ଓ ପ୍ରାଣରେ ଅପୂର୍ବ ପୁଲକ, ଆନନ୍ଦ ଓ ପ୍ରଶାନ୍ତି । ପିଲାମାନେ କିପରି ଭଲ ମଣିଷ ହେବେ, ସେଥିପ୍ରତି ଅହରହ ଉଦ୍ୟମ କରାଯାଏ । ଶିଶୁସଂଘର ପିଲାଙ୍କ ମଧ୍ୟରେ ଏକ ନିର୍ଦ୍ଦିଷ୍ଟ ଭାବର ସୃଷ୍ଟି ପାଇଁ ଚେଷ୍ଟା ଅବ୍ୟାହତ; ତାହାହେଲା - ବ୍ୟକ୍ତିର ସ୍ୱାର୍ଥହିଁ ସମୂହ ସ୍ୱାର୍ଥରେ ନିହିତ ।

**ସଚିତ୍ର ବିଜୟା ଜୁଲାଇ ୧୯୯୫, ସଂପାଦକ - ଅଭୟ ସିଂହ**

# ପରିବେଶର କାଳ ମଣିଷର ସର୍ବଗ୍ରାସୀକ୍ଷୁଧା

ନାରାୟଣ ହଜାରୀ

ପୃଥିବୀ ବକ୍ଷରେ ସର୍ବବୃହତ ପଦଚିହ୍ନ ଏସିଆ ମହାଦେଶର । ଏଥିରେ ଉତ୍ପାଦିତ ହେଉଥିବା ଅରଣ୍ୟ ଖାଦ୍ୟଶସ୍ୟର ୮୦ ପ୍ରତିଶତ, ଏହାର ଅଧିବାସୀ ବ୍ୟୟ କରନ୍ତି । ମାନସିକତାରେ ପରିବର୍ତ୍ତନ ନହେଲେ ଏହାର ପର୍ଯ୍ୟାବରଣୀୟ ସ୍ଥିତିର ଭବିଷ୍ୟତ ଅନିଶ୍ଚିତ । ଏସୀୟଦେଶ ଚୀନ, ଭାରତ, ଇଣ୍ଡୋନେସିଆ, ପାକିସ୍ତାନ, ବାଂଲାଦେଶ ଆଦିର ପର୍ଯ୍ୟାବରଣୀୟ ଡେଫିସିଟ୍ (ଅନଟନ) ଏତେ ହେଲାଣି ଯେ ଏମାନଙ୍କର ଆର୍ଥିକ ଅଭିବୃଦ୍ଧିରେ ପ୍ରଶ୍ନବାଚୀ ଠିଆହୋଇଛି ।

ୱାଶିଂଟନରେ ସ୍ଥାପିତ ପୃଥିବୀ ବଣ୍ୟ ପଶୁପକ୍ଷୀ ସଂରକ୍ଷଣ ପାଣ୍ଠିର ଡିରେକ୍ଟର ଡକ୍ଟର ଟେଲର ରିକେଟ୍‌ସ କହନ୍ତି, 'ପୃଥିବୀର କେତେକ ଅଞ୍ଚଳ ନିଜର ପର୍ଯ୍ୟାବରଣୀୟ ସମ୍ବଳଠାରୁ ଅଧିକ ବ୍ୟୟ କରନ୍ତି । ସେମାନେ ଅନ୍ୟ ଅଞ୍ଚଳର ପର୍ଯ୍ୟବରଣୀୟ ସମ୍ବଳରୁ ନିଜର ଖର୍ଚ୍ଚ ତୁଲାନ୍ତି । ବଞ୍ଚିବା ପାଇଁ ସେମାନେ ଅନ୍ୟ ଉପରେ ନିର୍ଭରଶୀଳ ।

ରିକେଟ୍‌ସ ଓ ତାଙ୍କର ସହକର୍ମୀବୃନ୍ଦ ପୃଥିବୀର ସମ୍ବଳ ବ୍ୟୟର ଭୌଗଳିକ ପ୍ରତିନିଧିତ୍ୱର ଏକ ଚିତ୍ର ପ୍ରଦାନ କରିଛନ୍ତି । ସେଥିରେ ଧରାବକ୍ଷର ଜନବସତି ଅଞ୍ଚଳର ପ୍ରତି ବର୍ଗମାଇଲ୍‌ର ପର୍ଯ୍ୟାବରଣୀୟ ପଦଚିହ୍ନ ପ୍ରସ୍ତୁତ କରିଛନ୍ତି । ଏ ବର୍ଷର ଜୁନ୍‌ମାସରେ ଇଂରାଜୀ ପତ୍ରିକା 'ନେଚର୍'ରେ ଏହା ପ୍ରକାଶିତ । ଏଥିରେ ଜନବସତି, ଘନତାର ପର୍ଯ୍ୟାବରଣୀୟ ସ୍ଥିତି ଉପରେ ନାଟକୀୟ ପ୍ରଭାବ ଉଲ୍ଲେଖ କରାଯାଇଛି । ମଣିଷର ସମ୍ଭୋଗୀୟ ଆହାର ବିହାରରେ, ପାରମ୍ପରିକ ଉପଲବ୍ଧି ଓ ଜ୍ଞାନର କିପରି ଉଲ୍ଲଂଘନ କରାଯାଉଛି ତା'ର ଚିତ୍ର ପ୍ରଦାନ କରାଯାଇଛି ।

ଉପରୋକ୍ତ ଗୋଷ୍ଠୀ କହନ୍ତି; 'ପୃଥିବୀର ସୂର୍ଯ୍ୟଶକ୍ତିକୁ ବୃକ୍ଷଲତାମାନେ ଜୈବକାର୍ବନରେ ପରିଣତ କରନ୍ତି । ଏହାର ମୂଲ୍ୟାୟନ କରାଯାଇଛି ୫୬୦ କୋଟି 'ନେଟ୍ ପ୍ରାଇମେରୀ ପ୍ରୋଡ଼କସନ୍ (ଏନ୍.ପି.ପି.) । ପୃଥିବୀର ୬୩୦ କୋଟି ଲୋକ ଏନ୍.ପି.ପି.ର ଏକ ତୃତୀୟାଂଶ ଖର୍ଚ୍ଚ କରନ୍ତି । ଏହା ସହନ କରିବାର ଭାର ପୃଥିବୀର

ଥିବାପରି ପ୍ରତୀୟମାନ ହେଉଥିଲେ ମଧ୍ୟ, ଏଥିରେ କେତେକ ମୌଳିକ ଭୌଗଳିକ ଅସମାନତା ଓ ବିଷମତା ଲୁକ୍‌କାୟୀତ ରହିଛି । ଉଦାହରଣ ସ୍ୱରୁପ ସାଇବେରିଆର ଅଧିକାଂଶ ଅଞ୍ଚଳ ସେ ଅଞ୍ଚଳର ଏନ୍.ପି.ପି. ଶୂନ ପ୍ରତିଶତ ଉପଯୋଗରେ; କିନ୍ତୁ ଉତ୍ତର ଆମେରିକା ୨୩ ପ୍ରତିଶତ ଏନ୍.ପି.ପି. ବ୍ୟବହାର କରେ । ତା'ର ଅଧିବାସୀ ଜଣ ପିଛା ୫.୪ ପ୍ରତିଶତ ଟନ୍ କାର୍ବନ୍ ବ୍ୟୟକରୁଥିବା ବେଳେ, ଭାରତୀୟ ଉପମହାଦେଶ ବ୍ୟକ୍ତିପିଛା ୧.୨ ପ୍ରତିଶତ ଟନ୍ କାର୍ବନ୍ ବ୍ୟବହାର କରେ; କିନ୍ତୁ ଏହି ଅଞ୍ଚଳ ୧୩୦ କୋଟି ଲୋକଙ୍କର ଘନତାର ଚାପ ଭୂମି ଉପରେ ଯଥେଷ୍ଟ ଅଧିକ । ଯଦି ବିକାଶଶୀଳ ଦେଶମାନେ ବିକଶିତ ଦେଶମାନଙ୍କର ଆହାର ବିହାରସ୍ତରକୁ ପହଞ୍ଚନ୍ତି, ତାହାହେଲେ ମଣିଷର ଏନ୍.ପି.ପି. ହାର ୭୫ ପ୍ରତିଶତରେ ପହଞ୍ଚିବ ।

ଅକ୍‌ସ୍‌ଫୋର୍ଡ଼ ବିଶ୍ୱବିଦ୍ୟାଳୟର ପରିବେଶୀୟ ବିଜ୍ଞାନର ପରିଦର୍ଶକ ପ୍ରଫେସର ନରମାନ୍ ମାୟାରିସ୍ କହନ୍ତି, "କୋଡିଏଟି ବିକାଶଶୀଳ ଦେଶର ୧୦୦କୋଟି ଲୋକ ନିକଟ ଅତୀତରେ ଧନୀ ହୋଇ ଆମେରିକୀୟଙ୍କ ପରି ଆହାର ବିହାର କରୁଛନ୍ତି। ସେମାନେ ପୃଥିବୀର ଏକ ପଞ୍ଚମାଂଶ ସ୍ୱୟଂ ଚାଳିତ ଗାଡ଼ି ବ୍ୟବହାର କରନ୍ତି। ୨୧୦ ମସିହାରେ ତାହ ଏକ ତୃତୀୟାଂଶରେ ପହଞ୍ଚିବ। ଏହି ଭାର ବହନ କରିବାର ସାମର୍ଥ୍ୟ ବସୁନ୍ଧରାର ନାହିଁ।" ମାୟାରସ୍ କହନ୍ତି, 'ମଣିଷର ହାରାହାରି ଶକ୍ତିବ୍ୟୟ ପଦଚିହ୍ନ ୨.୨୮ ହେକ୍ଟର (୫.୪ଏକର); କିନ୍ତୁ ପୃଥିବୀର ଜୈବଶକ୍ତି ଜଣପିଛା ମାତ୍ର ୧.୯ ହେକ୍ଟର । ଅର୍ଥାତ୍ ଜଣପିଛା ୦.୩୮ ହେକ୍ଟର ଜୈବଶକ୍ତିର ଡେଫିସିଟ୍ (ଅନଟନ) ରହିଛି । ଏକ ସକାରାତ୍ମକ ଦୃଷ୍ଟିକୋଣ ନେଇ ସମସ୍ୟା ପ୍ରତି ଦୃଷ୍ଟିପାତ କଲେ, ଏହା ସମ୍ଭବ ଯେ ଏହି ସମସ୍ୟାର ଉତ୍କଟତାରେ ଭଟା ପଡ଼ିପାରେ ଓ ଏହା ପଶ୍ଚାତମୁଖୀ ହୋଇପାରେ । ବିକାଶଶୀଳ ଦେଶମାନଙ୍କରେ ଅଧିକ ଦକ୍ଷତାସମ୍ପନ୍ନ ଟେକ୍ନୋଲୋଜି ବ୍ୟବହାର କରାଯାଇପାରେ । ହାଇବ୍ରିଡ୍ ବା ଇଲୋକ୍‌ଟ୍ରୋନିକ୍ କାର୍ ବର୍ତ୍ତମାନର ବିକଳ୍ପଭାବେ ଉଦ୍‌ଭାବିତ ହୋଇପାରେ । ମୂଲ୍ୟବୋଧ ବଦଳିଯାଇପାରେ । ସ୍ୱପ୍ରବୃତ୍ତ ସରଳ ଜୀବନ ଜୀବନର ମାନଦଣ୍ଡ ହୋଇପାରେ ।'

ଅନେକ ଲୋକ ଉପଲବ୍ଧି କଲେଣି ଯେ ଭୋଗବିଳାସମୟ ଆହାର ବିହାର ଜୀବନ ଏକ ଆକର୍ଷଣୀୟ ଜୀବନ ନୁହେଁ । ଏହା ଆନନ୍ଦ ଓ ଶାନ୍ତି ଜୀବନର ପରିପନ୍ଥୀ । ଲୋକମାନେ ମଧ୍ୟ ଲୋପପାଇଯାଇଥିବା ସମ୍ପଦର ପୁନରୁଦ୍ଧାର କରିପାରନ୍ତି । ଯେପରି ଯୁକ୍ତରାଷ୍ଟ୍ର ଆମେରିକାର ନିଉ ଇଂଲଣ୍ଡର ଲୋକମାନେ ନିଜ ଅଞ୍ଚଳରେ ଲୁପ୍ତ ଅରଣ୍ୟକୁ ପୁନର୍ଜୀବନ ଦେଇଛନ୍ତି । ଗ୍ୟାସ୍, ଡ଼ିଜେଲ ଓ ପେଟ୍ରୋଲର ଆବଶ୍ୟକତା କମିଯାଇପାରେ । ଷ୍ଟାନ୍‌ଫୋର୍ଡ ବିଶ୍ୱବିଦ୍ୟାଳୟର ପରିବେଶୀୟ

ପ୍ରଫେସର ପଲ୍ ଏହର୍‌ଲିଚ୍ ତାଙ୍କର ନୂତନ ପୁସ୍ତକ 'ନିନେଭେ : ରାଜନୀତି, ଆହାର ଓ ମଣିଷର ଭବିଷ୍ୟତ'ରେ କହନ୍ତି ଯେ ମଣିଷ ନିଜର ଆହାର ବିହାରର ସାମଗ୍ରିକ ପୁନଃମୂଲ୍ୟାୟନ କରିପାରେ ।

ଯୁକ୍ତରାଷ୍ଟ୍ରରେ ପୃଥିବୀର ୫ ପ୍ରତିଶତ ଲୋକ ବାସକରୁଥିବା ବେଳେ, ୨୦୦୦ ମସିହାରେ ଏହା ପୃଥିବୀର ୨୩ ପ୍ରତିଶତ ଶକ୍ତି ବ୍ୟୟ କରୁଥିଲା । ପୃଥିବୀର ଏକ ଚତୁର୍ଥାଂଶ କାର୍ ଏ ଦେଶରେ । ଅନ୍ୟ ଅଞ୍ଚଳର ସମ୍ବଳର ଆମଦାନୀ କରି ଏ ପ୍ରକାର ଜୀବନପ୍ରଣାଳୀ ବଜାୟରଖିଛି, ଯଥା ଇଣ୍ଡୋନେସିଆର ଅରଣ୍ୟସମ୍ପଦର ଦୁରୂପଯୋଗ ।

ଏହରଲିଚ୍ କହନ୍ତି, 'ଆମେ ବଞ୍ଚିବା ପାଇଁ ଆମର ଆୟ ଉପରେ ନିର୍ଭର କରୁନଥାଇଁ, ଆମର ମୂଳଧନ ବ୍ୟୟକରି ବଞ୍ଚିଚାଲିଛୁ । କୃଷିଭୂମି, ଭୂମିତଳପାଣି ଓ ଜୈବବିବିଧତାର ଉପଯୋଗକରି ବଞ୍ଚିଥାଉ । ମଣିଷ ବଞ୍ଚିବାପାଇଁ ଏ ପର୍ଯ୍ୟନ୍ତ ଏକ ପଥ ଉନ୍ମୁକ୍ତ ରହିଛି । ପୃଥିବୀର ଲୋକସଂଖ୍ୟାର ଅଭିବୃଦ୍ଧିର ବେଗର ତୀବ୍ରତା କମିବାରେ ଲାଗିଛି; କିନ୍ତୁ କ୍ଷୋଭର ବିଷୟ ଯେ ଆମେ ଆହାରବିହାର ସମ୍ପର୍କରେ ଦାୟିତ୍ୱହୀନ ହୋଇ ଭୁଲ ବାଟରେ ଅଗ୍ରସର ହେଉଛୁ ।'

ଦି ଖ୍ରୀଷ୍ଟିଆନ୍ ସାଇନ୍‌ସ ମନିଟର, ୨ ସେପ୍ଟେମ୍ବର ୨୦୦୪ ସଂଖ୍ୟାରୁ ଆନିତ ।

**ସମାଜ ୬.୨.୨୦୦୫**

# ମିଜୋରାମର ବାଉଁଶ ଫୁଲ

ନାରାୟଣ ହଜାରୀ

ଆକାଶରୁ ଦେଖିଲେ ଲାଗେ ଭାରତର ଉତ୍ତରପୂର୍ବ ରାଜ୍ୟ ମିଜୋରାମ ବାଉଁଶ ପାହାଡ଼ର ଏକ ମନୋରମ ସବୁଜ ସାଗର । ଆଉ ଅଳ୍ପ କେତେବର୍ଷ ପରେ ସ୍ଥାନୀୟ ଭାଷାରେ ମଉଥମ୍ ନାମରେ ନାମିତ ଏହି ବାଉଁଶ ପ୍ରାକୃତିକ ପ୍ରକ୍ରିୟାରେ ଫୁଲର ସମ୍ଭାରରେ ଉଛୁଳି ଉଠିବ । ତା'ପରେ ବାଉଁଶସବୁ ମରିବା ସଙ୍ଗେ ସଙ୍ଗେ ଏକ ସର୍ବଗ୍ରାସୀ ଦୁର୍ବିପାକକୁ ଡାକିଆଣିବ ।

ଉତ୍ତରପୂର୍ବ ଭାରତର ମୂଳି ବାଉଁଶର ଜୀବନକାଳ ଅର୍ଦ୍ଧ ଶତାବ୍ଦୀ । ୧୯୫୯ ମସିହାରେ ମିଜୋରାମର ବାଉଁଶ ଅରଣ୍ୟରେ ଫୁଲ ଫୁଟିବା ସଙ୍ଗେ ସଙ୍ଗେ ପ୍ରଚୁର ବାଉଁଶ ଧାନ ଫଳିଥିଲା । ସେ ଧାନ ଖାଇ ମୂଷାମାନଙ୍କର ସଂଖ୍ୟା ଅସମ୍ଭବଭାବେ ବଢ଼ିଯାଇଥିଲା । ଏହା ଏକ ମହାମାରୀର କାରଣ ହୋଇଥିଲା । ମୂଷାମାନେ ଧାନଫସଲର ସର୍ବନାଶ କରିବା ସଙ୍ଗେ ସଙ୍ଗେ ଏକ ବ୍ୟାପକ ଦୁର୍ଭିକ୍ଷକୁ ସ୍ୱାଗତ କରିଥିଲେ । ଫଳରେ ପନ୍ଦର ହଜାର ଲୋକ ହା-ଅନ୍ନ ଚିତ୍କାର କରି ପ୍ରାଣତ୍ୟାଗ କରିଥିଲେ । ଲୋକଙ୍କର ଏହି ଦୁର୍ଦ୍ଦଶା ସମୟରେ ଭାରତ ସରକାର କୌଣସି ପ୍ରତିକାରମୂଳକ ପଦକ୍ଷେପ ନନେବାରୁ, ପ୍ରବଳ ଜନଅସନ୍ତୋଷ ସୃଷ୍ଟି ହୋଇଥିଲା । ଏହା ଏକ ବିଛିନ୍ନତାବାଦୀ ବିଦ୍ରୋହ ରୂପ ଧାରଣ କରି ୨୫ ବର୍ଷ ପର୍ଯ୍ୟନ୍ତ ଅବିରାମ ପ୍ରବାହ କରିଥିଲା ।

ପୁଷ୍ପିତ ହେବା ଆଗରୁ ବାଉଁଶକୁ ଅମଳ କରିନେବା ପାଇଁ ରାଜ୍ୟ ସରକାର ପ୍ରସ୍ତାବ ଦେଇଛନ୍ତି; କିନ୍ତୁ ଏତେ ବାଉଁଶ ପଣ୍ୟ ବାବଦକୁ କିପରି ରପ୍ତାନି ହେବ ତାହା ଚିନ୍ତାର କାରଣ ହୋଇଛି । ଏକ ଆଗ୍ନେୟଗିରି ଉପରେ ବସିଥିବାପରି ଉଦ୍‌ବେଗପୂର୍ଣ୍ଣ ସ୍ଥିତିରେ ରହି ମିଜୋରାମ ସରକାର କିଂକର୍ତ୍ତବ୍ୟମିଭୂଢ଼ ହୋଇଯାଇଛନ୍ତି । ଅହମ୍ମଦାବାଦର ଜାତୀୟ ଡିଜାଇନ ଇନ୍‌ଷ୍ଟିଟ୍ୟୁଟ୍‌ର ବାଉଁଶ ଉଦ୍ୟୋଗ କେନ୍ଦ୍ରର ମୁଖ୍ୟ ପ୍ରଫେସର ଏମ୍.ପି. ରାଜନ୍ ଏହି ପରିପ୍ରେକ୍ଷୀରେ କହନ୍ତି, 'ଏହା ବଢ଼ି ବା ଭୂମିକମ୍ପ

ପରି ଏକ ପ୍ରାକୃତିକ ଦୁର୍ବିପାକ । ଏହି ମାଡ଼ିଆସୁଥିବା ଦୁର୍ବିପାକକୁ କିପରି ଆର୍ଥିକ ସମୃଦ୍ଧିର ସୋପାନ କରିବେ ସେଥିପାଇଁ ସେ ଓ ତାଙ୍କର ସହକର୍ମୀମାନେ (ଉଦ୍ଭିଦ ବିଜ୍ଞାନୀ, ଇଞ୍ଜିନିୟର, ସ୍ଥପତି ଓ ପ୍ରଶାସକ) ଲାଗିପଡିଛନ୍ତି । ବାଉଁଶ ଏକ ବହୁବିଧ ଉପଯୋଗୀୟ ବସ୍ତୁ । କେତେକ ବାଉଁଶ ଦିନକୁ ମିଟରେ ଲେଖାଏଁ ବଢ଼ନ୍ତି । ଏହା ଖାଲି ଆଖିରେ ଦେଖିହୁଏ । ପୃଥିବୀର ୬୦୦ କୋଟି ଲୋକଙ୍କ ମଧ୍ୟରୁ ଶହେ କୋଟି ଲୋକ ବାଉଁଶ ନିର୍ମିତ ଘରେ ବାସକରନ୍ତି । ଏଥିରେ ୧୩ କୋଟି ଜନସଂଖ୍ୟା ବିଶିଷ୍ଟ ବାଂଲାଦେଶର ୭୫ ପ୍ରତିଶତ ଲୋକ ବାସକରନ୍ତି । ଭାରତରେ ବାଉଁଶରେ ଘର, ଖଟ, ଚଉକି, ନୋଳି, ସଂଗୀତ ଯନ୍ତ୍ର, ମାଛଧରା ଜାଲ ଆଦି ୪୦୦ ପ୍ରକାରର ଦ୍ରବ୍ୟ ତିଆରି ହୁଏ । ତାହାର ଏକ ତାଲିକା ରାଜନ୍‌ଙ୍କ ସଂସ୍ଥା ପ୍ରସ୍ତୁତି କରିଛି । କଂକ୍ରିଟ ବାଉଁଶ ମିଶା କାନ୍ଥ, ରେସିନ୍ ମିଶା ବାଉଁଶ ଛାତର ଭୂମିକମ୍ପର ୭.୮ ରିଚର ସ୍କେଲକୁ ସମ୍ଭାଳିବାର ଶକ୍ତି ରହିଛି । ବିଲାତର ବାଉଁଶ ଗବେଷଣା ଓ ବିକାଶ ସମିତିର ମୁଖ୍ୟ ପଲ୍ ଫଲେଟ୍ କହନ୍ତି, 'ପୃଥିବୀର ସର୍ବାପେକ୍ଷା ଅଧିକ ଭୂମିକମ୍ପ ସ୍ଥଳ ଏପ୍ରକାର ଘରକୁ ଅକ୍ଷତ ରଖିଛି । ଏହା ନିରାପଦ, ଜଣକର ସମ୍ବଳର ସୀମାଭିତରେ ଓ ପରିବେଶର ଅନୁକୂଳ । ଏ ବିକାଶଶୀଳ ଦେଶମାନଙ୍କ ବନ୍ଧୁ । ଏ ପ୍ରକାର ଘର ତିନିସପ୍ତାହ ମଧ୍ୟରେ ହୋଇପାରିବ ଓ ଏହାର ସ୍ଥାୟିତ୍ୱ ୫୦ ବର୍ଷ। ଇଟା, ସିମେଣ୍ଟ, ଚିପ୍‌ସ, ଲୁହାଛଡ଼ ବ୍ୟବହୃତ ହୋଇ ହେଉଥିବା ଗୃହର ଆଧା ଖର୍ଚ୍ଚରେ ଏହା ହୁଏ । ବହୁଳ ସଂଖ୍ୟାରେ ଏପରି ଗୃହ ନିର୍ମିତ ହେଲେ, ଖର୍ଚ୍ଚ ଆହୁରି କମିଯିବ । ଏହା କେବଳ ଗୃହ ଯୋଗଇବ ନାହିଁ ଜୀବକା ମଧ୍ୟ ଯୋଗାଇବ। ଏହା ଏକ ସାମାଜିକ ଅର୍ଥନୀତିର ଦୃଢ଼ ଭିତ୍ତିଭୂମି ହୋଇପାରିବ।'

ମିଜୋରାମପରି ଅଞ୍ଚଳକୁ ଉପରୋକ୍ତ ଦୁର୍ବିପାକରୁ ରକ୍ଷା କରିବାର ଆଶା କ୍ଷୀଣ ବୋଲି ପ୍ରଫେସର ରଅନ୍ କହନ୍ତି । ଏହା ଏକ ଚିରନ୍ତନ ପ୍ରାକୃତିକ ସମସ୍ୟା । ବାଉଁଶ ୫୦ ବର୍ଷରେ ପୁଷ୍ପିତ ହେଉଥିବା ଯୋଗୁ, ଆଗକୁ ଅର୍ଦ୍ଧ ଶତାବ୍ଦୀ ଆଗରୁ ଯୋଜନା କରିବାକୁ ପଡ଼ିବ ବୋଲି ତାଙ୍କର ମତ ।

ଖ୍ରୀଷ୍ଟିଆନ୍ ସାଇନ୍‌ସ ମନିଟର, ୨୦୦୪ ସେପ୍ଟେମ୍ବର ୨ ତାରିଖ ।

**ସମାଜ ୧୫.୧୨.୨୦୦୪**

# ଗ୍ରାମେ ଗ୍ରାମେ ପରିବେଶ : ବରୁଣେଇର ନିବେଦନ

ନାରାୟଣ ହଜାରୀ
ଶରତ କୁମାର ଦୋରା

ରଣରଙ୍ଗ ବୀର ସେନାନୀଙ୍କର ଅପୂର୍ବ ବୀରତ୍ୱ, ବଳିଦାନର ସୌର୍ଯ୍ୟଭୂମି, ଖୋରଧା ଉତ୍କଳର ମେବାର ରୂପେ ସ୍ୱୀକୃତ ଓ ବନ୍ଦିତ । ସେମାନଙ୍କର ତ୍ୟାଗ, ସାହସ, ଅମିତ ପରାକ୍ରମ ଯୋଗୁଁ ଓଡ଼ିଶାବାସୀଙ୍କର ମସ୍ତକ ସଗର୍ବେ ଉତ୍ତୋଳିତ । ଉତ୍କଳର ତୀର୍ଥଭୂମି ଐତିହାସିକ ବରୁଣେଇ ପାହାଡ଼ ଓଡ଼ିଆ ବୀରମାନଙ୍କର ଅତୀତ ଗୌରବର ମୂକସାକ୍ଷୀ । ସେହି ଅମର ଶହୀଦମାନଙ୍କୁ ଅର୍ଘ୍ୟଦାନ ସ୍ୱରୁପ ବରୁଣେଇ ବନାନୀର ପୁନରୁଦ୍ଧାର ପାଇଁ ଏକ ଉଦ୍ୟମ ୧୯୯୪ରେ ଆରମ୍ଭ ହୋଇଥିଲା । ଉକ୍ତବର୍ଷ ୧୨ ଓ ୧୩ ତାରିଖରେ ପାହାଡ଼ର ପାଦ ଦେଶରେ ଥିବା ୨୧ଟି ଗ୍ରାମରେ ପଦଯାତ୍ରା ହୋଇଥିଲା । ନୟାଗଡ଼ ଜିଲ୍ଲାର ବୁଦ୍ଧଗ୍ରାମ (କେଶରପୁର) ଠାରେ ଅବସ୍ଥିତ ସ୍ୱେଚ୍ଛାସେବୀ ଅନୁଷ୍ଠାନ, 'ବୃକ୍ଷ ଓ ଜୀବର ବଂଧୁ'ର ୨୦ ଜଣ ସଦସ୍ୟ ଏଥିରେ ଯୋଗଦେଇଥିଲେ ।

ଉପରୋକ୍ତ ପଦଯାତ୍ରା ଲଗାତାର କରାଯାଇପାରି ନଥିଲା । ସ୍ଥାନୀୟ ଗ୍ରାମବାସୀମାନେ ଓ ଖୋରଧାର ସ୍ୱେଚ୍ଛାସେବୀ ଓ ବୁଦ୍ଧିଜୀବୀମାନେ ଏ ପଦଯାତ୍ରାର ପଦାଙ୍କ ଅନୁସରଣ କରିପାରିନଥିଲେ । ତା'ଫଳରେ ସଚେତନତା, ସଂଗଠନ ଓ ସକ୍ରୀୟତା ସୃଷ୍ଟି ହୋଇପାରିନଥିଲା । ପଦଯାତ୍ରାର ପ୍ରଭାବ କ୍ରମେ ମଉଳି ଯାଇଥିଲା ।

୨୦୦୪ ମସିହା ନଭେମ୍ବର ୧୨ ଓ ୧୩ ରିଖରେ ଖୋରଧାର ଅଧ୍ୟାପକ ଶରତ କୁମାର ଦୋରା, ଆଡ଼ଭୋକେଟ୍ ଜିତେନ୍ଦ୍ର କୁମାର ଦାସ ଓ ଲେଖକ ପୁଣି ଏକ ଉଦ୍ୟମର ସୂତ୍ରପାତ କରିଥିଲେ । ବରୁଣେଇର ପାଦଦେଶରେ ଅବସ୍ଥିତ ମାଣ୍ଟୁସାହି, ଶିଆଳିଆ ପାଟଣା, ଶିଆଳିଆ ପାଟଣା ଶବର ସାହି, ଶିଆଳିଆ ପାଟଣା ବରାଳ

ସାହି, ବ୍ରହ୍ମପୁରା ଶବର ସାହି, ବ୍ରହ୍ମପୁରା, ଗଡ଼ ଖୋରଧା, ଗଡ଼ ଖୋରଧାର ନୂଆସାହି, ବରପଦା, ତରାବୋଇ, ହରିଡ଼ାମୋଡ଼,(ମଣିପୁରା), ପୋଡ଼ପୋଡ଼ା ଶବର ସାହି, ଖୁଦୁପୁର, ପଦନପୁର, ପଦନପୁର ଶବର ସାହି, ବେଲପଡ଼ା, ବଡ଼ତୋଟା, ଚଟରା ଶବରସାହି, କେମାଦେଇ, ମୁକୁନ୍ଦପ୍ରସାଦ ଆଦି ୨୧ଟି ଗ୍ରାମକୁ ଉପରୋକ୍ତ ସ୍ୱେଚ୍ଛାସେବୀମାନେ ୨ ଥର ଯାଇ ବରୁଣେଇ ସଂରକ୍ଷଣ ସଂପର୍କରେ ଜନମତ ସଂଗ୍ରହ କରିଥିଲେ । ଏ ଗ୍ରାମମାନଙ୍କୁ ନେଇ ଏକ ସଂଗଠନ ଗଢ଼ିବା କଥା ଉଠିଥିଲା । ଜନମତ ହେଲା ଯେ ପ୍ରତ୍ୟେକ ୫/୬ଟି ଗ୍ରାମକୁ ନେଇ ଏକ ଏକ ଶୀର୍ଷ ଅନୁଷ୍ଠିତ ସଂଗଠନ କରି ଋରୋଟି ସଂଗଠନ କରାଯାଉ । ଉପରୋକ୍ତ ୪ଟି ସଂଗଠନକୁ ଯୋଡ଼ି ଏକ ଶୀର୍ଷ ଅନୁଷ୍ଠାନ ଗଢ଼ିବାର ଚିନ୍ତନ ରହିଲା ।

ପ୍ରଥମେ ଖୋରଧାର ଦକ୍ଷିଣରେ ଥିବା ମାଣ୍ଡୁସାହି(୧୬ ଘର), ଶିଆଳିଆ ପାଟଣା (୮୦ ଘର), ଶିଆଳିଆ ଶବରସାହି (୨୨ ଘର), ଶିଆଳିଆ ବରାଳ ସାହି(୧୮ ଘର) ବ୍ରହ୍ମପୁରା ଶବର ସାହି (୬୦ ଘର), ବ୍ରହ୍ମପୁରା ( ୨୭ ଘର) ଆଦି ୬ଟି ଗ୍ରାମରେ ଉଦ୍ୟମ କେନ୍ଦ୍ରିଭୂତ ହେଲା । ସେ ଗ୍ରାମମାନଙ୍କୁ ୬ ଥର ଗଲୁ । ଅପେକ୍ଷାକୃତ ଆର୍ôଥିକ ସ୍ୱଚ୍ଛଳ ଓ ଶିକ୍ଷିତ ଗାଁ ଶିଆଳିଆ ପାଟଣା ବ୍ୟତୀତ ଅନ୍ୟ ଗ୍ରାମମାନଙ୍କରେ ଆଖିଦୃଶିଆ ପ୍ରଭାବ ପଡ଼ିଲା ନାହିଁ । ବିଶେଷଭାବରେ ବ୍ରହ୍ମପୁରା ଶବର ସାହିର ନିଷ୍କ୍ରିୟତା ଆମକୁ ହତ୍‌ବାକ୍ କଲା । ଏହାର ଦୁଇଟି କାରଣ ଥିଲା । ଦାରିଦ୍ର୍ୟ, ବେକାରୀ ଓ ମଦ୍ୟପାନ । ଆଦିବାସୀମାନେ ଆଶଙ୍କା କରୁଥିଲେ ଯେ, ବନାନୀର ସୁରକ୍ଷା ହେଲେ ସେମାନଙ୍କର ଭେଳା ବୁଡ଼ିବ । ବରୁଣେଇରୁ ଗଛ କାଟି ତାକୁ ବଜାରରେ ବିକ୍ରିକରି ସେମାନେ ଗୁଜୁରାଣ ମେଣ୍ଟାଉଥିଲେ । ଜଙ୍ଗଲ ସଂରକ୍ଷଣ ହେଲେ, ସେମାନଙ୍କର ଜୀବିକାର ସାଧନର ବାଟ ବନ୍ଦ ହୋଇଯିବ । ଉପରୋକ୍ତ ୬ଟି ଗ୍ରାମର ଲୋକସଂଖ୍ୟା ୧୫୦୦ ଉପରେ । ପିଲାମାନେ ୩ କିମି ଦୂର ମାଇନର ଓ ହାଇସ୍କୁଲରେ ପଢ଼ିବାକୁ ଯାଉଥିଲେ । ଏଠାରେ ଏକ ମାଇନର ସ୍କୁଲର ଆବଶ୍ୟକତା ଅନୁଭବ କଲୁ । ଉକ୍ତ ଗ୍ରାମମାନଙ୍କୁ ୭ମ ଥର ପରିଦର୍ଶନ ଅବସରରେ ବରୁଣେଇ ସୁରକ୍ଷା ପାଇଁ ଏକ କାର୍ଯ୍ୟକାରୀ କମିଟି ଗଠନ ପାଇଁ ଏକ ବୈଠକ ଡ଼ାକିଥିଲୁ । ଆଶା କରିଥିଲୁ ଅନ୍ତତଃ ୧୦୦ଜଣ ଯୋଗଦେବେ । ଆସିଲେ ମାତ୍ର ୧୯ ଜଣ । ହତୋତ୍ସାହ ନହୋଇ ଶିଆଳିଆପାଟଣା ଯୁବବଂଧୁମାନଙ୍କୁ ସଂଗଠିତ କଲୁ । ଫେବୃଆରୀ ୭ ତାରିଖରେ ୩୦ ଜଣ ଯୁବକ ଆମ ସହିତ ନିମ୍ନଲିଖିତ ସ୍ଲୋଗାନମାନ ଦେଇ ଗ୍ରାମମାନଙ୍କୁ ପରିକ୍ରମା କଲୁ । ପଦଯାତ୍ରୀ ସଂଖ୍ୟା ୭୦କୁ ଟପିଲା । ଶିଆଳିଆ ଶବରସାହିର ୧୦ ଜଣ ମହିଳା ଏଥିରେ ଯୋଗଦେଇ ଆମର ଉତ୍ସାହ ବର୍ଦ୍ଧନ କଲେ ।

ପଦଯାତ୍ରା ଗ୍ରାମମାନଙ୍କରେ ଚହଳ ସୃଷ୍ଟିକଲା । ଗ୍ରାମବାସୀମାନେ ବରୁଣେଇ ସୁରକ୍ଷା ସଂପର୍କରେ ଚିନ୍ତା କରିବାପାଇଁ ଖୋରାକ ପାଇଲେ ।

ବରୁଣେଇ ଆମ ଜୀବନ ଭାଇ,
ତାହାର ବିନା ବଂଚିବା ନାହିଁ ।
ବରୁଣେଇ ଆମ ଜୀବନ ଧନ,
ଯୋଗାଏ ମାଟି, ପାଣି, ପବନ ।
ବରୁଣେଇ ଅଟେ ଆମ ସଂପଦ,
ତାକୁ ଲଣ୍ଡା କଲେ ଆସେ ବିପଦ ।
ବରୁଣେଇ କୁ ରକ୍ଷା କର,
ବର୍ଷା ହୋଇବ ଝରଝର ।
ବରୁଣେଇ ହୋଇଗଲେ ଶେଷ,
ହୋଇବ ନାହିଁ ଆଉ ଚାଷ ।
ବରୁଣେଇ ହେଲା ସଂପୂର୍ଣ୍ଣ ତଡ଼ା,
କେଉଁଥିରେ ଏବେ ହେବୁତୁ ପୋଡ଼ା ।

ପରିବେଶ ସଚେତନାତା ଦିଗରୁ ସବୁଠାରୁ ଦୁର୍ବଳ ଗ୍ରାମ ବ୍ରହ୍ମପୁରା । ବ୍ରହ୍ମପୁରା ଶବରସାହିରେ ସଭା ହେଲା । ସଭାରେ ଶିଆଳିଆ ପାଟଣାର ପ୍ରତିଶୃତିବଦ୍ଧ ଓ ଉତ୍ସାହୀ ଯୁବକ ଶ୍ରୀ ପ୍ରଶାନ୍ତ ହରିଚନ୍ଦନ ସଭାପତିତ୍ୱ କଲେ । ଗ୍ରାମବାସୀ ମାନଙ୍କ ସମ୍ମୁଖରେ ନିମ୍ନଲିଖିତ ବକ୍ତବ୍ୟ ରଖିଲୁ । "ଯୁଗ ଯୁଗ ଧରି ବରୁଣାଇର ଅନ୍ନରେ ଆମେ ପ୍ରତିପାଳିତ । କିନ୍ତୁ ତାକୁ ଉଲଗ୍ନ କରି ଆମ ମନ ଭରିନାହିଁଯେ, ତା ବକ୍ଷରେ ବସି ତା ସ୍ତନରୁ ଦୁଗ୍‌ଧପାନ କରିବାର ମରିଚିକା ପଛରେ ଆମେ ଧାଇଁଛୁ । ଆମେ ଜାଣିପାରୁ ନାହୁଁ ଯେ, ତା ବକ୍ଷରୁ ଆମେ ରକ୍ତପାନ କରିଚାଲିଛୁ । ଲେଡ଼ିଗୁଡ଼ କହୁଣୀକୁ ବୋହିଗଲାଣି ।ତେବେ ବି ଆମର ଚେତା ପଶୁନାହିଁ । ଖୋରଧା ଏକ ୫୦,୦୦୦ ଲୋକଙ୍କ ସହର । ଏହାର ବୁଦ୍ଧିଜୀବୀମାନେ ଜଡ଼ ଓ ଅଥର୍ବ ହୋଇ ବସିଛନ୍ତି । ଭାରତର୍ ମୂଖ୍ୟ ସମସ୍ୟା ହେଲା, ଏହାର ବୁଦ୍ଧିଜୀବୀମାନେ ସ୍ୱାର୍ଥାନ୍ଧ । ଦେଶ ବୁଡ଼ିଗଲେ ସେମାନେ ମଧ ଯେ ବୁଡ଼ିଯିବେ, ସେ କଥା ସେମାନଙ୍କ ମୁଣ୍ଡରେ ପଶେନାହିଁ । ଦିବାସ୍ୱପ୍ନ ଦେଖୁ ଥାନ୍ତି । ଆମେ ଜାଣିବା ଉଚିତ୍ ଯେ, ବର୍ତ୍ତମାନଠାରୁ ବରୁଣେଇ ର ସୁରକ୍ଷା ହେଲେ, ତାର ପୁନରୁଦ୍ଧାର ପାଇଁ ୫୦ ବର୍ଷ ଲାଗିବ । କାରଣ ଗୋଟିଏ ଗଛ ପରିପକ୍ୱ ହେବାକୁ ଅର୍ଦ୍ଧଶତାବ୍ଦୀ ଲଗେ । ବର୍ତ୍ତମାନ ବରୁଣେଇର ପୁନଃର୍ଜୀବନ କାଠିକର ପାଠ । କାରଣ ପାହାଡ଼ର ଅଧିକାଂଶ ଅଂଶ ଲଣ୍ଡା ହୋଇଯାଇଛି । ଗଛଥିଲେ, ଜଗାରଖା

କଲେ, ସେ ମଂଜିରୁ ଗଛ ଉଠନ୍ତା । ପୃଥିବୀର ସର୍ବାପେକ୍ଷା ବିକଶିତ ଦେଶମାନଙ୍କ ମଧ୍ୟରୁ ଅନ୍ୟତମ ଜାପାନରେ ଲଣ୍ଡା ପାହାଡ଼ରେ ଗଛ ଲଗାଇବାକୁ ଉଦ୍ୟମ ଚାଲିଛି । ଲଣ୍ଡାପାହାଡ଼ମାନଙ୍କରୁ ବର୍ଷାରେ ଅବକ୍ଷୟ ହୋଇ ଉପରମାଟି (ସରମାଟି) ଚାଲି ଯାଇଥିଲା । ଇଞ୍ଚେ ମାଟି ସୃଷ୍ଟି ହେବାକୁ ୬୦୦ ବର୍ଷ ଲାଗେ । ଅନ୍ୟ ଯାଗାରୁ ଉର୍ବରମାଟିନେଇ ପାହଡ଼ମାନଙ୍କ ଉପରେ ପକାଯାଇ ସେଥିରେ ମଂଜି ଲଗାଯାଉଛି ଓ ଚାରାରୋପଣ କରାଯାଉଛି । ପାହାଡ଼ ଉପରକୁ ପାଇପ୍‌ରେ ପାଣିନେଇ ଗଛ ମାନଙ୍କରେ ପାଣିଦିଆ ଯାଉଛି । ଭାରତ ଭଳି ଅଭାବୀ ଦେଶରେ ଏହା ଆକାଶ କୟାଁ ଚିଲିକା ମାଛ ।"

"ବର୍ତ୍ତମାନ ପୃଥିବୀର ଲୋକସଂଖ୍ୟା ୬୩୦ କୋଟି । ପରିବେଶ ବିଜ୍ଞାନୀମାନେ ହିସାବ କରିଛନ୍ତି ଯେ, ଲୋକସଂଖ୍ୟା ୩୫୦ କୋଟି ମଧ୍ୟରେ ସିମୀତ ରହିଲେ ପୃଥିବୀର ସମ୍ବଳ (ଅରଣ୍ୟ, ନଦୀ, ମାଟି, ଖଣି, ହ୍ରଦ, ସମୁଦ୍ର) ମଣିଷର ଆବଶ୍ୟକତାକୁ କୁଳେଇବ ।

ବରୁଣେଇର ସୁରକ୍ଷା ଆରମ୍ଭ ହେଲେ, ଗ୍ରାମମାନଙ୍କରେ ଅନ୍ତଃର୍ବିବାଦ ଓ ଗ୍ରାମ ଗ୍ରାମ ମଧ୍ୟରେ ବିବାଦର ପ୍ରତିଫଳନ ବନାନୀର ସୁକ୍ଷା ଉପରେ ପଡ଼ିବ । ସେ ବିବାଦର ସମାଧାନ ପାଇଁ, କୌଣସି ପରିସ୍ଥିତିରେ ପୋଲିସ୍ ଓ କୋର୍ଟର ଦ୍ୱାରସ୍ଥ ନ ହେବା ପାଇଁ ଆମମାନଙ୍କର ଦୃଷ୍ଟିକୋଣ ଲୋକଙ୍କ ଆଗରେ ଉପସ୍ଥାପନ କଲୁ ।

ଆଦିବାସୀମାନେ ତାଙ୍କର ଅଭାବ, ଅସୁବିଧା କଥା ଉତ୍‌ଥାପନ କରି କହିଲେ ଯେ, ବରୁଣେଇରୁ ଗଛ ନକାଟି ସେମାନେ ବଂଚିବେ କିପରି ? ସେମାନେ ଅଧିକାଂଶ ସର୍ବହରା । ସାମାନ୍ୟ କେତେକଙ୍କର ଅଳ୍ପ ଜମି ଅଛି ଓ କର୍ମ ନିଯୁକ୍ତିର ପନ୍ଥା ନାହିଁ । ଗଛକାଟି ତାକୁ ଜାଳେଣୀରୂପେ ବିକି ଜୀବିକା ନିର୍ବାହ କରନ୍ତି । ସେମାନେ ଅସହାୟ । ବିକଳ୍ପ କିଛି ନାହିଁ ।

ସଂପ୍ରତି ବିଶ୍ୱବ୍ୟାପି ଆରମ୍ଭ ହୋଇଥିବା ଉଦାରୀକରଣ ଓ ଜଗତୀକରଣ ଧ୍ୱନି ହେଉଛି ବାସ୍ତବରେ କେତେକାଂଶରେ, ଶିଳ୍ପୋନ୍ନତ ଓ ସମୃଦ୍ଧ ମୁଷ୍ଟିମେୟ ରାଷ୍ଟ୍ରର ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କୁ ଶୋଷଣ କରିବାର ଏକ ଯୋଜନାବଦ୍ଧ ଚକ୍ରାନ୍ତ । ଆମୋଦ ଓ ବିଳାସର ଅନ୍ଧ ଦୌଡ଼ରେ ସେମାନେ ନିଜ ଦେଶର ପ୍ରକୃତି ଓ ପରିବେଶକୁ ସମ୍ପୂର୍ଣ୍ଣ ବିଧ୍ୱସ୍ତ କରି ସୁଖରେ ପ୍ରମତ୍ତ ହୋଇ ଚାଲିଛନ୍ତି । ତୃତୀୟ ବିଶ୍ୱର ପ୍ରକୃତି ଉପରେ ସେମାନଙ୍କର ଲୋଲୁପ ଦୃଷ୍ଟି ନିବଦ୍ଧ ରହିଛି ।

ଜଗତୀ କରଣ ଦ୍ୱାରା ପ୍ରତିଯୋଗୀତା ବଢ଼ିଛି । ପଦାର୍ଥ ମାନଙ୍କର ଗୁଣାତ୍ମକମାନର ଅଭିବୃଦ୍ଧି ଘଟୁଛି ଓ ଆର୍ଥିକ ବିକାଶ ହେଉଛି । କିନ୍ତୁ କର୍ମନିଯୁକ୍ତିର

ପରିସର ସଂକୁଚିତ ହେବାରେ ଲାଗିଛି । ୟୁରୋପ ଓ ଯୁକ୍ତରାଷ୍ଟ୍ର ଆମେରିକାରେ ବେକାରୀ ଗଭୀର ଉଦ୍‌ବେଗ ସୃଷ୍ଟି କରୁଛି । ଜଗତୀକରଣର ପ୍ରଭାବ ଯୋଗୁଁ ଗ୍ରାମୀଣ ଯୁବକମାନେ ସହର, ନଗରମାନଙ୍କୁ କର୍ମନିଯୁକ୍ତ ଅନ୍ୱେଷଣରେ ଦୌଡୁଛନ୍ତି । ଗ୍ରାମୀଣ ଅର୍ଥନୀତିକ, ସାମାଜୀକ ଓ ସଂସ୍କୃତିକ ଜୀବନର ଅବକ୍ଷୟ ଘଟିବାରେ ଲାଗିଛି । ସହର,ନଗର, ମହାନଗର ଉପରେ ଲୋକଚାପ ଯୋଗୁଁ ଅସ୍ୱାସ୍ଥ୍ୟକର ଶ୍ୱାସରୁଦ୍ଧ ଅବସ୍ଥା ବଢ଼ିବାରେ ଲାଗିଛି । ସମାଜର ଓଲଟପାଲଟ ଚାଲିଛି ଓ ସନ୍ତୁଳନ ବ୍ୟାହତ ହେବାରେ ଲାଗିଛି । ବଜାର ଅର୍ଥନୀତି ସମାଜର ବିଭିନ୍ନ ଶ୍ରେଣୀକୁ ଅସମାନ ଆଘାତ ଦେବାରେ ଲାଗିଛି ତ ତା'ଫଳରେ ଗାଁ, ସହର, ବିଭିନ୍ନ ଶ୍ରେଣୀ ଓ ଅଞ୍ଚଳ ମଧ୍ୟରେ ଅସାମ୍ୟ ଓ ଶୋଷଣ ତୀବ୍ରତର ହେଉଛି । ବିକାଶଶୀଳ ଓ ବିକଶିତ ରାଷ୍ଟ୍ରମାନଙ୍କରେ ଦାରଦ୍ର୍ୟ ସୀମାରେଖାତଳେ ଥିବା ଲୋକଙ୍କର ସଂଖ୍ୟା ବଢ଼ିବାରେ ଲାଗିଛି ।

ଜାତିସଂଘର ତଥ୍ୟ କହେ ଯେ, ପୃଥିବୀ ପୃଷ୍ଠରୁ ୭୩୨ ପ୍ରକାର ମୂଲ୍ୟବାନ ବୃକ୍ଷଲତା ଗୁଳ୍ମ ନିଶ୍ଚିହ୍ନ ହେଲେଣି ଓ ପ୍ରଦୂଷଣ ଯେତେ ତୀବ୍ରତର ହୋଇ ଚାଲିଛି, ତା'ର ସମତାଳରେ ବୃକ୍ଷଲତାମାନ ଦୁଷ୍ପ୍ରାପ୍ୟ ହେବାରେ ଲାଗିଛନ୍ତି । ହୃଦରୋଗ, ମଧୁମେହ, ରକ୍ତଚାପ, ନିଦ୍ରାହୀନତା, ମସ୍ତିଷ୍କ ବିକୃତି ଭଳି ବ୍ୟାଧିର ନିରାମୟତାର ରହସ୍ୟ ଲୁଚି ରହିଛି, ଉଦ୍ଭିଦ ଜଗତରେ । ସେଥିପାଇଁ ଉଦାରୀକରଣ ପ୍ରକ୍ରିୟାରେ, ବୌଦ୍ଧିକ ସଂପତ୍ତି ଅଧିକାର ଆଳରେ, ବିକଶିତ ରାଷ୍ଟମାନେ ହଳଦୀ, ତୁଳସୀ, ନିମ୍ବ, ଅଁଳା, ଜାମୁ ଓ ବାସୁମତୀ ଚାଉଳ ଆଦି ବିଭିନ୍ନ ଦ୍ରବ୍ୟକୁ ଅକ୍ତିଆର କରିବା ଅପଚେଷ୍ଟାରେ ଅଛନ୍ତି ।

କେବଳ ଲୋକଶକ୍ତି ହିଁ ଜଙ୍ଗଲ,ଜମି, ଜଳସଂପଦ ରକ୍ଷା କରିପାରିବ । ଲୋକଶକ୍ତିର ବିକାଶ ପାଇଁ ସାମାଜିକ ସଂଚାଳନର ଆବଶ୍ୟକତା ଅପରିହାର୍ଯ୍ୟ । ସାମାଜିକ ସଂଚାଳନ ପାଇଁ ନେତୃତ୍ୱ ମୁଖ୍ୟ ଭୂମିକା ନିଭାଏ । ବରୁଣେଇ ଚତୁଃପାର୍ଶ୍ୱର ଆଞ୍ଚଳିକ ସକାରତ୍ମକ ନେତୃତ୍ୱ ବରୁଣେଇକୁ ଏ ଘୋର ଦୁର୍ଦ୍ଦିନ, ଦୁର୍ବିପାକ ଓ ବିପତ୍ତିରୁ ରକ୍ଷା କରିପାରିବ ।

# ଓଡ଼ିଶାର ଜଙ୍ଗଲ ସମ୍ପଦର ଭବିଷ୍ୟତ

*ନାରାୟଣ ହଜାରୀ*

*ସୁବାସ ଚନ୍ଦ୍ର ହଜାରୀ*

ଦିନ ଥିଲା ଓଡ଼ିଶା ଜଙ୍ଗଲ ସମ୍ପଦରେ ପୂର୍ଣ୍ଣ ଥିଲା । ଯେଉଁଆଡ଼େ ଗଲେ ନୀଳ ଅରଣ୍ୟର ଅପରୂପ ଶୋଭା ମନପ୍ରାଣ ହରି ନେଉଥିଲା । ସବୁଜ ବନରାଜି ମଧ୍ୟରେ ଝରଣାର କୁଳୁକୁଳୁ ନାଦ, ପଶୁମାନଙ୍କର କ୍ରୀଡ଼ା ଓ ପକ୍ଷୀମାନଙ୍କର କାକଳି ପ୍ରାଣରେ ଅପାର ଆନନ୍ଦ ଭରି ଦେଉଥିଲା । ଆଜି କିନ୍ତୁ ସେ ଅବସ୍ଥା ନାହିଁ । ଶୋଭାର ଭଣ୍ଡାର ଉତ୍କଳ ଆଜି ଶ୍ରୀହୀନ ହୋଇ ପଡ଼ିଛି । ଜଙ୍ଗଲର ଦ୍ରୁତ ଅବକ୍ଷୟ ଚାଲିଛି । ସ୍ଥଳଭାଗରେ ଏକ ତୃତୀୟାଂଶ ଜଙ୍ଗଲ ରହିବା ଆବଶ୍ୟକ । କିନ୍ତୁ ଓଡ଼ିଶାର ଆଉ ମାତ୍ର ଶତକଡ଼ା ୧୦ ଭାଗ ଜଙ୍ଗଲ ରହିଛି । ବଣପାହାଡର ସନ୍ତାନ, ସରଳ ନିରୀହ ଆଦିବାସୀ ଆଜି ମାତୃହରା, ଗୃହହୀନ ଓ କାଙ୍ଗାଳ ହୋଇ ଯାଇଛନ୍ତି । ଓଡ଼ିଶାର ଜନସଂଖ୍ୟାର ଶତକଡ଼ା ୨୨ ଭାଗ ଅ ।ଦିବାସୀ ଓ ୧୬ ଭାଗ ହରିଜନ । ଏମାନେ ଖାଦ୍ୟ ଓ ଜୀବିକା ପାଇଁ ଜଙ୍ଗଲ ଉପରେ ବିଶେଷ ନିର୍ଭର କରନ୍ତି । ଗ୍ରାମବାସୀ ଓଡ଼ିଶା ଜନସଂଖ୍ୟାର ଶତକଡ଼ା ୮୭ ଭାଗ । ସେମାନଙ୍କର ପ୍ରଧାନ ଜୀବିକା କୃଷି । କୃଷିର ସମୃଦ୍ଧି ଜଙ୍ଗଲ ସମ୍ପଦ ଉପରେ ବିଶେଷ ନିର୍ଭରଶୀଳ । ଅରଣ୍ୟ ସମ୍ପଦ ମାନବ ଜାତିର ସ୍ଥିତି ଓ ସମୃଦ୍ଧିର ରକ୍ଷାକବଚ ।

ଜଙ୍ଗଲ ପରିବେଶର ଏକ ବିଶେଷ ଅଂଶ । ପରିବେଶ ସଂରକ୍ଷଣ, ପର୍ଯ୍ୟାବରଣ(ଇକୋଲୋଜି)ର ଉନ୍ନତି,ବୃକ୍ଷରୋପଣ, ପରିବାର ନିୟନ୍ତ୍ରଣ, ଗ୍ରାମ୍ୟ ଶିଳ୍ପର ବିକାଶ, କୃଷିର ବିକାଶ, ଜଳସେଚନ, ଶିକ୍ଷା, ସ୍ୱାସ୍ଥ୍ୟସେବା, ନିଶା ନିବାରଣ, ଯୌତୁକ ପ୍ରଥାର ନିରାକରଣ, ମହିଳାମାନଙ୍କର ଅବସ୍ଥାର ଉନ୍ନତି, ଅସ୍ପୃଶ୍ୟତା ନିବାରଣ, ଥାନା ଓ କୋର୍ଟକୁ ନ ଯାଇ ଗ୍ରାମରେ ବିବାଦ ତୁଟାଇବା, ଅବସର ଗ୍ରହଣ ପରେ ନିଜନିଜ ଗ୍ରାମକୁ ଫେରିଆସି ଗ୍ରାମର ଉନ୍ନତିରେ ଗଠନ ମୂଳକ ଭୂମିକା ଗ୍ରହଣ କରିବା, ସରକାରୀ ସାହାଯ୍ୟ ଉପରେ ବିଶେଷ ନିର୍ଭର ନକରି ଗ୍ରାମବାସୀବୃନ୍ଦ ସ୍ୱକୀୟ ଉଦ୍ୟମରେ ଗ୍ରାମର ପ୍ରଗତି ପାଇଁ ପଦକ୍ଷେପ ନେବା ଆଦି ବିଶେଷ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ।'ବୃକ୍ଷ ଓ ଜୀବର ବନ୍ଧୁ' ଏକ ଅଣରାଜନୀତିକ ଅନୁଷ୍ଠାନ । ସମାଜର ସେବା ତଥା ଗଠନ ମୂଳକ ଦେଶ ନିର୍ମାଣ ଏହାର ଆଭିମୁଖ୍ୟ । ନିରବଚ୍ଛିନ୍ନ ବିକାଶ (ସଷ୍ଟେନ୍‌ଡ୍ ଡେଭ୍‌ଲପ୍‌ମେଣ୍ଟ)ର ବାର୍ତ୍ତା ଗ୍ରାମେ ଗ୍ରାମେ ପହଞ୍ଚାଇବାରେ ଲାଗିଛି । ପ୍ରକୃତି ସହ ସମନ୍ୱୟ ରକ୍ଷାକରି ବିକାଶ କରିବା ପାଇଁ ଆହ୍ୱାନ ଦେଉଛି । ଧ୍ୱଂସ ମୂଳକ ବିକାଶ

(ଡେଷ୍ଟ୍ରକ୍ଟିଭ୍ ଡେଭ୍‌ଲପ୍‌ମେଣ୍ଟ)ର ଭୟାବହ ପରିଣତି ପ୍ରତି ଲୋକମାନଙ୍କୁ ସଚେତନ କରାଯାଉଛି । ବିଶେଷ ଭାବରେ ପଦଯାତ୍ରା ମାଧ୍ୟମରେ ଏହା କରାଯାଉଛି ।

ଶହଶହ ଗ୍ରାମରେ ପଦଯାତ୍ରା କରାଯାଉଛି । ୧୯୮୯ ଡିସେମ୍ବର ଓ ୧୯୯୦ ଜାନୁଆରୀ ମାସରେ ଏହି ସଂସ୍ଥା ପକ୍ଷରୁ ୭୪ଟି ଗ୍ରାମରେ ଆଠଦିନ ଧରି ପଦଯାତ୍ରା କରାଯାଇଥିଲା । ପଦଯାତ୍ରାରେ ୧୦ ଜଣ ସ୍ୱେଚ୍ଛାସେବୀ ଯୋଗ ଦେଇଥିଲେ । ୧୯୮୯ ଡିସେମ୍ବର ୩୦,୩୧ ଓ ୧୯୯୦ ଜାନୁଆରୀ ୧ରେ ନୂଆଗାଁ ବ୍ଲକର ୨୧ଟି ଗ୍ରାମ - ଲୁଣିସରା, ମାନାଗଡ଼ିଆ, ବେଲବଣି, ରଗଡ଼ିମଡ଼ା, ଟୁଣିଆପଡ଼ା, ଗୁଲୁରାବାଡି, ରକ୍ତପାଟା, ରାତରଘା, ମହିତମା, କୋରଡା, ଆଛୁପଡ଼ା, ଅନ୍ଧାରକଣି, ବରଡା ଖମଣ, କୃଷ୍ଣପ୍ରସାଦ, ସକ୍ରିନା, ଗେଇମୁହାଁ, ବଡ଼ବାରଣ, ଡୁମୁଡୁମା, ଚାଞ୍ଚରାପଲ୍ଲୀ, ଜଗନ୍ନାଥ ପ୍ରସାଦ ଓ ସୋରଡାରେ ପଦଯାତ୍ରା କରାଯାଇଥିଲା । ଜାନୁଆରୀ ୬, ୭, ୮ରେ ରଣପୁର ବୋଲଗଡ଼ର ୩୨ଟି ଗ୍ରାମ - ଶ୍ୟାମଘନପୁର, କାଳିଆମୂଳି, ଜାମୁସାହି, ଗୋପାଳପୁର ସାନ କାଉତରା, ବଡ କାଉତରା, କଳାମାଟିଆ, ଦିଘିରି, ଭିମପଡ଼ା, ଟାଙ୍ଗିସାହି, କୋଟପଲ୍ଲୀ, କୂଶପଲ୍ଲୀ, ଗୋଠ ଗୋପାଳିଆ, ପାକାଳ ସାହି, ମର୍ଦ୍ଦାବାଡ଼ି, ଠଣାପଲ୍ଲୀ, ପାଟଣା, ଜାମୁସାହି, ବଳଭଦ୍ର ପାଟଣା, କଣ୍ଡରାଗାଡ଼ିଆ, ଗଉଡିଆ ପଡ଼ା, କାଶନ୍ଦ, ସୁରୁକା ବାଡ଼ା, ବୋଲଗଡ, ନନ୍ଦପଲୀ, ବରହମପୁରା ଓ ଜାମୁସାହିରେ ପଦଯାତ୍ରା କରାଯାଇଥିଲା ।

ଜାନୁଆରୀ ୧୪ ଓ ୧୫ରେ ବୋଲଗଡ଼ ବ୍ଲକରେ ୨୧ଟି ଗ୍ରାମରେ ପଦଯାତ୍ରା ହୋଇଥିଲା । ଲେଖକ ପଦଯାତ୍ରାରେ ଯୋଗଦେଇଥିଲେ । ଜାନୁଆରୀ ୧୩ରେ ଲେଖକ ବାଣୀବିହାରରୁ ଅପରାହଣ ୨ଟା ବେଳେ ବାହାରି ୫ଟାରେ ବୋଲଗଡ଼ଠାରେ ପହଞ୍ଚିଥିଲା । ବୋଲଗଡ଼ରେ ପହଞ୍ଚିଲା ବେଳକୁ ଲେଖକ କ୍ଷୁଧାରେ ଅତିଷ୍ଠ ହୋଇଯାଇଥିଲା । ଗୋଟିଏ ଦୋକାନରେ ବରା ଓ ମଟର ତରକାରୀ ଦେଖି ତହା ଖାଇବାର ଲୋଭ ସମ୍ବରଣ କରିପାରିଲା ନାହିଁ । ସେ ଜାଣିଥିଲା ଯେ ଖାଦ୍ୟରେ ମାଛି ବସିଥିବେ । ବୋଲଗଡ଼ରୁ ଯାଇ ଖଙ୍ଗୁରିଆ ଗ୍ରାମରେ ପହଞ୍ଚିଲା । ରାତିରେ ପାଣିଆ ଝାଡ଼ା ହେବାକୁ ଲାଗିଲା । ସକାଳେ ଗ୍ରାମବାସୀ କହିଲେ ଯେ, ଲେମ୍ବୁ(ଚୋପା ଓ ମଞ୍ଜି ସହିତ)ରେ ଲୁଣ ଦେଇ ବାଟି, ତାକୁ ଦିନକୁ ସକାଳ ବେଳା ଓ ସଂଧ୍ୟାବେଳେ ଦୁଇଥର ପିଅନ୍ତୁ । ୧୪ ତାରିଖ ସକାଳେ ଏକ ଗ୍ଲାସ ଲେମ୍ବୁ, ଲୁଣ ସର୍ବତ ପିଇ ଲେଖକ ପଦଯାତ୍ରୀ ଦଳଙ୍କ ସହ ଚାଲିଲା । ଦିନସାରା ବର୍ଷା ଚାଲିଥାଏ । ଦିନକୁ ୭ ଥର ଲେଖକକୁ ଝାଡ଼ା ହେଉଥାଏ । ୧୫ ତାରିଖ ଦିନସାରା ବର୍ଷା ଚାଲିଥାଏ । ଲେଖକକୁ ପୂର୍ବଦିନ ପରି ଝାଡ଼ା ହେଉଥାଏ । ଲେଖକ ସେଦିନ ମଧ୍ୟ ସକାଳେ ଓ ସଂଧ୍ୟାରେ ଲେମ୍ବୁ, ଲୁଣ ସର୍ବତ ପିଇଥିଲା । ସେଥିରେ ଲେଖକର ଝାଡା ବନ୍ଦ

ହୋଇଯାଇଥିଲା । ଗ୍ରାମବାସୀଙ୍କର ଆୟୁର୍ବେଦ ବିଷୟରେ ଜ୍ଞାନ ଲେଖକଙ୍କୁ ବିସ୍ମୟାଭୂତ କରିଥିଲା । ଆଲୋପାଥିକ୍ ଔଷଧର ପ୍ରସାର ଯୋଗୁ ଓ ଆୟୁର୍ବେଦ ପ୍ରତି ବିଶ୍ୱାସ ଅଭାବ ଯୋଗୁ, ଗ୍ରାମବାସୀମାନେ ଚିରାଚରିତ ଔଷଧୀୟ ଜ୍ଞାନ କୌଶଳ ହରାଉଛନ୍ତି । ଆଲେପାଥି ଔଷଧର ପାର୍ଶ୍ୱ ପ୍ରତିକ୍ରିୟାର ଲୋକମାନେ ଶିକାର ହେଉଛନ୍ତି ଓ ଖର୍ଚ୍ଚାନ୍ତ ହେଉଛନ୍ତି । ଆୟର୍ବେଦର ପ୍ରସାର ଅପରିହାର୍ଯ୍ୟ ହୋଇପଡ଼ିଛି ।ଜାନୁଆରୀ ୧୪ ଓ ୧୫ ତାରିଖରେ ବୋଲଗଡ଼ ବ୍ଲକର ୨୧ଟି ଗ୍ରାମରେ ପଦଯାତ୍ରା ହୋଇଥିଲା । ଗ୍ରାମଗୁଡ଼ିକ ହେଲା - ଖଙ୍ଗୁରିଆ, କୋଡାପଡା, ଗବଡିହ, ହରିପୁର ଶାସନ, ହରିପୁର ସଅର ସାହି, ଅରଖ ପଲ୍ଲୀ, ରାମ ସୁବୁଦ୍ଧି ପାଟଣା, ଅସନପଲୀ, କୋଟପଡ଼ା, ଖଲିକୋଟ, ଖଲିକୋଟ ସଅର ସାହି, ହରିକେଶର, ଗର୍ଭିଣୀ ପଡ଼ା, ଧଳାପଥର, କରିପଡ଼ା, ପୋଡାପାଟଣା, ଗୋଡାଳି, ହାଟ ବସ୍ତ, ବଙ୍କୋଇ, ବଡକୁମାରୀ ଓ ସାନକୁମାରୀ ଗ୍ରାମ । ପଦଯାତ୍ରୀବୃନ୍ଦ ନିମ୍ନଲିଖିତ ସଂଗୀତ ଗାନକରି ଗ୍ରାମରୁ ଗ୍ରାମ ଅତିକ୍ରମ କରୁଥିଲେ ।

"ଗଛକୁ ଫୋପାଡ଼ିଲେ ଟେକା,
ପାଚିଲା ଫଳ ଦିଏ ଏକା ।
ବୃକ୍ଷ ଛାୟାରେ ଆମେ ରହି,
ତାହାକୁ କାଟୁ ଅନ୍ଧ ହୋଇ ।
ତଥାପି ବୃକ୍ଷ ହୁଏ ସାହା,
କୃତଘ୍ନ ନରେ କରେ ଦୟା ।
ପରୋପକାର ତାର ଧର୍ମ,
ପରାର୍ଥେ ଧରିଛି ଜୀବନ ।"

ଲୋକମାନଙ୍କୁ ବୁଝାଇଥିଲା ଯେ ପୃଥିବୀ ବକ୍ଷରେ ଦୁଇ ପ୍ରକାର ସମ୍ପଦ ରହିଛି, ଗୋଟିଏ ହେଉଛି - ଯେଉଁ ସମ୍ପଦର ବିନିଯୋଗ ପରେ ଆଉ ତାର ପୁନରୁଦ୍ଧାର କରାଯାଇ ପାରିବ ନାହିଁ - ଯଥା, ଧାତୁ ସମୂହ ଓ ଜଳେଣି (କୋଇଲା, ପେଟ୍ରୋଲ, ଗ୍ୟାସ୍ ) । ଅନ୍ୟଟି ହେଉଛି - ଯେଉଁ, ସମ୍ପଦର ବିନିଯୋଗ ପରେ ତାର ପୁନରୁଦ୍ଧାର କରାଯାଇପାରିବ - ଯଥା ଜଙ୍ଗଲ, ଚରଣ ଭୂମି, ଚାଷ ଜମି ଓ ସମୁଦ୍ର, କିନ୍ତୁ ଏହି ସମ୍ପଦ ଗୁଡ଼ିକର ଅତ୍ୟାଧିକ ବ୍ୟବହାର ହେଲେ ତାର ଆଉ ପୁନରୁଦ୍ଧାର ହୋଇ ପାରିବ ନାହିଁ । ଭାରତର ଅଧିକାଂଶ ମାଟି ଓ ପଥର ଗଦାରେ ପରିଣତ ହୋଇଛି । ସେଥିରେ ଘାସଟିଏ ମଧ୍ୟ କଅଁଳୁ ନାହିଁ । ସେଥିରେ ଗଛ ଲଗାଇ ପୁଣି ଜଙ୍ଗଲ ସୃଷ୍ଟି କରିବା ଏକ ଅତ୍ୟନ୍ତ ବ୍ୟୟ ବହୁଳ ଓ ସମୟସାପେକ୍ଷ ବ୍ୟାପାର । ପୃଥିବୀର ସବୁଠାରୁ ଉନ୍ନତ ଦେଶ ଜାପାନରେ ଲଣ୍ଡା ପାହାଡ଼ ମାନଙ୍କରେ ଗଛ ଲଗା ଯାଉଛି । ସରମାଟି ଚାଲି ଯାଇଥିବାରୁ ତଳୁ ସରମାଟି ନେଇ

ପାହାଡ଼ମାନଙ୍କ ଉପରେ ପକା ଯାଉଛି । ତଳୁ ପାହାଡ଼ ଉପରକୁ ପାଇପ ସାହାଯ୍ୟରେ ପାଣି ନିଆଯାଇ ଗଛ ବଞ୍ଚା ଯାଉଛି । ଏହା ଏତେ ବ୍ୟୟ ବହୁଳ ଯେ, ଭାରତପରି ଗରିବ ଦେଶରେ କରିବା ଅସମ୍ଭବ । ତେଣୁ ପଦଯାତ୍ରୀ ଦଳ ଗୋଟିଏ କଥା ଉପରେ ବାରମ୍ବାର ଗୁରୁତ୍ୱ ଦେଉଥିଲେ । ମୂଳ ଥାଉ ଥାଉ ଜଙ୍ଗଲ ସଂରକ୍ଷଣ କର । ଆଉ ଗୋଟିଏ କଥା ଉପରେ ମଧ୍ୟ ଗୁରୁତ୍ୱ ଦେଉଥିଲେ । ସ୍ୱାଧୀନତା ପୂର୍ବରୁ ଜଙ୍ଗଲରେ ଯେଉଁ ୨୨ ଗଛ (ଶାଳ, ପିଆଶାଳ, ଶିଶୁ, କେନ୍ଦୁ, ଫାରି, ସିମିଳି, ଆମ୍ବ, ପଣସ, ହରିଡ଼ା, ବାହାଡ଼ା, ଜାମୁକୋଳି ଆଦି) ଗଛଥିଲା, ତାହା ନକାଟି ଜଙ୍ଗଲରୁ ଅନ୍ୟ ଗଛ କାଟି ଜାଳେଣିର ଆବଶ୍ୟକତା ମେଣ୍ଟାଇବା ଉଚିତ ।

ପୁଣ୍ୟଶ୍ଳୋକା ଅମୃତ ଦେବୀଙ୍କ ଅମର କାହାଣୀ ଗ୍ରାମ ସଭା ମାନଙ୍କରେ ବର୍ଣ୍ଣନା କରାଯାଇଥିଲା । ଆଜକୁ ୨୫୧ ବର୍ଷ ତଳେ ରାଜସ୍ଥାନର ଯୋଧପୁର ରାଜ୍ୟରେ ଅଭୟ ସିଂ ମହାରାଜା ଥିଲେ । ସେ ଏକ ନୂଆ ରାଜା ପ୍ରସାଦ ତୋଳିବାକୁ ସ୍ଥିର କଲେ । ତେଣୁ ତାଙ୍କର ଜନୈକ କର୍ମଚାରୀ ଗିରିଧର ଦାସ ଭଣ୍ଡାରୀଙ୍କ ନେତୃତ୍ୱରେ କେତେକ ଲୋକଙ୍କୁ ଜଙ୍ଗଲକୁ କାଠ ଆଣିବା ପାଇଁ ପଠାଇଲେ । ଗଛ କଟାଳିମାନେ ବିଷ୍ଣୋଇ ଗ୍ରାମରେ ପହଞ୍ଚିଲେ । ଏହି ଗ୍ରାମ ତରୁଲତାରେ ପୂର୍ଣ୍ଣ ଥିଲା । ଭଣ୍ଡାରୀ ଗଛଗୁଡ଼ିକ କାଟିବାକୁ ଆଦେଶ ଦେଲେ । ଗଛ କଟାଳୀମାନେ ଆଗେଇ ଆସୁଥିବା ଦେଖି, ଉପରୋକ୍ତ ଗ୍ରାମର ଅମୃତ ଦେବୀ ସେ ସ୍ଥାନକୁ ଧାଇଁ ଯାଇଥିଲେ ଓ ଗଛଗୁଡ଼ିକ ନ କାଟିବାକୁ ଅନୁରୋଧ କରିଥିଲେ । ରାଜାଙ୍କର ଲୋକମାନେ ଏଥିପ୍ରତି କର୍ଣ୍ଣପାତ କଲେ ନାହିଁ । ଯେଉଁ ଗଛଟିକୁ ପ୍ରଥମେ କଟାଯିବ ବୋଲି ଚିହ୍ନ ଦିଆଯାଇଥିଲା, ଅମୃତାଦେବୀ ସେ ଗଛଟିକୁ କୁଣ୍ଢାଇ ଧରିଥିଲେ । ସେ ମୁହୂର୍ତ୍ତରେ ସେ ଗୋଟିଏ କଥା କହିଥିଲେ ଯାହା ଆଜିପର୍ଯ୍ୟନ୍ତ ସେ ଅଞ୍ଚଳରେ ସର୍ବଜନବିଦିତ । ତାହା ହେଉଛି -

"କଟାଗଛ ଠାରୁ କଟାମୁଣ୍ଡ,
ସୁଲଭ ଅଟେରେ ମାନବ" ।

ଗଛ କଟାଳିମାନେ ତାଙ୍କୁ କୁରାଢ଼ିରେ ହାଣି ପକାଇଥିଲେ । ସେ ନିଜ ଜୀବନକୁ ଉତ୍ସର୍ଗ କଲାପରେ ତାଙ୍କର ଝିଅ ଆସି ଗଛକୁ ଜାବୁଡ଼ି ଧରିଥିଲେ । ସେମାନଙ୍କୁ ମଧ୍ୟ ନିର୍ଦ୍ଦୟ ଭାବେ ହତ୍ୟା କରାଯାଇଥିଲା । ଭଣ୍ଡାରୀ ଘଟଣା ସ୍ଥଳରୁ ଫେରିଯାଇ ଅଧିକ ଲୋକଙ୍କୁ ଧରି ପହଞ୍ଚିଲେ । ଏ କଥା ପାଖ ପଡ଼ିଶା ୮୪ଟି ଗ୍ରାମରେ ପ୍ରଚାରିତ ହୋଇଯାଇଥିଲା । କେବଳ ଗୋଟିଏ ଗ୍ରାମକୁ ଛାଡ଼ି ସମସ୍ତେ ଜଙ୍ଗଲ ରକ୍ଷା କରିବାକୁ ଆଗେଇ ଆସିଲେ । ସେମାନେ ଭଣ୍ଡାରୀଙ୍କ ଲୋକମାନଙ୍କୁ ପ୍ରତିରୋଧ କରିଥିଲେ ।

ଫଳରେ ଅନେକ ଲୋକ ନିଶ୍ଚିହ୍ନ ହୋଇ ଯାଇଥିଲେ । ମହାରାଜା ଏ ମର୍ମନ୍ତୁଦ ଘଟଣା ଶୁଣିବା ପରେ ରାଜ ପ୍ରାସାଦ ନିର୍ମାଣ ବନ୍ଦ କରିଥିଲେ । ସେ ଗ୍ରାମବାସୀଙ୍କୁ ପ୍ରତିଶ୍ରୁତି ଦେଇଥିଲେ ଯେ ସେମାନଙ୍କ ଗ୍ରାମମାନଙ୍କର ଜଙ୍ଗଲରୁ କଦାପି ଗଛ କଟା ଯିବ ନାହିଁ । ଯେଉଁ ଠାରେ ଅମୃତ ଦେବୀ ଶହୀଦ ହୋଇଥିଲେ ସେ ସ୍ଥାନରେ ଏ ପର୍ଯ୍ୟନ୍ତ ଏକ ମେଳା ଅନୁଷ୍ଠିତ ହେଉଛି । ଏକ କିମ୍ବଦନ୍ତି ଅଛି ଯେ, ଯେଉଁଠାରେ ଅମୃତ ଦେବୀଙ୍କର ରକ୍ତ ପଡ଼ିଥିଲା ସେଠାରେ ଘାସଟିଏ ମଧ୍ୟ କଅଁଳେ ନାହିଁ ।

ଜଙ୍ଗଲରୁ ଗଛ କାଟି, କାଠ ବିକ୍ରିକରି କେତେକ ଲୋକ ଓ ସରକାର ଆୟର ପନ୍ଥା ସୁଗମ କରିଛନ୍ତି । ଏହାକୁ ଆୟର ଏକ ପନ୍ଥା ରୂପେ ନ ଧରିବାକୁ ପଦଯାତ୍ରୀଦଳ ଲୋକମାନଙ୍କୁ ବୁଝାଇଥିଲେ । ଗଛର ପରିବେଶୀୟ ମୂଲ୍ୟ ଯେ ଆର୍ଥିକ ମୂଲ୍ୟଠାରୁ ଯଥେଷ୍ଟ ଅଧିକ ତାହା ଲୋକେ ଓ ସରକାର ବୁଝିବା ଉଚିତ ।

ଭାରତର ୭୬ ଭାଗ ଲୋକ ଗ୍ରାମରେ ବାସ କରନ୍ତି । କୃଷି ସେମାନଙ୍କର ପ୍ରଧାନ ଜୀବିକା । ଜଙ୍ଗଲ ନୀତି କୃଷିର ସହାୟକ ଓ ପରିପୂରକ ହେବା ବାଞ୍ଛନୀୟ । କିନ୍ତୁ ଏହାର ଓଲଟା ନୀତି ଅନୁସୃତ ହେଉଛି । ଫଳରେ ୧୯୦୦ ରୁ ୧୯୫୦ ମସିହା ମଧ୍ୟରେ ଓଡ଼ିଶାର ବାର୍ଷିକ ବୃଷ୍ଟିର ହାର ୬୦ ଇଞ୍ଚ ଥିଲାବେଳେ ୧୯୫୧ରୁ ୧୯୮୮ ମଧ୍ୟରେ ବାର୍ଷିକ ବୃଷ୍ଟିର ହାର ୫୨ ଇଞ୍ଚକୁ ଖସି ଆସିଛି । ଜଙ୍ଗଲ ଯେଉଁ ଗତିରେ ଧ୍ୱଂସ ହେଉଚି, ଆଉ ୪୦ ବର୍ଷ ପରେ ବାର୍ଷିକ ବୃଷ୍ଟିର ହାର ୪୦ ଇଞ୍ଚକୁ ଖସି ଆସିବାର ଆଶଙ୍କା ରହିଛି । ଏ ପରିସ୍ଥିତି ଆସିଲେ, ଓଡ଼ିଶାରେ ଆଉ ଧାନଚାଷ ହୋଇ ପାରିବ ନାହିଁ ।

ସାରାଦେଶରେ ପ୍ରକୃତିପ୍ରେମୀ ଓ ପରିବେଶ ବିଜ୍ଞାନୀମାନେ ନିରବଚ୍ଛିନ୍ନ ବିକାଶର ସୂତ୍ର ଉପରେ ଏକ ବିଚାରଶୀଳ ଜାତୀୟ ଜଙ୍ଗଲ ନୀତି ଅନୁସୃତ ହେବା ପାଇଁ ସ୍ୱର ଉତ୍ତୋଳନ କରିଛନ୍ତି । ଜଙ୍ଗଲ ଉପରେ ଜନ ସାଧାରଣଙ୍କର କର୍ତ୍ତୃତ୍ୱ ରହିବା ଉଚିତ । ପ୍ରାଚୀନ କାଳରୁ ଭାରତରେ ଜଙ୍ଗଲ ଲୋକମାନଙ୍କର କର୍ତ୍ତୃତ୍ୱ ଓ ନିୟନ୍ତ୍ରଣରେ ରହିଥିଲା । ୧୮୮୭ ମସିହାରୁ ବ୍ରିଟିଶ ସରକାର ଜଙ୍ଗଲ ଉପରେ ସରକାରଙ୍କର କର୍ତ୍ତୃତ୍ୱ ଘୋଷଣା କଲେ । ତାପରେ ଲୋକମାନେ ଭାବିଲେ ଯେ ଜଙ୍ଗଲ ସେମାନଙ୍କର ନୁହେଁ ଜଙ୍ଗଲ ଓ ଲୋକମାନଙ୍କ ମଧ୍ୟରେ ବିରୁଦ୍ଧଭାବ (ଆଲିଏନେସନ୍) ଆସିଗଲା । ଜଙ୍ଗଲ ଉପରେ ଲୋକମାନଙ୍କର କର୍ତ୍ତୃତ୍ୱ ପୁନଃ ପ୍ରତିଷ୍ଠିତ ହେଲେ ସେମାନେ ଜଙ୍ଗଲର ସୁରକ୍ଷା ପାଇଁ ମନ ବଳାଇବାର ସମ୍ଭାବନା ରହିଛି ।

ଉପରୋକ୍ତ ଗ୍ରାମମାନଙ୍କରେ ପଦଯାତ୍ରାବେଳେ ଦେଖା ଯାଇଥିଲା ଯେ,

ଜାଳେଣି ସମସ୍ୟା ଉତ୍କଟ ଆକର ଧାରଣ କରିଛି । ଲୋକମାନେ ନଡା, ଆଖୁଛେଦା, ଓ ଶୁଖିଲା ପତ୍ର ଜାଳେଣି ରୂପେ ବହୁବର୍ଷ ହେଲା ବ୍ୟବହାର କରୁଛନ୍ତି । ଅନେକ ଛୋଟ ଛୋଟ ପିଲା ସ୍କୁଲକୁ ନ ଯାଇ ଶୁଖିଲା ପତ୍ର, କାଠ, କୁଟା ଗୋଟାଇବାରେ ଦିନର ଅନେକ ସମୟ ବ୍ୟୟ କରୁଛନ୍ତି । ଗ୍ରାମ ସୀମା ଭିତରେ ଗଛ ଲଗାଇବା ଓ ଜଙ୍ଗଲ ସୁରକ୍ଷା କରିବା ପାଇଁ ସାମୂହିକ ଉଦ୍ୟମ ଅତ୍ୟନ୍ତ କ୍ଷୀଣ । ଜଙ୍ଗଲ ସୁରକ୍ଷା ପାଇଁ କାଁ ଭାଁ ଉଦ୍ୟମ ହେଉଛି । ଗ୍ରାମଗୁଡ଼ିକରେ ଏକତା ନ ଥିବାରୁ ଓ ପାର୍ଶ୍ଵବର୍ତ୍ତୀ ଗ୍ରାମମାନଙ୍କ ମଧ୍ୟରେ ଯୋଗସୂତ୍ର ଓ ସହଯୋଗର ଅଭାବରୁ ତାହା ସଫଳ ହୋଇ ପାରୁନାହିଁ । ଗ୍ରାମମାନଙ୍କରେ ଗୋଷ୍ଠୀ ଜୀବନ ଓ ଗୋଷ୍ଠି କାର୍ଯ୍ୟକଳାପ (ସୋସାଲ ଆକ୍‌ସନ୍) ଦୁର୍ବଳ ହୋଇ ଯାଇଛି । ଗ୍ରାମମାନଙ୍କରେ ସାମାଜିକ ସଂହତି ନାହିଁ । ସାମାଜିକ ସଂହତି ସାମାଜିକ ସଂଗଠନରୁ ଉଦ୍ଭୂତ । ସାମାଜିକ ସଂଗଠନ ସାମାଜିକ ଚେତନାରୁ ସମ୍ଭୁତ । ସାମାଜିକ ସଂହତିରୁ ରାଜନୀତିକ ସଂଗଠନ ଓ ରାଜନୀତିକ ଅନୁଷ୍ଠାନର ଜନ୍ମ । ରାଜନୀତିକ ପ୍ରକ୍ରିୟାରେ ଲୋକମାନଙ୍କ ଅଂଶ ଗ୍ରହଣ ଦ୍ଵାରା ରାଜନୀତିକ ସଂଗଠନ ଗଢ଼ି ଉଠେ । ଏହା ଫଳରେ ରାଜନୀତିକ ସଂକଳ୍ପ ଦୃଢ଼ୀଭୂତ ହୁଏ । ରାଜନୀତିକ ସଂକଳ୍ପରୁ ଅର୍ଥନୀତିକ ବିକାଶ ହୁଏ ।।

ଗ୍ରାମମାନଙ୍କରେ ଜଙ୍ଗଲ ସୁରକ୍ଷା ପାଇଁ ଜନଚେତନା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଜନ ସଂଗଠନର ଆବଶ୍ୟକତା ରହିଛି । ସରକାର ରାଜନୀତିକ ଦଳ ବା ଗ୍ରାମବାସୀ ଏହି କାର୍ଯ୍ୟ କରିପାରି ନାହାନ୍ତି । ସରକାରୀ କର୍ମଚାରୀମାନଙ୍କର ଜଙ୍ଗଲ ସୁରକ୍ଷା ଓ ବୃକ୍ଷ ରୋପଣ ଉଦ୍ୟମ କାଁ ଭାଁ ସଫଳ ହୋଇଛି । ରାଜନୀତିକ ଦଳମାନେ ନିଜର ସଂକୀର୍ଣ୍ଣ ସ୍ଵାର୍ଥସିଦ୍ଧି ପାଇଁ ଗ୍ରାମମାନଙ୍କୁ ଭାଗ ଭାଗ କରିବାରେ ଲାଗିଛନ୍ତି । ଗ୍ରାମର ବିବଦମାନ ଗୋଷ୍ଠି ସେମାନଙ୍କର ଭୋଟବ୍ୟାଙ୍କ୍ ହେଉଛନ୍ତି । ଗ୍ରାମବାସୀମାନେ ଥରେ ରାଜନୀତିକ ଯନ୍ତା ଭିତରେ ପଶିଗଲାପରେ ବାହାରକୁ ଆସିବାର ବାଟ ପାଉ ନାହାନ୍ତି ।

ଅଧିକାଂଶ ଗ୍ରାମରେ ଗ୍ରାମ ବିବାଦ ଗ୍ରାମରେ ନ ତୁଟି ହାଟରେ ପଡ଼ି ଦାଣ୍ଡରେ ଗଡୁଛି । ଥାନା ଓ କୋର୍ଟକୁ କେସ୍ ନେଇ ଗ୍ରାମବାସୀ ନିଜର କଷ୍ଟୋପାର୍ଜିତ ଧନକୁ ପରକୁ ଦେଇ ସର୍ବସ୍ଵାନ୍ତ ହେଉଛନ୍ତି । ଗ୍ରାମର ପୋଖରୀ, ଗାଡ଼ିଆ ଖୋଳି ଜଳସେଚନ ବ୍ୟବସ୍ଥାର ଦୃଢ଼ୀକରଣ ପାଇଁ ଉଦ୍ୟମ ନାହିଁ । ଯେଉଁଠାରେ ମାଛ ଚାଷ ହେଉଛି, ଗ୍ରାମବାସୀମାନେ ଭାଗ ବାଣ୍ଟି ମାଛ ଖାଉଛନ୍ତି । ମାଛ ଚାଷରୁ ଲବ୍ଧ ଧନ ଗ୍ରାମ ପୁଷ୍କରିଣୀର ପୁନରୁଦ୍ଧାର ଓ ଅନ୍ୟାନ୍ୟ ଉନ୍ନତିମୂଳକ କାର୍ଯ୍ୟରେ ବିନିଯୋଗ କରିବାର ପ୍ରୟାସ ନାହିଁ । ଓଡ଼ିଶାର ପ୍ରାୟ ୧୬ଟି ଲେଖାଏଁ ଗ୍ରାମ ପାଇଁ ଗୋଟିଏ ପଞ୍ଚାୟତ

ରହିଛି । ପ୍ରତି ଗ୍ରାମରେ ପଞ୍ଚାୟତ ଗଠନ କରିବା ଅତ୍ୟନ୍ତ ଜରୁରୀ ହୋଇ ପଡ଼ିଛି । ଗ୍ରାମମାନଙ୍କରେ ସାମାଜିକ ସଂହତି ରାଜନୀତିକ ସଂଗଠନର ଭିତ୍ତି ଦୃଢ଼ ହେଲେ ଅର୍ଥନୀତିକ ବିକାଶ ପଥ ଉନ୍ମୁକ୍ତ ଓ ସୁଗମ ହେବ ।

ଗ୍ରାମମାନଙ୍କରେ ସାମାଜିକ ସଂହତି ପାଇଁ ମାନବିକ, ନୈତିକ ଓ ଆଧ୍ୟାତ୍ମିକ ମୂଲ୍ୟ ବୋଧର ଦୃଢ଼ୀକରଣ ଆବଶ୍ୟକ । ନୈତିକ ମୂଲ୍ୟବୋଧର ଦ୍ରୁତ ଅବକ୍ଷୟ ଓ ଅଧୋପତନ ହେଉଥିବାବେଳେ, ଗ୍ରାମର ସାମାଜିକ ସଂହତି, ରାଜନୀତିକ ସଂଗଠନ ଓ ଅର୍ଥନୀତିକ ବିକାଶ ଆଶ କରିବା ବିଡ଼ମ୍ବନା ମାତ୍ର ।

ଏହି ପରିପ୍ରେକ୍ଷୀରେ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । କିନ୍ତୁ ଆଧୁନିକ ସଭ୍ୟତା ଯେତେବେଳେ ବସ୍ତୁବାଦିତା ଓ ସ୍ୱାର୍ଥପରତା ଉପରେ ପର୍ଯ୍ୟବେସିତ, ସେତେବେଳେ ନିସ୍ୱାର୍ଥପର ଜନସେବା ପାଇଁ କିଏ ଆଗ୍ରହୀ ? ତେଣୁ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କର ସଂଖ୍ୟା ଅତୀବ ସୀମିତ । ଯାହା'ବା ସ୍ୱେଚ୍ଛାସେବୀ ଅନୁଷ୍ଠନ ରହିଛି, ସେମାନଙ୍କ ମଧ୍ୟରେ ଦିଗ୍‌ଦର୍ଶନ, ନିସ୍ୱାର୍ଥପରତା, ନିଷ୍ଠା ଓ ଆନ୍ତରିକତାର ଅଭାବ ରହିଛି ।

ତେଣୁ ସାମୂହିକ ଓ ଗୋଷ୍ଠୀ ପ୍ରଚେଷ୍ଟା ଦ୍ୱାରା ଦେଶର ପରିବେଶ ଓ ବନ ସମ୍ପଦର ସୁରକ୍ଷା ସମ୍ପର୍କରେ ଘୋର ସନ୍ଦେହ ଜାତ ହେଉଛି । ଯାହା ଜଳଜଳ ଦିଶୁଛି, ଜାଳେଣି, ଗୋଖାଦ୍ୟ, ଚାଷୋପକରଣ, ଗୃହୋପକରଣ ଆଦି ପାଇଁ ଆହୁରି ହନ୍ତସନ୍ତ ଓ ତଳିତଳାନ୍ତ ହେଲାପରେ ଗ୍ରାମବାସୀମାନେ ନିଜ ନିଜର ଜମି ଓ ପଦାରେ ଗଛ ଲଗାଇ ଜୀବିକା ନିର୍ବାହ କରିବେ । ଏ ଭୟାବହ ପରିସ୍ଥିତି ଦେଶର ବୁଦ୍ଧିଜୀବୀ, ଚିନ୍ତାଶୀଳ, ଦୂରଦୃଷ୍ଟି ସମ୍ପନ୍ନ ବ୍ୟକ୍ତି ଓ ପରିବେଶପ୍ରେମୀ ନାଗରିକମାନଙ୍କ ପାଇଁ ଗଭୀର ଚିନ୍ତାର ବିଷୟ ହୋଇ ପଡ଼ିଛି ।

ଶିକ୍ଷିତ ବ୍ୟକ୍ତିମାନଙ୍କର ହୃଦୟର କଠିନତାକୁ ଲକ୍ଷ୍ୟକଲେ ହୃଦୟରେ ଉଦ୍‌ବେଗ ଜାତ ହୁଏ । ସମୂହ ସ୍ୱାର୍ଥ, ସମାଜ ସେବା ଓ ଦେଶ ଗଠନ ପ୍ରତି ଶିକ୍ଷିତ ଲୋକମାନଙ୍କର ଉଦାସୀନତା ଦେଖିଲେ ଯେ କୌଣସି ବିବେକୀ ବ୍ୟକ୍ତିର ଘୋର ନୈରାଶ୍ୟ ଜାତ ହୁଏ । ଏହି ପ୍ରତିକୂଳ କରିସ୍ଥିତିର ସମ୍ମୁଖୀନ ହୋଇ ଲକ୍ଷ୍ୟ ହାସଲ କରିବା ପାଇଁ ଅସାଧାରଣ ନୈତିକ ମନୋବଳ ସମ୍ପନ୍ନ ଜନସେବୀଙ୍କର ଆବଶ୍ୟକତା ରହିଛି ।

**ଉତ୍କଳ ପ୍ରସଙ୍ଗ, ମେ, ୧୯୯୦ରେ ପ୍ରକାଶିତ**

# ସମାଜ ସେବାର ଦାର୍ଶନିକ ଓ ମନସ୍ତାତ୍ତ୍ୱିକ ଦିଗ

**ନାରାୟଣ ହଜାରୀ**

ସମାଜ ସେବା ଅନ୍ୟର ସେବା ନୁହେଁ, ଏହା ହେଉଛି ଆତ୍ମସେବା । କାରଣ ଯେଉଁ ପରମାତ୍ମା ସେବକଙ୍କ ଦେହରେ ଅଛନ୍ତି, ସେ ମଧ୍ୟ ସେବିତଙ୍କ ଦେହରେ ଅଛନ୍ତି । ତେଣୁ କିଏ କାହାର ସେବା କରୁଛି ? ସମସ୍ତ ସେବା ନିଜର । ଯେଉଁମାନେ ସେବାର ସୁଯୋଗ ଦେଇଛନ୍ତି, ସେମାନଙ୍କ ପ୍ରତି ସେବକ କୃତଜ୍ଞ ହେବା ଉଚିତ୍ ।

ଦୁଃଖୀ ଦରିଦ୍ରଙ୍କ ସେବା ହେଉଛି, ଈଶ୍ୱରଙ୍କ ସେବା । ସମାଜ ସେବାର ଅର୍ଥ ଦୁଃଖୀ, ଦରିଦ୍ର, ନିଃସ୍ୱ, ଅସହାୟ, ବୃଦ୍ଧ, ଅନାଥ, ରୋଗୀର ସେବା । ଏହାର ଦୁଇଟି ଦିଗ ରହିଛି । ପ୍ରଥମଟି ହେଉଛି, ଦୀନ, ଦରିଦ୍ର, ନିରନ୍ନର ସେବା । ଦ୍ୱିତୀୟଟି ହେଉଛି ପ୍ରାଚୁର୍ଯ୍ୟ ଓ ଭୋଗ ବିଳାସରେ ଥାଇ ମଧ୍ୟ ଯେଉଁମାନେ ନିଃସଙ୍ଗ, ଅଲୋଡ଼ା, ଅସହାୟ, ଦୁଃଖୀ, ଆର୍ତ୍ତ ସେମାନଙ୍କ ସେବା । ସମୃଦ୍ଧଶାଳୀ ଦେଶମାନଙ୍କରେ ବୃଦ୍ଧ ଲୋକମାନଙ୍କ ଶୋଚନୀୟ ଅବସ୍ଥା ବିଚାର କରାଯାଉ । ଏହି ପରିପ୍ରେକ୍ଷୀରେ ୧୯୮୬ ମସିହାରେ ପୁରୀ ଡାକ୍ତରଖାନାରେ ଜଣେ ୪୮ ବର୍ଷୀୟ ଆମେରିକୀୟ ଇଞ୍ଜିନିୟରଙ୍କ ଅବସ୍ଥା ବିଚାର କରାଯାଉ । ଲେଖକଙ୍କର ଜଣେ ବନ୍ଧୁ ସେହି ସମୟରେ ଅସୁସ୍ଥ ହୋଇ ଡାକ୍ତରଖାନାରେ ଥିଲେ । ଲେଖକ ତାଙ୍କ ପାଖରେ ଥିଲେ । ସେହି ସମୟରେ ଉପରୋକ୍ତ ଆମେରିକୀୟ ଟ୍ରେନ୍‌ରୁ ଖସି ପଡ଼ି ଗୁରୁତ୍ୱର ଆଘାତ ପାଇ ଡାକ୍ତରଖାନାକୁ ଆସିଲେ । ତାଙ୍କର ଗଭୀର କ୍ଷତ ଯୋଗୁଁ, ସେ ଯନ୍ତ୍ରଣାରେ ଛଟପଟ ହେଉଥିଲେ । ତାଙ୍କର କଷ୍ଟ ଦେଖି, ପାଖରେ ଥିବା ଲୋକମାନଙ୍କର ହୃଦୟ ବିଗଳିତ ହୋଇଥିଲା । ପଚାରିବାରେ ନିଜ କଥା କହିଥିଲେ, "ମୁଁ ଯୁକ୍ତରାଷ୍ଟ୍ର ଆମେରିକାରେ ଜଣେ ଧନୀ ଓ କ୍ଷମତାଶାଳୀ ବ୍ୟବସାୟୀ ଥିଲି । ଅବିବାହିତ ଥିଲି । ୩୮ ବର୍ଷ ବୟସ ବେଳକୁ ଆମେରିକୀୟ ସଭ୍ୟତା ସମ୍ପର୍କରେ ମୋର ମୋହଭଙ୍ଗ ହୋଇଗଲା । ଜୀବନର ପ୍ରକୃତ ଅର୍ଥ ବୁଝିବାକୁ ମୁଁ ତାପରେ ଭାରତକୁ ପଳାଇ ଆସିଲି । ଏଠାରେ ହିନ୍ଦୁ ସନ୍ୟାସୀ ହୋଇଗଲି । ମୋର ବାପା ଓ ମା ଜୀବିତ ଥିଲେ ମଧ୍ୟ ମୁଁ ତାଙ୍କୁ

ମୋର ଦୁର୍ଘଟଣା ବିଷୟରେ ଜଣାଇ ନାହିଁ । କାରଣ ମୋର ବାପା ଓ ମା ମୋତେ ସ୍ନେହ କରୁଥିବା ମୁଁ ଅନୁଭବ କରୁ ନାହିଁ । ମୋର ମାଙ୍କର ବର୍ତ୍ତମାନ ବୟସ ୮୫ । ସେ ପକ୍ଷାଘାତ ରୋଗରେ ଆକ୍ରାନ୍ତ । ସେ ସିଗାରେଟ୍ ପାନ କରିନ୍ତି ଓ ମଦ ପିଅନ୍ତି ।" ତାଙ୍କର ଜୀବନରେ ଓ ତାଙ୍କ ମା' ବାପାଙ୍କ ଜୀବନରେ ହା ହୁତାଶନ ଭରି ଯାଇଥିଲା । ଏହି ପରିପ୍ରେକ୍ଷୀରେ ଦରିଦ୍ର ଭାରତରେ ପ୍ରତି ଲକ୍ଷେ ଲୋକରେ ଯେତିକି ଲୋକ ଆତ୍ମହତ୍ୟା କରନ୍ତି, ବିଭବଶାଳୀ ଯୁକ୍ତରାଷ୍ଟ୍ର ଆମେରିକାରେ ତାର ୪ଗୁଣ ଲୋକ ଆତ୍ମହତ୍ୟା କରିବା କଥା ବୁଝିହୁଏ । ଏଥିରୁ ବିଭବଶାଳୀ ଲୋକଙ୍କର କରୁଣ ଜୀବନ ସମ୍ପର୍କରେ ସମ୍ୟକ୍ ଧାରଣା ସୃଷ୍ଟି ହୁଏ । ସମାଜ ସେବୀ ସମସ୍ତଙ୍କ ମଧ୍ୟରେ ନିଜକୁ ଦେଖନ୍ତି ଓ ନିଜମଧ୍ୟରେ ସମସ୍ତଙ୍କୁ ଦେଖନ୍ତି । ଅନ୍ୟର କଷ୍ଟକୁ ନିଜର କଷ୍ଟ ମନେ କରନ୍ତି । ଈସାବାସ୍ୟ ଉପନିଷଦ୍ କହେ,

"ଦେଖଇ ଯେହୁ ସର୍ବଭୂତ,
ଆପଣା ଆତ୍ମାରେ ସତତ ।
ନିଜକୁ ଦେଖେ ସର୍ବ ଭୂତେ,
ଲୁଚଇ ନହିଁ କେଭେ ଚିତ୍ତେ ।"

ସ୍ୱାମୀ ବିବେକାନନ୍ଦ କହିଛନ୍ତି, ' ସେମାନେ ହିଁ ବଞ୍ଚନ୍ତି, ଯେଉଁମାନେ ଅନ୍ୟମାନଙ୍କ ପାଇଁ ବଞ୍ଚନ୍ତି ।'

ଭକ୍ତରାଜ ପ୍ରହ୍ଲାଦ କହିନ୍ତ,
"ନ ତ୍ୱହଂ କାମୟେ ରାଜ୍ୟଂ,
ନ ସ୍ୱର୍ଗଂ ନ ପୁନର୍ଭବଂ ।
କାମୟେ ଦୁଃଖ ତପ୍ତାନାଂ,
ପ୍ରାଣିନାଂ ଆର୍ତ୍ତି ନାଶନଂ ।"

ଅର୍ଥାତ୍, "ମୁଁ ରାଜ୍ୟ, ସ୍ୱର୍ଗ, ପୁର୍ନଜନ୍ମ ଚାହୁଁ, ନାହିଁ କେବଳ ଦୁଃଖରେ ସନ୍ତାପିତ ପ୍ରାଣୀମାନଙ୍କର ଦୁଃଖ ଲାଘବ ହେବା ଚାହୁଁଛି ।

ଉପରୋକ୍ତ ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ଜଗନ୍ନାଥ ଦାସ ଭାଗବତରେ ଲେଖିଛନ୍ତି,

"ପ୍ରାଣୀର ଦୁଃଖରେ ଦୁଃଖିତ,
ସର୍ବଦା ହେଉ ମୋର ଚିତ୍ତ
ହେ ପ୍ରଭୁ ମୋତେ ଦୟାକର,
ମୁଁ କରେ ପର ଉପକାର ।"

ସମାଜସେବୀଙ୍କ କର୍ମ ସହଜ ସାଧ୍ୟ ନୁହେଁ । ପଦେ ପଦେ ସନ୍ଦେହ, ନିନ୍ଦାର ସମ୍ମୁଖୀନ ହେବାକୁ ହେବ । ନିନ୍ଦା ତାର ମୁଣ୍ଡରେ ପାଟଶାଢ଼ୀର ପଗଡ଼ି । ଗ୍ରୀକ୍ ଦାର୍ଶନିକ ସକ୍ରେଟିସ୍ ସମାଜ ସଂସ୍କାର କରିବାକୁ ଯାଇ ରାଷ୍ଟ୍ରଦ୍ରୋହ ଅଭିଯୋଗରେ ଅଭିଯୁକ୍ତ ହୋଇଥିଲେ । ତାପରେ ତାଙ୍କୁ ପାତ୍ରରେ ବିଷ ଦିଆଯାଇଥିଲା ପାନ କରିବାକୁ । ତାଙ୍କର ଶିଷ୍ୟମାନଙ୍କର ଘୋର କ୍ରନ୍ଦନ ମଧ୍ୟରେ ସେ ବିଷ ପାନ କରି ଜୀବନ ଉତ୍ସର୍ଗ କରିଥିଲେ । ଯୁଶୁଖ୍ରୀଷ୍ଟ ସମାଜରେ ପ୍ରେମର ବାର୍ତ୍ତା ପ୍ରଚାର କରି କ୍ରୁଶବିଦ୍ଧ ହୋଇଥିଲେ । ଇଟାଲିର ବିଶିଷ୍ଟ ବୈଜ୍ଞାନିକ ଗାଲିଲିଓ ତଥ୍ୟ ଉପସ୍ଥାପିତ କରିଥିଲେ ଯେ, ସୂର୍ଯ୍ୟ ଚାରିପଟେ ପୃଥିବୀ ବୁଲୁଛି । ତା' ପୂର୍ବରୁ ବିଶ୍ୱାସ ଥିଲା ପୃଥିବୀ ଚାରିପଟେ ସୂର୍ଯ୍ୟ ବୁଲୁଛି । ତାଙ୍କର ଏହି ବୈଜ୍ଞାନିକ ତଥ୍ୟ ଘୋର ବିଭ୍ରାନ୍ତିକର ବୋଲି ଶାସକଗୋଷ୍ଠୀ ଅଭିଯୁକ୍ତ କରି, ତାଙ୍କୁ ମୃତ୍ୟୁଦଣ୍ଡ ଦେଇଥିଲେ । କ୍ରୀତଦାସ ପ୍ରଥା ଉଚ୍ଛେଦ କରି ଆବ୍ରାହମ୍ ଲିଙ୍କନ୍ ଦେଶର ଏକତା ପାଇଁ ନିଜର ଜୀବନକୁ ବିସର୍ଜନ କରିଥିଲେ । ମହାତ୍ମା ଗାନ୍ଧୀ ହିନ୍ଦୁ - ମୁସଲମାନଙ୍କ ମଧ୍ୟରେ ଭ୍ରାତୃତ୍ୱ ପ୍ରତିଷ୍ଠା କରିବା ପାଇଁ ପ୍ରାଣପାତ କରିଥିଲେ ।

ସମାଜସେବୀଙ୍କ ବିରୁଦ୍ଧରେ ତାଙ୍କର ପରିବାର ସଦସ୍ୟମାନେ ଅଭିଯୋଗ କରି ପାରନ୍ତି ଯେ, ସେ ପରିବାର ପାଇଁ କିଛି କରି ନାହାନ୍ତି । ସମସ୍ତ ସମୟ, ଶକ୍ତି, ଅର୍ଥ ସମାଜ ପାଇଁ ବିନିଯୋଗ କରିଛନ୍ତି । ସମାଜର କେହି କହି ପାରନ୍ତି ଯେ, ସେ ସମାଜ ପାଇଁ କିଛି ନ କରି, ପରିବାରର ସ୍ୱାର୍ଥସାଧନ ପାଇଁ ଅହରହ ବ୍ୟାକୁଳ । ଏହି ପରିସ୍ଥିତିରେ ସମାଜସେବୀଙ୍କୁ ସମାଜର ସମସ୍ତ ବିଷପାନ କରିବାକୁ ହେବ । ଶିବଙ୍କ ପରି ନୀଳକଣ୍ଠ ହେବାକୁ ହେବ ।

ସମାଜସେବୀଙ୍କୁ ସ୍ୱାର୍ଥ ତ୍ୟାଗ କରିବାକୁ ହେବ । ଅହଙ୍କାର ତ୍ୟାଗ କରିବାକୁ ହେବ । ସହନଶୀଳ ହେବାକୁ ହେବ । ନିଜର ମାନସମ୍ମାନ ବିଷୟରେ ଅତ୍ୟଧିକ ସଚେତନତା ସମାଜସେବା ପଥରେ ଅନ୍ତରାୟ । 'କାଦୁଅକୁ ଯିବି ନାହିଁ କି ଗୋଡ଼ ଧୋଇବି ନାହିଁ' ନୀତିରେ ବିଶ୍ୱାସ କରୁଥିବା ବ୍ୟକ୍ତି ସମାଜସେବା କରି ପାରିବେ ନାହିଁ । ଏହାର ଅର୍ଥ ନୁହେଁ ଯେ, ସମାଜସେବୀଙ୍କ ସ୍ୱାଭିମାନ ରହିବ ନାହିଁ । ସମାଜ ସେବାରେ ଆତ୍ମ ସମ୍ମାନ ଜଳାଞ୍ଜଳି ଦେବାର ଆବଶ୍ୟକତା ନାହିଁ । କିନ୍ତୁ ଆତ୍ମସମ୍ମାନର ଏକ ବିକୃତ ଅର୍ଥ ବା ସଙ୍କୀର୍ଣ୍ଣ ଅର୍ଥ କରାଯିବା ଉଚିତ୍ ନୁହେଁ ।

ସମସ୍ତ ସନ୍ଦେହ, ନିନ୍ଦା, ଅପମାନ ମଧ୍ୟରେ ସମାଜସେବୀଙ୍କୁ ରାମାୟଣର ଏକ ମହତ୍ୱପୂର୍ଣ୍ଣ କଥା ନିଜ ଜୀବନ ଦର୍ଶନରେ ଅଙ୍ଗୀଭୂତ କରିବାକୁ ହେବ । ରାମଙ୍କ ବନବାସ ଓ ରାଜତ୍ୱହାନି ପାଇଁ ଭରତ କୈକେୟୀଙ୍କୁ ତିରସ୍କାର କରିବାରୁ, ରାମଚନ୍ଦ୍ର

କହିଥିଲେ, " ଭରତ ତୁମେ କାହିଁକି ମା କୈକେୟୀଙ୍କୁ ନିନ୍ଦା କରୁଛ, ମୁଁ ମୋର କର୍ମର ଫଳ ସିନା ଭୋଗ କରୁଛି ।

ସମାଜସେବୀଙ୍କୁ ନିର୍ମଳଜୀବନ ଯାପନ କରିବାକୁ ହେବ । ନିର୍ମଳ ଜୀବନର ମୂଲ୍ୟାୟନ ପିତାମହ ଭୀଷ୍ମ ମହାଭାରତର ଶାନ୍ତି ପର୍ବରେ କରିଛନ୍ତି । ସେ ଶରଶଯ୍ୟାରେ ଶୟନ କରିଥିବା ବେଳେ, ପାଣ୍ଡବମାନେ ରଣକ୍ଷେତ୍ରକୁ ଯାଇ ତାଙ୍କୁ ଉପଦେଶ ଦେବାକୁ ବିନୀତ ପ୍ରାର୍ଥନା କରିଥିଲେ । ଭଗବାନ ଶ୍ରୀକୃଷ୍ଣ ଓ ଦ୍ରୌପଦୀ ସେଠାରେ ଉପସ୍ଥିତ ଥିଲେ । ଭୀଷ୍ମ ନୀତିବାକ୍ୟ ପ୍ରଦାନ କରି କହିଥିଲେ, ଶାସକ

୧. କାହାକୁ ଶତ୍ରୁ ମଣିବ ନାହିଁ ।

୨. ପ୍ରଜାମାନଙ୍କୁ ପୁତ୍ରବତ୍ ଭାବିବ ।

୩. ଦୁଃଖୀ ଦରିଦ୍ର, ଅସହାୟର ସେବା କରିବ ।

ଏହି କଥା ଶୁଣି ଦ୍ରୌପଦୀ ଉଚ୍ଚସ୍ୱରରେ ବିଦ୍ରୂପାତ୍ମକ ହସ ହସି ଥିଲେ । ଏଥିରେ ପାଣ୍ଡବମାନେ ଅପ୍ରତିଭ ଓ ମର୍ମାହତ ହୋଇଥିଲେ । ଏପରି ହସିବାର କାରଣ ପଚାରିବାରୁ ଯାଜ୍ଞସେନୀ କହିଥିଲେ, "ଯେଉଁ ପିତାମହ ଭୀଷ୍ମ କୁରୁସଭାରେ ମତେ ବିବସ୍ତ୍ର କଲାବେଳେ, ମୁଣ୍ଡପାତି ଚୁପ୍ ରହିଥିଲେ, ତାଙ୍କର ନୀତିବାକ୍ୟ ଶୁଣାଇବାର ଅଧିକାର କେଉଁଠି ଅଛି ?" ତାର ଉତ୍ତରରେ ଭୀଷ୍ମ କହିଥିଲେ, "ଧର୍ମରାଜଙ୍କ ପତ୍ନୀଙ୍କର ଅଟ୍ଟହାସ ଅସ୍ୱାଭାବିକ ନୁହେଁ । ସେତେବେଳେ ପିତାମହ ଦୁର୍ଯ୍ୟୋଧନ ଅନ୍ନରେ ପାଳିତ ହୋଇ ମୋର ରକ୍ତ ଦୂଷିତ ହୋଇ ଯାଇଥିଲା । ମହାଭାରତ ଯୁଦ୍ଧରେ ଅର୍ଜୁନଙ୍କର ତୀର ବିଦ୍ଧ ହୋଇ ମୋର ପାପରକ୍ତ ନିର୍ଗତ ହୋଇଯିବାରୁ ମୋର ମନ ପ୍ରାଣ ନିର୍ମଳ ହୋଇ ଯାଇଛି । ନୀତିବାକ୍ୟ ପ୍ରଦାନ କରିବାକୁ ବର୍ତ୍ତମାନ ମୁଁ ଯୋଗ୍ୟ ।"

ସମାଜ ସେବୀ କଦାପି ଭାବିବା ଉଚିତ୍ ନୁହେଁ ଯେ, ତାଙ୍କ ବିନା ସମାଜସେବା ହୋଇ ପାରି ନ ଥାନ୍ତା । ସେ ସର୍ବଶକ୍ତିମାନ୍ ଈଶ୍ୱରଙ୍କର ଇଚ୍ଛାର ମାଧ୍ୟମ ମାତ୍ର ।

ସମାଜସେବୀର ଗର୍ବ ରହିବା ଉଚିତ୍ ନୁହେଁ ଯେ, ତାଙ୍କ ହୃଦୟ ଦୀନ, ଦରିଦ୍ରଙ୍କ ପାଇଁ ବିଶେଷ ବିଗଳିତ । ଏକଦା ଲେଖକ ସଙ୍ଗରେ ୨ଟି ୮ ବର୍ଷ ବାଳକ ସାଇରାମ, ସାଇକୃଷ୍ଣ ରାସ୍ତାରେ ଯାଉଥିଲେ । ସେମାନେ ପ୍ରଥମେ ଜଣେ ଦରିଦ୍ର ମୁମୂର୍ଷୁ ବୃଦ୍ଧକୁ ରାସ୍ତାକଡ଼ରେ ପଡ଼ିଥିବା ଦେଖିଥିଲେ ଓ ସେଥିପ୍ରତି ମୋର ଦୃଷ୍ଟି ଆକର୍ଷଣ କରିଥିଲେ ।' ଲେଖକ ଆଖିରେ ତାହା କିପରି ନ ପଡ଼ିଲା ତାହା ଭାବି ଲେଖକ ବିସ୍ମିତ ହୋଇଥିଲେ । ଏପରିପ୍ରେକ୍ଷୀରେ ଏକ ଫରାସୀ ପ୍ରବଚନ ମନେପଡ଼େ ।

"ମଣିଷ ଯେତେ ବଡ଼ ହୁଏ, ତାର ପକ୍ଷୀ ସେତିକି ଛିଡ଼ିଯାଏ ଓ ତାର ଉଡ଼ିବା ଶକ୍ତି କମିଯାଏ ।" ଅର୍ଥାତ୍ ତାରଚେତନା ଶକ୍ତି କମିଯାଏ ।

ସମାଜସେବୀଙ୍କର ଈଶ୍ୱରଙ୍କ ଉପରେ ଅଖଣ୍ଡ ବିଶ୍ୱାସ ରହିବା ଦରକାର । ସେ ସର୍ବଦା ଉପଲବ୍ଧି କରିବା ଉଚିତ୍ ଯେ, ଈଶ୍ୱର ତାଙ୍କ ପାଖେ ପାଖେ ଅଛନ୍ତି । ଥରେ ମହମ୍ମଦ ଓ ତାଙ୍କର ସାଥି ଆବୁବକର ମକ୍କାରୁ ମଦିନାକୁ ପଳାୟନ କରୁଥିଲେ । ତାଙ୍କ ପଛରେ ବିରୋଧୀ ସୈନ୍ୟ ଧାବମାନ କରୁଥିଲେ । ସେମାନେ ପାଖେଇ ଆସିବରୁ ଅନନ୍ୟୋପାୟ ହୋଇ, ସେ ଦୁହେଁ ନିକଟବର୍ତ୍ତୀ ଏକ ପାହାଡ଼ର ଗୁମ୍ଫା ମଧ୍ୟରେ ପ୍ରବେଶ କରିଥିଲେ । ତାପରେ ଆବୁବକର ପଚାରିଥିଲେ "ଆମେ ମାତ୍ର ଦୁଇଜଣ, ଆମକୁ ଶତ୍ରୁସୈନ୍ୟ ଅଚିରେ ବାନ୍ଧି ନେବେ । ତା'ପରେ ଆମର ଅବସ୍ଥା କ'ଣ ହେବ ।" ମହମ୍ମଦ ଉତ୍ତରରେ କହିଥିଲେ, " ଆମେ ଦୁଇଜଣ ନୋହୁଁ, ଆମେ ତିନିଜଣ । ଆମ ପାଖରେ ଆଉ ଜଣେ ବ୍ୟକ୍ତି ଅଛନ୍ତି ।" ସେ କିଏ ବୋଲି ଆବୁବକର ପ୍ରଶ୍ନ କରିଥିଲେ । ଉତ୍ତରରେ ମହମ୍ମଦ କହିଥିଲେ, " ଅପେକ୍ଷା କର ।" ବିରୋଧୀ ସୈନ୍ୟମାନେ ଗୁମ୍ଫା ପାଖକୁ ଆସି ଦେଖିଥିଲେ ଯେ, ଗୁମ୍ଫାର ମୁହଁରେ ବୁଢ଼ୀଆଣୀ ଜାଲବିଛେଇ ହୋଇ ଯାଇଛି । ସେଥିରୁ ସେମାନେ ନିଶ୍ଚିତ ହୋଇଥିଲେ ଯେ, ଗୁମ୍ଫା ଭିତରେ ମହମ୍ମଦ ଓ ଅବୁବକର ପ୍ରବେଶ କରି ନାହାନ୍ତି । ସେମାନେ ଚାଲିଗଲା ପରେ ମହମ୍ମଦ କହିଥିଲେ "ଆବୁବକର ବର୍ତ୍ତମାନ ତୁମେ ବୁଝି ପାରିଥିବ, ସେ ତୃତୀୟ ବ୍ୟକ୍ତି କିଏ । ଗୁମ୍ଫା ମୁହଁରେ ଯିଏ ବୁଢ଼ୀଆଣୀ ଜାଲ ବିଛାଇଦେଇଥିଲେ, ସେ ହେଉଛନ୍ତି ଈଶ୍ୱର ।"

ସର୍ବେ ଭବନ୍ତୁ ସୁଖିନଃ,
ସର୍ବେ ସନ୍ତୁ ନିରାମୟାଃ ।
ସର୍ବେ ଭଦ୍ରାଣି ପଶ୍ୟନ୍ତୁ,
ମା କଶ୍ଚିଦ୍ ଦୁଃଖଭାଗ୍ ଭବେତ୍ ।

**ଉତ୍କଳ ପ୍ରସଙ୍ଗ, ମେ, ୧୯୮୭**

# ପ୍ରତି ଗ୍ରାମରେ ପଞ୍ଚାୟତ ହେଉ

ନାରାୟଣ ହଜାରୀ
ସମର୍ପିତା ସଂଘପ୍ରିୟା

ଓଡ଼ିଶା ସରକାର ବିଧାନସଭାର ଚଳିତ ଅଧିବେଶନରେ ପଞ୍ଚାୟତରାଜ ବ୍ୟବସ୍ଥାର ପୁନର୍ବିନ୍ୟାସ ପାଇଁ ଏକ ବିଲ୍ ଆଣୁଛନ୍ତି । ଏହି ପରିପ୍ରେକ୍ଷୀରେ ଏକ ଚରିସ୍ତରୀୟ ପଞ୍ଚାୟତରାଜ ବ୍ୟବସ୍ଥା (ଗ୍ରାମରେ ପଞ୍ଚାୟତ, ବର୍ତ୍ତମାନର ଗ୍ରାମ ପଞ୍ଚାୟତରେ ମଣ୍ଡଳ ପଞ୍ଚାୟତ, ବ୍ଲକରେ ବ୍ଲକ ପଞ୍ଚାୟତ, ଜିଲ୍ଲାରେ ଜିଲ୍ଲା ପଞ୍ଚାୟତ,) ପାଇଁ ଏହି ପ୍ରବନ୍ଧରେ ଅବତାରଣା କରାଯାଇଛି । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି ଯେ, ପ୍ରତି ଗ୍ରାମରେ ପଞ୍ଚାୟତ ରହିବା ଉଚିତ । ଅର୍ଥାତ୍ ଓଡ଼ିଶାର ପ୍ରାୟ ୫୦.୦୦୦ ଗ୍ରାମରେ ସେତିକି ପଞ୍ଚାୟତ ରହିବା ଉଚିତ । ଏହି ମତ ଗବେଷଣାରୁ ଉଦ୍ଭୂତ ।

ଭାରତୀୟ ପଞ୍ଚାୟତରାଜ ବ୍ୟବସ୍ଥା ଗଣତନ୍ତ୍ର ଓ ବିକାଶର ଏକ ଦୃଢ଼ ସ୍ତମ୍ଭ ଭାବରେ ପରିଗଣିତ । ଏହାର ଉଦ୍ଦେଶ୍ୟ ହେଉଛି, ଗ୍ରାମ ବିକାଶରେ ସକ୍ରିୟ ଅଂଶଗ୍ରହଣ କରିବାକୁ ସୁଯୋଗ ଦେବା । ଏତଦ୍‌ବ୍ୟତୀତ ସରକାରଙ୍କର ବିଭିନ୍ନ ଯୋଜନାର ସୁଯୋଗ ନେଇ ଗ୍ରାମ ପ୍ରଗତିପାଇଁ କାର୍ଯ୍ୟ କରିବା ।

ଭାରତ ପୃଥିବୀର ଏକ ଦରିଦ୍ରତମ ଦେଶ । ଏହାର ଆର୍ଥିକ ପ୍ରଗତି କେବଳ ସରକାରୀ ପ୍ରଚେଷ୍ଟାରେ ସମ୍ଭବ ନୁହେଁ । ସରକାରଙ୍କର ଶକ୍ତି ଓ ସମ୍ବଳ ସୀମିତ । ଲୋକଙ୍କର ସକ୍ରିୟ ଅଂଶ ଗ୍ରହଣ ବିନା ଦେଶ ଓ ଦଶର ଉନ୍ନତି ସମ୍ଭବ ନୁହେଁ । ପ୍ରଗତିର ଚାବିକାଠି ଲୋକଶକ୍ତି ହାତରେ । ରାଷ୍ଟ୍ର ନିର୍ମାଣ କାର୍ଯ୍ୟରେ ଲୋକଶକ୍ତିର ଭୂମିକା, ରାଷ୍ଟ୍ରଶକ୍ତିଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ । ତେଣୁ ଲୋକମାନଙ୍କୁ କ୍ଷମତା ଓ ସମ୍ବଳ ଦିଆଯିବା ଆବଶ୍ୟକ । ଲୋକମାନଙ୍କୁ କ୍ଷମତା ଦେବା ପାଇଁ କ୍ଷମତାର ବିକେନ୍ଦ୍ରୀକରଣ ଅପରିହାର୍ଯ୍ୟ । କ୍ଷମତାର ବିକେନ୍ଦ୍ରିକରଣ ସଙ୍ଗେ ସଙ୍ଗେ ବିକେନ୍ଦ୍ରୀତ ଅର୍ଥନୀତିକ ବିକାଶର ସମ୍ଭାବନା ରହିଛି ।

ଭାରତୀୟ ଶାସନ ପରମ୍ପରାରେ କେନ୍ଦ୍ରୀଭୂତ ଶାସନକୁ ଉଚ୍ଚସ୍ଥାନ ଦିଆଯାଇ ନଥିଲା । ବିକେନ୍ଦ୍ରୀଭୂତ ଶାସନ ଉପରେ ଗୁରୁତ୍ୱ ଦିଆଯାଇଥିଲା । ପ୍ରାଚୀନ ଭାରତରେ ଦେଶକୁ ବାହ୍ୟଶତ୍ରୁ କବଳରୁ ରକ୍ଷା କରିବା, ଲୋକମାନଙ୍କର ଧନଜୀବନ ସୁରକ୍ଷା କରିବା, ଦୈବୀ ଦୁର୍ବିପାକରେ ଲୋକମାନଙ୍କୁ ସାହାଯ୍ୟ କରିବା, କଳା ଓ ସଂସ୍କୃତିର ପୃଷ୍ଠପୋଷକତା କରିବା - କେନ୍ଦ୍ରଶାସନର ଦୟିତ୍ୱ ଥିଲା । ଅନ୍ୟସବୁ ଦାୟିତ୍ୱ ଯଥା - ଗ୍ରାମବାସୀଙ୍କର ସମୂହ କଲ୍ୟାଣ, ନ୍ୟାୟ ନିଷ୍ପତ୍ତି ନେବା - ଗ୍ରାମର ପାଞ୍ଚଜଣ ଲୋକ ପ୍ରତିନିଧିଙ୍କ ଉପରେ ନ୍ୟସ୍ତ ଥିଲା । ଏହାକୁ ପଞ୍ଚାୟତ କୁହାଯାଉଥିଲା । ଏମାନଙ୍କୁ ପାଞ୍ଚ ପରମେଶ୍ୱର ଆଖ୍ୟା ଦେଇ, ଲୋକମାନଙ୍କ ମଧ୍ୟରେ ବିଶ୍ୱାସ, ଅନୁରକ୍ତି ଓ ଶ୍ରଦ୍ଧାଭାବନା ଜାଗ୍ରତ କରାଯାଇଥିଲା । ପ୍ରତି ଗ୍ରାମରେ ପଞ୍ଚାୟତ ଥିଲା ।

ଏହି ଆଦର୍ଶ ଦ୍ୱାରା ଉଦ୍‌ବୁଦ୍ଧ ହୋଇ ଭାରତୀୟ ସମ୍ବିଧାନର ୪୦ ପରିଚ୍ଛଦରେ ଗ୍ରାମ ପଞ୍ଚାୟତ ଗଠନ କରି ଆବଶ୍ୟକ କ୍ଷମତା ପ୍ରଦାନ କରିବାକୁ ରାଜ୍ୟମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି ।

୧୯୮୦ ରୁ ୧୯୯୦ ମଧ୍ୟରେ ଗ୍ରାମାଞ୍ଚଳର ନିର୍ଦ୍ଦିଷ୍ଟ ସମସ୍ୟାକୁ ନେଇ କେତେକ ସ୍ୱତନ୍ତ୍ର ଉନ୍ନୟନମୂଳକ ଯୋଜନା କାର୍ଯ୍ୟକାରୀ କରାଗଲା । ଏତଦ୍ୱାରା ପଞ୍ଚାୟତରାଜ ଅନୁଷ୍ଠାନ ଗୁଡ଼ିକର ପ୍ରାଧାନ୍ୟ କମିଗଲା । ପଞ୍ଚାୟତରାଜରେ ବିଭିନ୍ନ ଯୋଜନା ଗୁଡ଼ିକ କାର୍ଯ୍ୟକାରୀ କରିବା ପାଇଁ ଆବଶ୍ୟକ ଅର୍ଥ ସରକାରଙ୍କ ତରଫରୁ ଯୋଗାଇ ଦିଆଗଲା ନାହିଁ । ରାଜ୍ୟ ସରକାର ଯୋଜନା ପ୍ରଣୟନ କରିବା ସମୟରେ ପଞ୍ଚାୟତରାଜ ଅନୁଷ୍ଠାନ ଗୁଡ଼ିକୁ ଜଡ଼ିତ କଲେ ନାହିଁ । କିମ୍ବା ସେଗୁଡ଼ିକର ପରାମର୍ଶକୁ ଭ୍ରୂକ୍ଷେପ କଲେ ନାହିଁ । ରାଜ୍ୟସରକାରମାନେ ପଞ୍ଚାୟତରାଜ ସଂସ୍ଥାଗୁଡ଼ିକର ନିୟମିତ ନିର୍ବାଚନ ନ କରି ବର୍ଷ ବର୍ଷ ଧରି ସେଗୁଡ଼ିକୁ ମନଇଚ୍ଛା ନିଜର ପ୍ରତ୍ୟକ୍ଷ ନିୟନ୍ତ୍ରଣରେ ରଖିଲେ । ସରକାରୀ ନିୟନ୍ତ୍ରଣ, ସ୍ଥାନୀୟ ଲୋକପ୍ରତିନିଧିଙ୍କ ହାତରେ କୌଣସି କ୍ଷମତା ବା ଦାୟିତ୍ୱ ନ ଦେବା, ରାଜନୀତିକ ହସ୍ତକ୍ଷେପ, ସରକାରୀ ଉଦାସୀନତା, ଆର୍ଥିକ ଅସ୍ୱଚ୍ଛଳତା, ଦୁର୍ନୀତି, ଜନସାଧାରଣଙ୍କର ଅନାଗ୍ରହ ଆଦି କାରଣରୁ ପଞ୍ଚାୟତରାଜ ବ୍ୟବସ୍ଥା କ୍ଷୀୟମାଣ, ନିଷ୍କ୍ରିୟ ଓ ଦୁର୍ବଳ ହୋଇପଡ଼ିଲା ।

ପଞ୍ଚାୟତରାଜ ସଂସ୍ଥାଗୁଡ଼ିକ ନିଷ୍କ୍ରିୟ ହେବାର ଏକ ପ୍ରଧାନ କାରଣ ହେଲା, ଏ ଗୁଡ଼ିକ କ୍ଷମତାର ପ୍ରତିଦ୍ୱନ୍ଦୀ କେନ୍ଦ୍ରବିନ୍ଦୁ ଭବରେ ଗ୍ରହଣ କରାଗଲା । ରାଜନୀତିକ ଓ ପ୍ରଶାସନିକ ଅଧିକାରୀଙ୍କ ହାତରୁ କ୍ଷମତା ଅପସରିଯିବ ବୋଲି ଆଶଙ୍କା କରାଗଲା । ଏହି ସଂସ୍ଥାର ନିର୍ବାଚିତ କର୍ମକର୍ତ୍ତାଙ୍କ ନିକଟକୁ, ଜନସାଧାରଣ କାର୍ଯ୍ୟ ହାସଲ ପାଇଁ ଆସିବା ଦ୍ୱାରା, ବିଧାୟକମାନେ ଏକ ସମାନ୍ତରାଳ ନେତୃତ୍ୱର ଅଭ୍ୟୁତ୍‌ଥାନର ଆଶଙ୍କାରେ ଆତଙ୍କିତ

ହେଲେ । ଏଣୁ ଏହି ସଂସ୍ଥାଗୁଡ଼ିକୁ ସ୍ଥାଣୁ କରିଦେଲେ । ଓଡ଼ିଶାର ପ୍ରାକ୍ତନ ମନ୍ତ୍ରୀ ଶ୍ରୀଯୁକ୍ତ ଅନନ୍ତ ନାରାୟଣ ସିଂହଦେଓ ୯ ଏପ୍ରିଲ ୧୯୮୯ରେ ପଞ୍ଚାୟତରାଜ ବ୍ୟବସ୍ଥା ସମ୍ପର୍କରେ 'ସମାଜ'ରେ ଏକ ପ୍ରବନ୍ଧ ଲେଖି ମନ୍ତବ୍ୟ ହେଲେ, "ବର୍ତ୍ତମାନ ଓଡ଼ିଶାରେ ଯେଉଁ ପଞ୍ଚାୟତ ସମିତି କାର୍ଯ୍ୟ କରୁଛି ତାହା ଗୋଟିଏ ଆଳଙ୍କାରିକ ସଂସ୍ଥା ବ୍ୟତୀତ ଅନ୍ୟ କିଛି ନୁହେଁ । ଏହି ସଂସ୍ଥାର ନିଜସ୍ୱ କୌଣସି ପାଣ୍ଠି ନାହିଁ ବା ସରକାରଙ୍କର କୌଣସି ଅନୁଦାନ ପାଏ ନାହିଁ । ଯତ୍‌କିଞ୍ଚିତ୍ ପାଣ୍ଠି ଆସୁଛି ତାହା ଜିଲ୍ଲା ଡି. ଆର. ଡି. ଏ ସଂସ୍ଥା ଦ୍ୱାରା ସଂପୂର୍ଣ୍ଣ ଭବରେ ପରିଚାଳିତ ଓ ଏହି ସଂସ୍ଥା ବିଧାୟକମାନଙ୍କ ଦ୍ୱାରା ନିୟନ୍ତ୍ରିତ । ପଞ୍ଚାୟତ ସମିତି ଯେଉଁ କାର୍ଯ୍ୟକ୍ରମ ପ୍ରସ୍ତୁତ କରେ ତାହା ପ୍ରତି ଗୁରୁତ୍ୱ ଦିଆଯାଏ ନାହିଁ ଏବଂ ଉପରସ୍ତରରୁ ଅବାସ୍ତବ କାର୍ଯ୍ୟକ୍ରମ ଡି. ଆର୍. ଡି. ଏ ଦ୍ୱାରା ମଞ୍ଜୁର ହୋଇ ଲୋକମାନଙ୍କ ଉପରେ ଲଦି ଦିଆଯାଏ ।"

ପଞ୍ଚାୟତରାଜ ସଂସ୍ଥାମାନଙ୍କର ପ୍ରକୃତରେ କୌଣସି କ୍ଷମତା ନାହିଁ । ସେମାନଙ୍କ କାର୍ଯ୍ୟକଳାପ ଉପରେ ଅମଲାତନ୍ତ୍ରର ଅଖଣ୍ଡ ନିୟନ୍ତ୍ରଣ । ସେ ପୁଣି ଲେଖିଛନ୍ତି "ବିଧାନ ପ୍ରଣୟନ କରିବା ଓ ସରକାରୀ କାର୍ଯ୍ୟକୁ ପରୀକ୍ଷା ନିରୀକ୍ଷା କରି ଅର୍ଥମଞ୍ଜୁର କରିବା ହେଲା ବିଧାୟକମାନଙ୍କର କାର୍ଯ୍ୟ । କିନ୍ତୁ, ବର୍ତ୍ତମାନ ଦେଖାଯାଉଛି ଯେ ତଳସ୍ତରରେ ଉନ୍ନୟନ କାର୍ଯ୍ୟକୁ ନିଜ ଇଚ୍ଛା ଅନୁସାରେ ବଣ୍ଟନ କରି, କାର୍ଯ୍ୟ ସଂପାଦନ ସକାଶେ ବ୍ୟକ୍ତି ନିଯୁକ୍ତି କରିବା ହେଲା ବିଧାୟକମାନଙ୍କର ପ୍ରଧାନ କାର୍ଯ୍ୟ ।" କାଳକ୍ରମେ ପଞ୍ଚାୟତ ସମିତିଗୁଡ଼ିକ ଜିଲ୍ଲାପାଳଙ୍କର କାର୍ଯ୍ୟାଳୟର ଏକ ଅଂଶ ବିଶେଷଭାବେ ପରିଗଣିତ ହୋଇ ଏହାର ଇଙ୍ଗିତରେ ପରିଚାଳିତ ହେଉଅଛି । ପଞ୍ଚାୟତମାନଙ୍କର ଅବସ୍ଥା ଆହୁରି ଶୋଚନୀୟ । ସ୍ଥାନୀୟ ଲୋକମାନଙ୍କର ଆଶା ଆକାଂକ୍ଷା ପୂରଣ ପାଇଁ ପଞ୍ଚ(ୱାର୍ଡମେମ୍ବର), ସରପଞ୍ଚ, ପଞ୍ଚାୟତ ସମିତି ଚେୟାରମ୍ୟାନ ମାନଙ୍କର ବିଶେଷ କ୍ଷମତା ନ ଥିବାରୁ ସେମାନେ କ୍ରମେ ଲୋକଚକ୍ଷୁରେ ନ୍ୟୁନ ହୋଇଯାଇଛନ୍ତି ।

ସ୍ଥାନୀୟ ଲୋକପ୍ରତିନିଧିମାନଙ୍କୁ ଅଧିକ କ୍ଷମତା ଦିଆଯିବାର ଆବଶ୍ୟକତା ରହିଛି । ସରକାରୀ କର୍ମଚାରୀମାନେ ହୃଦୟଙ୍ଗମ କରିବା ଉଚିତ ଯେ ଜନସାଧାରଣଙ୍କର ସକ୍ରିୟ ଅଂଶଗ୍ରହଣ ବିନା କୌଣସି କାର୍ଯ୍ୟକ୍ରମ ବା ଯୋଜନା ସଫଳ ହୋଇପାରିବ ନାହିଁ । ସ୍ଥାନୀୟ ଲୋକପ୍ରତିନିଧିମାନଙ୍କ ମଧ୍ୟରେ ହିଁ ଜନଚେତନା ଓ ଜନସହଯୋଗ ସମ୍ଭବ ହୋଇପାରିବ ।

କର୍ଣ୍ଣାଟକରେ ୧୯୮୭ ଜାନୁୟାରୀରେ ଚତୁଃ ସ୍ତରୀୟ ପଞ୍ଚାୟତରାଜ ବ୍ୟବସ୍ଥାର ପ୍ରଚଳନ କରାଗଲା । (ଦଶହଜାରରୁ ପନ୍ଦର ହଜାର ଲୋକଙ୍କୁ ନେଇ ) ମଣ୍ଡଳ ପଞ୍ଚାୟତ, ତାଲୁକାରେ ତାଲୁକା ପଞ୍ଚାୟତ ଓ ଜିଲ୍ଲାରେ ଜିଲ୍ଲପଞ୍ଚାୟତ ରଖାଗଲା ।

କର୍ଣ୍ଣାଟକର ଜନତା ସରକାର ଓ ପଶ୍ଚିମବଙ୍ଗର ବାମପନ୍ଥୀ ସରକାର ସେହି ସେହି ରାଜ୍ୟରେ ପଞ୍ଚାୟତରାଜ ସଂସ୍ଥାମାନଙ୍କୁ ଯଥେଷ୍ଟ କ୍ଷମତା ଓ ସମ୍ବଳ ଦେଇ ବେଶ ଶକ୍ତିଶାଳୀ କରିଛନ୍ତି । ଏସବୁ ଗ୍ରାମ ସ୍ୱରାଜ୍ୟର ଆଦର୍ଶଠାରୁ ତଥାପିବହୁତ ଦୂରରେ ରହିଛନ୍ତି ।

ଓଡ଼ିଶାରେ ଦ୍ୱିସ୍ତରୀୟ ପଞ୍ଚାୟତ (ଗ୍ରାମପଞ୍ଚାୟତ, ପଞ୍ଚାୟତ ସମିତି) ରହିଛି । ଓଡ଼ିଶାରେ ଚତୁଃସ୍ତରୀୟ ପଞ୍ଚାୟତୀରଜ ବ୍ୟବସ୍ଥା ରହିବା ଆବଶ୍ୟକ । ପ୍ରତି ଗ୍ରାମରେ ପଞ୍ଚାୟତ, ବର୍ତ୍ତମାନର ଗ୍ରାମ ପଞ୍ଚାୟତରେ (ଯାହା କେତେକ ଗ୍ରାମକୁ ନେଇ ଗଠିତ) ମଣ୍ଡଳ ପଞ୍ଚାୟତ, ବ୍ଲକରେ ବ୍ଲକ ପଞ୍ଚାୟତ (ବା ପଞ୍ଚାୟତ ସମିତି) ଜିଲ୍ଲାରେ ଜିଲ୍ଲା ପଞ୍ଚାୟତ(ବା ଜିଲ୍ଲାପରିଷଦ) ରହିବା ଉଚିତ ।

ଭାରତ ଏକ ଗାଁର ଦେଶ । ୧୯୯୧ ଜନଗଣନା ଅନୁସାରେ ଭାରତର ଶତକଡ଼ା ୭୪ ଭାଗ ଲୋକ (ଓଡ଼ିଶାରେ ଶତକଡ଼ା ୮୫ ଭାଗ) ଗ୍ରାମାଞ୍ଚଳରେ ବାସ କରନ୍ତି । ଗ୍ରାମାଞ୍ଚଳର ଉନ୍ନତି ନ ହେଲେ ଭାରତର ଉନ୍ନତି ହୋଇପାରିବ ନାହିଁ । ମହାତ୍ମାଗାନ୍ଧି କହିଥିଲେ, "ଭାରତର ଆତ୍ମା ଗାଁରେ ରହିଛି ।" ମହାତ୍ମାଗାନ୍ଧି କଳ୍ପନା କରିଥିଲେ ଯେ ସ୍ୱାଧୀନ ଭାରତର ଗାଁଗୁଡ଼ିକ ଗୋଟିଏ ଗୋଟିଏ ସ୍ୱୟଂଶାସିତ ଗଣରାଜ୍ୟ ହେବ । ଗାଁମାନଙ୍କ ହାତରେ ସର୍ବାପେକ୍ଷା ଅଧିକ କ୍ଷମତା ଓ ସମ୍ବଳ ରହିଛି । ତାହା ଉପରକୁ ଜିଲ୍ଲା, ରାଜ୍ୟ ଓ କେନ୍ଦ୍ର ସରକାରଙ୍କ ହାତରେ କମ୍ କମ୍ କ୍ଷମତା ରହିବ । ପ୍ରାଚୀନ କାଳରୁ ଗ୍ରାମ ଭାରତରେ ଶାସନ ଓ ବିକାଶର ମୂଳ ବିନ୍ଦୁ ହୋଇ ରହିଛି । ଗ୍ରାମମାନଙ୍କର ବିକାଶ ପାଇଁ ପ୍ରତି ଗ୍ରାମରେ ଏକ ପ୍ରତିନିଧିମୂଳକ ଦକ୍ଷ ଓ ନିର୍ମଳ ସରକାର ରହିବା ଉଚିତ । ସ୍ୱାଧୀନତା ପରେ ୧୯୪୮ରେ ଓଡ଼ିଶାରେ ଗ୍ରାମ ପଞ୍ଚାୟତ ବିଲ୍ ପାଶ୍ ହେଲା ଓ ୧୯୫୨ରେ ଗ୍ରାମ ପଞ୍ଚାୟତ ହେଲା । ଗ୍ରାମ ପଞ୍ଚାୟତ ହାତରେ ଗ୍ରାମ ବିକାଶର ଚାବିକାଠି ରହିଛି ବୋଲି ଧରିନିଆ ଗଲା । କିନ୍ତୁ ସେ ସ୍ୱପ୍ନ ସ୍ୱପ୍ନରେ ରହିଗଲା । ଏହା ଲୋକଶକ୍ତିର ବିକାଶରେ ସାହାଯ୍ୟ କଲା ନାହିଁ । ଏହା ପ୍ରକୃତ ଲୋକ ପ୍ରତିନିଧି ବାଛିବାରେ ବିଫଳ ହେଲା । ଗ୍ରାମର ଆର୍ଥିକ ଓ ସାମାଜିକ ପ୍ରଗତି ପାଇଁ ଜନସହଯୋଗ ସୃଷ୍ଟି କରିବାରେ ସହାୟକ ହେଲା ନାହିଁ । ଗବେଷଣାରୁ ଦେଖାଯାଇଛି ଯେ ଓଡ଼ିଶାର ଗ୍ରାମବାସୀ ଗ୍ରାମପଞ୍ଚାୟତ ପ୍ରତି ବୀତସ୍ପୃହ । (ନାରାୟଣ ହଜାରୀଙ୍କର ୧୯୮୫ରେ ପ୍ରକାଶିତ Grassroot Politics in Rural India ପୁସ୍ତକ ଦ୍ରଷ୍ଟବ୍ୟ । ପ୍ରକାଶକ ଆଗ୍ରାର ଲକ୍ଷ୍ମୀନାରାୟଣ ଅଗ୍ରୱାଲ୍) । ଗ୍ରାମବାସୀମାନେ ସେମାନଙ୍କର ସବୁଠାରୁ ପାରଙ୍ଗମ ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ପଞ୍ଚ ବା ୱାର୍ଡ ମେମ୍ବର ଭାବେ ନିର୍ବାଚିତ କରିବାକୁ ପ୍ରସ୍ତୁତ ନୁହନ୍ତି ।

ଗ୍ରାମ ଏକ ସୁସଂହତ ଆର୍ଥନୀତିକ, ସାମାଜିକ, ରାଜନୀତିକ ଓ ସାଂସ୍କୃତିକ ସଂଗଠନ । ଗ୍ରାମ ହିଁ ଲୋକମାନଙ୍କର ଲୋକଶକ୍ତିର ଆଧାର ବାହାକ ଓ ପ୍ରକାଶକ । ସାମୂହିକ, ସ୍ୱେଚ୍ଛାକୃତ, ସହଯୋଗୀ ଗୋଷ୍ଠୀ ପ୍ରଚେଷ୍ଟା ଦ୍ୱାରା ଗ୍ରାମର ବିକାଶ ହୋଇପାରିବ । କିନ୍ତୁ ଏଥିପାଇଁ କର୍ମପ୍ରେରଣା ଦରକାର । ଏହି କର୍ମ ପ୍ରେରଣାର ସ୍ୱରୂପ ହେଉଛି ରାଜନୀତିକ । ପ୍ରାଚୀନ କାଳରେ ପ୍ରତି ଗ୍ରାମରେ ପଞ୍ଚାୟତ ଥିଲା । ଏହାହିଁ ପ୍ରେରଣାର ଉତ୍ସ ଥିଲା ।

ସ୍ୱାଧୀନତା ପରେ ଦେଶରେ ପଞ୍ଚାୟତ ଗଢ଼ା ହେଲା । ଏହା ସ୍ୱାୟତ୍ତ ଶାସନ ଓ ବିକାଶର ମୂଳଭିତ୍ତିରୂପେ ପରିଗଣିତ ହେଲା । କେରଳ, ତାମିଲନାଡୁ, କର୍ଣ୍ଣାଟକ, ଆନ୍ଧ୍ରପ୍ରଦେଶ, ଗୁଜୁରାଟ, ପଞ୍ଜାବ, ହରିଆନ୍ନା, ଉତ୍ତରପ୍ରଦେଶରେ ପ୍ରତି ଗୋଟିଏ ବା ଦୁଇଟି ଗ୍ରାମ ପାଇଁ ଗୋଟିଏ ପଞ୍ଚାୟତ ରହିଛି । ଭାରତର ୫,୭.୯୩୬ଟି ଗ୍ରାମରେ ୨,୦୦,୦୦୦ ପଞ୍ଚାୟତ ରହିଛି । ଅର୍ଥାତ୍ ପ୍ରତି ୨.୮ ଗ୍ରାମ ପାଇଁ ଗୋଟିଏ ପଞ୍ଚାୟତ ରହିଛି । ଓଡ଼ିଶାରେ ୪୬,୯୮୯ଟି ଗ୍ରାମ ରହିଛି ଓ ୫୨୬୨ ପଞ୍ଚାୟତ ରହିଛି । କିନ୍ତୁ ଓଡ଼ିଶାର ପ୍ରତି ଗ୍ରାମରେ ପଞ୍ଚାୟତ ଗଠନ ନକରି, ହାରାହାରି ୯ଟି ଗ୍ରାମକୁ ନେଇ ଗୋଟିଏ ପଞ୍ଚାୟତ ଗଢ଼ା ହୋଇଛି ।

ହିମାଚଳ ପ୍ରଦେଶକୁ ଛାଡିଦେଲେ ଭାରତର ଆଉ କୌଣସି ରାଜ୍ୟରେ ଏତେ ଗୁଡ଼ିଏ ଗ୍ରାମକୁ ନେଇ ପଞ୍ଚାୟତ ଗଠିତ ହୋଇନାହିଁ । ଏତେଗୁଡ଼ିଏ ଗ୍ରାମକୁ ନେଇ ଗଢ଼ା ହୋଇଥିବା ଗ୍ରାମପଞ୍ଚାୟତ ଦ୍ୱାରା, ଗ୍ରାମବିକାଶର ଆଶା ସୁଦୂର ପରାହତ ହୋଇଛି । ଏତେଗୁଡିଏ ଗାଁକୁ ନେଇ ପଞ୍ଚାୟତ କରିବା ଉତ୍କଳର ଜନମାନସ ଓ ଜନଚେତନା ପ୍ରତି ଘୋର ଅବମାନନା । ଏହା ଗ୍ରାମବାସୀଙ୍କର ଐତିହାସିକ ଚେତନାକୁ ଉଲଘଂନ କରୁଛି । ଏହା ଅପ୍ରାକୃତିକ । ବାସ୍ତବତା ସହିତ ଏହାର କୌଣସି ସଂପର୍କ ନାହିଁ । ଓଡ଼ିଶାର ଗ୍ରାମପଞ୍ଚାୟତଗୁଡ଼ିକ ଗୋଟିଏ ଗୋଟିଏ ମୌଳିକ ଏକକ ଅନୁଷ୍ଠାନ ରୂପରେ କାର୍ଯ୍ୟ କରିପାରୁ ନାହିଁ । ଗ୍ରାମର ଲୋକମାନେ ପ୍ରତ୍ୟେକ୍ଷ ଭାବରେ ଗ୍ରାମ ପଞ୍ଚାୟତ ଶାସନ କ୍ଷେତ୍ରରେ ଅଂଶ ଗ୍ରହଣ କରିବାକୁ ସୁଯୋଗ ପାଉ ନାହାନ୍ତି । ତା'ଛଡା ଗୋଟିଏ ପଞ୍ଚାୟତ ଅନ୍ତର୍ଗତ ବିଭିନ୍ନ ଗ୍ରାମ ମଧ୍ୟରେ ଏକତା ନଥିବାରୁ, ସାମୂହିକ ଭାବରେ ଓ ସର୍ବସମ୍ମତିକ୍ରମେ କୌଣସି ନିଷ୍ପତ୍ତି ନିଆଯାଇ ପାରୁ ନାହିଁ । ପୁଣି ସରପଞ୍ଚ କେବଳ ଗୋଟିଏ ନିର୍ଦ୍ଦିଷ୍ଟ ଗ୍ରାମର ହୋଇଥିବାରୁ ଅନ୍ୟ ଗ୍ରାମର ସମସ୍ୟା ପ୍ରତି ସେ ବିଶେଷ ଦୃଷ୍ଟି ଦେଇପାରୁ ନାହାନ୍ତି । କିମ୍ବା ଅନ୍ୟ ଗ୍ରାମଗୁଡ଼ିକର ଲୋକମାନେ ତାଙ୍କ ପ୍ରତି ଯଥେଷ୍ଟ ଆନୁଗତ୍ୟ ଓ ଆସ୍ଥା ପ୍ରକାଶ କରୁନାହାନ୍ତି ।

ପ୍ରାଚୀନ କାଳରୁ ଗ୍ରାମହିଁ ପଞ୍ଚାୟତର ପୀଠ ଥିଲା । ଗ୍ରାମବାସୀଙ୍କ ପାଇଁ ତାଙ୍କ ନିଜ ଗ୍ରାମ ହିଁ ତାଙ୍କ ସଂସାର । ନିଜ ଗ୍ରାମର ପ୍ରଗତି ପାଇଁ ଲୋକମାନଙ୍କର ସ୍ୱାଭାବିକ ଆଗ୍ରହ ଓ ସାମୂହିକ ଦାୟିତ୍ୱ ଥାଏ । କେତେଗୁଡ଼ିଏ ଗ୍ରାମକୁ ନେଇ ହୋଇଥିବା ପଞ୍ଚାୟତକୁ ଗ୍ରାମବାସୀ ନିଜର କରିପାରୁ ନାହାନ୍ତି । ୯ ଟି ଗ୍ରାମକୁ ନେଇ ହୋଇଥିବା ପଞ୍ଚାୟତରେ ନିଜ ସ୍ୱାର୍ଥ, ପ୍ରଗତି ଓ ଭବିଷ୍ୟତର ପ୍ରତିଫଳନ ଦେଖି ପାରୁ ନାହାନ୍ତି । ଗ୍ରାମବାସୀମାନେ ଦାରିଦ୍ର୍ୟ ବିରୋଧରେ ଜୀବନ ସଂଗ୍ରାମରେ ଏତେ ଘନିଷ୍ଠ ଭାବରେ ଜଡ଼ିତ ଯେ ଅନ୍ୟ ଗ୍ରାମର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କୁ ଜାଣିବା ପାଇଁ ତାଙ୍କର ଅବସର ନାହିଁ । ଏହି ପରିପ୍ରେକ୍ଷୀରେ ବାହାର ଗ୍ରାମର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ଉପରେ ଆସ୍ଥା ରଖିବାର ପ୍ରଶ୍ନ ଉଠୁନାହିଁ ।

ଯେଉଁଠି ଗୋଷ୍ଠୀ ଜୀବନ ରହିଛି । ସେଠାରେ ପଞ୍ଚାୟତ ରହିବା ଉଚିତ୍ । ଗୋଷ୍ଠୀଜୀବନ ରହିଥିବା ସଂଗଠନରେ ହିଁ ଅର୍ଥନୀତିକ ଉନ୍ନତି ଓ ସାମାଜିକ ପ୍ରଗାତି ପାଇଁ ମାନବସମ୍ବଳକୁ କ୍ରିୟାଶୀଳ କରାଯାଇ ପାରିବ । କେବଳ ଗ୍ରାମରେ ହିଁ ଗୋଷ୍ଠୀ ଜୀବନ ରହିଛି । ଏଠାରେ ଗୋଷ୍ଠୀ କାର୍ଯ୍ୟକ୍ରମ ପାଇଁ ଅବକାଶ ରହିଛି । ସ୍ୱେଚ୍ଛାକୃତ, ସହଯୋଗମୂଳକ ଗୋଷ୍ଠୀ ପ୍ରଚେଷ୍ଟା ପାଇଁ ଓ ଜନସାଧାରଣଙ୍କ ମଙ୍ଗଳ ପାଇଁ ଜନତାକୁ ସଂଗଠିତ ଓ ସକ୍ରିୟ କରିବାର ସୁଯୋଗ ଏଠରେ ରହିଛି । ଗୋଷ୍ଠୀ ପ୍ରଚେଷ୍ଟା ସାମୂହିକ ଜୀବନ ବିକାଶର ମନ୍ତ୍ରଦାତା । ଗ୍ରାମରେ ଗୋଷ୍ଠିଗତ ଉଦ୍ୟମ ପାଇଁ ସୁଯୋଗ ରହିଛି । ଗ୍ରାମର ରାଜନୀତିକ ଜୀବନର ପଛଦପଟରେ ଯେଉଁ ନୈତିକ ପଟଭୂମି ରହିଛି, ତାହା ୯ଟି ଗ୍ରାମକୁ ନେଇ ହୋଇଥିବା ପଞ୍ଚାୟତରେ ନ ରହିପାରେ । ଗ୍ରାମ୍ୟ ଜୀବନରେ ଯେଉଁ ସାମାଜିକତା ରହିଛି, ସେଥିରୁ ଉଦ୍ଭୁତ ହେଉଛି ଏହାର ନୈତିକତା ।

ପ୍ରତିଗାଁରେ ପଞ୍ଚାୟତ ହେବା ଦ୍ୱାରା ଗ୍ରାମବାସୀଙ୍କ ଉପରେ ପ୍ରତ୍ୟକ୍ଷ ନିୟନ୍ତ୍ରଣ ରହିବ । ଗ୍ରାମବାସୀଙ୍କ ଆଖି ଆଗରେ ପଞ୍ଚାୟତର କାର୍ଯ୍ୟକଳାପ ସଂଘଟିତ ହେବ । ଗ୍ରାମବାସୀଙ୍କର ଅଭାବ, ଅସୁବିଧା ପଞ୍ଚାୟତ ଅନାୟାସରେ ଜାଣିପାରିବ । ଗ୍ରାମବାସୀଙ୍କର ଚାହିଦା ପଞ୍ଚାୟତରେ ସହଜରେ ପ୍ରତିଫଳିତ ହୋଇପାରିବ । ପଞ୍ଚାୟତ ଲୋକମାନଙ୍କ ନିକଟରେ ଉତ୍ତରଦାୟୀ ହେବାର କ୍ଷେତ୍ର ରହିବ ।

ଗଣତନ୍ତ୍ର ଶାସନର ମୂଳଭିତ୍ତି ହେଲା ଲୋକମାନେ ନିଜ କଥା ନିଜେ ବୁଝିବେ । ନିଜର ସମସ୍ୟାଗୁଡ଼ିକ ନିଜେ ନିର୍ଣ୍ଣୟ କରିବେ । ସେଗୁଡ଼ିକର ସମାଧାନ ମଧ୍ୟ କରିବେ । ନିଜର ବିଫଳତା ପାଇଁ ଅନ୍ୟମୁଣ୍ଡରେ ଅଠା ବୋଳିବେ ନାହିଁ । ଏହା ଫଳରେ ଦାୟିତ୍ୱସଂପନ୍ନ ହେବେ । ଆତ୍ମନିର୍ଭରଶୀଳ ହେବେ । ନିଜ ଗୋଡରେ ନିଜେ ଠିଆ ହେବେ । ପରମୁଖାପେଖୀ ହେବେ ନାହିଁ । ଯେଉଁଠି ଗୋଷ୍ଠୀ ଜୀବନ

ରହିଛି । ସେଠରେ ଲୋକମାନଙ୍କୁ ନିଜର ସମସ୍ୟା ସମାଧାନ ପାଇଁ ଦାୟିତ୍ୱ ଦିଆଯିବା ଉଚିତ୍ ।

ଗ୍ରାମରେ ଗୋଷ୍ଠୀ ଜୀବନ ରହିଛି । ଗ୍ରାମର ଲୋକେ ନିଜର ସମସ୍ୟା ଗୁଡ଼ିକର ସମାଧାନ ପାଇଁ ନିଜେ ଦାୟିତ୍ୱ ନେବା ଉଚିତ୍ । ଏଥିପାଇଁ ଏକ ରାଜନୀତିକ ଅନୁଷ୍ଠାନ ଦରକାର । ପଞ୍ଚାୟତ ହେଉଛି ଏହି ଅନୁଷ୍ଠାନ । ବର୍ତ୍ତମାନ ପ୍ରତି ଗ୍ରାମରେ ଥିବା ପଲ୍ଲୀ ସଭାର କାର୍ଯ୍ୟପାଳିକା ନାହିଁ । ଏଣୁ ପଲ୍ଲୀସଭା ନିଷ୍କ୍ରିୟ ହୋଇପଡ଼ିଛି ।

ପ୍ରତି ଗ୍ରାମରେ ପଞ୍ଚାୟତ ରହିଲେ, ଗୋଷ୍ଠୀ କାର୍ଯ୍ୟ ପାଇଁ ଏକ ରାଜନୀତିକ ସଂଗଠନ ରହିବ । ସାମୂହିକ କାର୍ଯ୍ୟଦ୍ୱାରା ଗୋଷ୍ଠୀ ଜୀବନ ଦୃଢ଼ୀଭୂତ ହେବ । ଏହାଦ୍ୱାରା ଲୋକମାନଙ୍କର ବିଚାରଧାରା, ପରସ୍ପର ମଧ୍ୟରେ ବୁଝାବଣା ଓ ସହଯୋଗଭାବ ଋଦ୍ଧିମନ୍ତ ହେବ । ଲୋକମାନେ ବିରୋଧ ମତ ପ୍ରତି ସହନଶୀଳ ମନୋଭାବ ପ୍ରଦର୍ଶନ କରିବା ଶିଖିବେ ଓ ବିରୋଧମତ ସଂପନ୍ନ ବ୍ୟକ୍ତିମାନଙ୍କ ସଙ୍ଗେ ମିଳିମିଶି କାମ କରିବା ଶିଖିବେ ।

ପ୍ରତି ଗ୍ରାମରେ ପଞ୍ଚାୟତ ପ୍ରତିଷ୍ଠିତ ହେଲେ ଲୋକମାନେ ରାଜନୀତିକ ଶିକ୍ଷା ଲାଭ କରିବେ । ଗ୍ରାମସଭାରେ ପଞ୍ଚାୟତ କିପରି ନିଷ୍ପତ୍ତି ନେଉଛି, ତାହା ସର୍ବସାଧାରଣ ସ୍ୱଚକ୍ଷୁରେ ଦେଖିପାରିବେ । ଉନ୍ନୟନମୂଳକ କାର୍ଯ୍ୟ ସବୁ କରିବାରେ ପଞ୍ଚାୟତ କେତେଦୂର ନିଷ୍ଠା, ଦକ୍ଷତା ଓ ସଚ୍ଚୋଟପଣିଆ ପ୍ରଦର୍ଶନ କରୁଛି ତାହା ଜନସାଧାରଣ ଜାଣିପାରିବେ ।

ପ୍ରତିନିଧିମାନଙ୍କୁ ସେମାନଙ୍କ କାର୍ଯ୍ୟ ଦ୍ୱାରା (ପ୍ରତିଶ୍ରୁତି ଦ୍ୱାରା ନୁହେଁ) ବିଚାର କରିବା ଅଭ୍ୟାସ ନାଗରିକମାନଙ୍କର ବିକାଶ ଲାଭ କରିବ । କାରଣ ସବୁକଥାର ଲୋକମାନଙ୍କ ସମ୍ମୁଖରେ ଘଟିବ ଓ ସବୁକଥା ସେମାନେ ଜାଣିପାରିବେ । ପ୍ରତିନିଧିମାନଙ୍କର ସତ୍ୟ ଓ ଛଳନା ମଧ୍ୟରେ ତଫାତ୍ ସେମାନଙ୍କୁ ଅଜଣା ରହିବ ନାହିଁ । ପ୍ରତିଗ୍ରାମରେ ପଞ୍ଚାୟତ ରହିଲେ ରାଜନୀତିକ ଜୀବନ ଓ ସର୍ବ ସାଧାରଣଙ୍କର ସମସ୍ୟା ସଂପର୍କରେ ଜନସାଧାରଣଙ୍କର ଆଗ୍ରହ ବଜାୟ ରହିବ । ଏହା ନାଗରିକ ଚେତନା ସମୃଦ୍ଧ କରିବ ଓ ନାଗରିକତାର ଶିକ୍ଷାପୀଠ ଭାବେ କାର୍ଯ୍ୟ କରିବ । ଯେତେବେଳେ ଲୋକମାନେ ସେମାନଙ୍କର ସମସ୍ୟା ବୁଝିବେ, ନିଜର ଦାୟିତ୍ୱ ସଂପର୍କରେ ସଚେତନ ହେବେ ଏବଂ ନିଜର ପ୍ରତିନିଧିମୂଳକ ସ୍ଥାନୀୟ ସରକାରର କାର୍ଯ୍ୟକଳାପକୁ ସଦାସର୍ବଦା ନିରୀକ୍ଷଣ କରିବେ,ସେତେବେଳେ ଗୋଷ୍ଠୀ ଜୀବନ ଜୀବନ୍ତ ହୋଇଉଠିବ ।

ସ୍ଥାନୀୟ ସରକାର ନେତୃତ୍ୱ ଗଢ଼ିବାରେ ଏକ ପ୍ରଶିକ୍ଷଣ କେନ୍ଦ୍ର । ପ୍ରତିଗ୍ରାମରେ ପଞ୍ଚାୟତ ହେଲେ, ଗ୍ରାମର ସାମୂହିକ ଚେତନା ସଂପନ୍ନ ଓ ସର୍ବସାଧାରଣଙ୍କ ମଙ୍ଗଳ ପ୍ରତି ଆଗ୍ରହୀ ଲୋକମାନଙ୍କୁ ସମାଜସେବା କରିବା ପାଇଁ ସୁଯୋଗ ମିଳିବ । ଏହି ଅନୁଭୂତି ସିଦ୍ଧ ଓ କଷଟି ପଥରେ ପରିକ୍ଷୀତ ବ୍ୟକ୍ତିମାନଙ୍କ ମଧ୍ୟରୁ ମଣ୍ଡଳ ପଞ୍ଚାୟତ, ବ୍ଲକ ପଞ୍ଚାୟତ ( ପଞ୍ଚାୟତ ସମିତି), ଜିଲ୍ଲା ପଞ୍ଚାୟତ ( ଜିଲ୍ଲା ପରିଷଦ), ରାଜ୍ୟ ଓ ଦେଶ ପାଇଁ ନେତୃତ୍ୱ ମିଳିବ ।

ଭାରତକୁ ଆର୍ଥନୀତିକ ଓ ସାମାଜିକ ପ୍ରଗତି ପଥରେ ଆଗେଇ ନେବାକୁ ହେଲେ, ଗ୍ରାମର ଭିତ୍ତିଭୂମି ଉପରେ ଦେଶକୁ ଗଢ଼ିବାକୁ ହେବ । ଗଣତନ୍ତ୍ର ଓ ବିକାଶର ଚାବିକାଠି ଗ୍ରାମହାତରେ ରହିଛି । ଗ୍ରାମରେ ଯେଉଁ ଗୋଷ୍ଠୀଜୀବନ ରହିଛି ତାହାକୁ ସକ୍ରିୟ କରି ସଦୁପଯୋଗ କରିବାକୁ ହେବ। ଗ୍ରାମରେ ପଞ୍ଚାୟତ କରିବା ଦ୍ୱାରା ଗ୍ରାମରେ ଥିବା ଲୋକମାନଙ୍କ ସ୍ୱୀକୃତି ରାଜନୀତିକ ଶକ୍ତିକୁ ସରକାର ସ୍ୱୀକୃତି ଦେବେ ଓ ସୁଦୃଢ଼ କରିବେ । ସେ କଥା ନ କରିବାରୁ, ଗ୍ରାମର ରାଜନିତିକ ଶକ୍ତି ଅଥର୍ବ ଓ ଅଚଳ ହୋଇ ରହିଛି । ଆବହମାନ କାଳରୁ ପ୍ରତି ଗ୍ରାମରେ ଯେଉଁ ପଞ୍ଚାୟତ ଥିଲା ତାହାର ଅବକ୍ଷୟ ଘଟିବାରେ ଲାଗିଛି । ଏହା ପଙ୍ଗୁ ହୋଇଯାଉଚି । ଏହା ବର୍ତ୍ତମାନ ମୃତପ୍ରାୟ ।

ଗ୍ରାମରେ ଥିବା ଲୋକମାନଙ୍କ ସ୍ୱୀକୃତ ରାଜନୈତିକ ଶକ୍ତିକୁ ସରକାର ସ୍ୱୀକୃତି ନ ଦେବା ଦ୍ୱାରା ଏକ ବିରାଟ ଗ୍ରାମପଞ୍ଚାତ ଏହି ଶୂନ୍ୟତା ସୃଷ୍ଟି ହୋଇଛି । ବର୍ତ୍ତମାନର ଗ୍ରାମପଞ୍ଚାୟତ ଏହି ଶୂନ୍ୟତାର ସୁଯୋଗ ନେଇ ଗ୍ରାମ ଜୀବନକୁ କଳୁଷିତ ଓ ବିଷାକ୍ତ କରି ଦେଉଛି । ଅବିଳମ୍ବେ ଭାରତବର୍ଷର ହଜାର ହଜାର ବର୍ଷର ମୂଳଧନ (ପ୍ରତି ଗ୍ରାମରେ ପଞ୍ଚାୟତ ବ୍ୟବସ୍ଥା) ସମ୍ପୂର୍ଣ୍ଣ ନଷ୍ଟ ହୋଇଯିବ । ଯେତେ ଶୀଘ୍ର ପ୍ରତିଗ୍ରାମରେ ଥିବା ପାରମ୍ପରିକ ପଞ୍ଚାୟତର ଗଣତାନ୍ତ୍ରୀକରଣ ଓ ଆଧୁନିକୀକରଣ କରାଯିବ, ଦେଶ ପକ୍ଷରେ ତାହା ମଙ୍ଗଳପ୍ରଦ ହେବ । ଆମ ହାତରେ ଆଉ ସମୟ ନାହିଁ । ଆମକୁ ଅବିଳମ୍ବେ ପଦକ୍ଷେପ ନେବାକୁ ହେବ ।

ଗ୍ରାମରେ ଯେଉଁ ପଞ୍ଚାୟତ ହେବ ସେଥିରେ ପାଞ୍ଚଜଣ ପଞ୍ଚ ରହିବେ । ବଡ଼ ଗ୍ରାମରେ ଅଧିକ ପଞ୍ଚ ରହି - ପାରିବେ । ଏହି ପଞ୍ଚମାନଙ୍କ ମଧ୍ୟରୁ ଜଣେ ଗ୍ରାମର ମୁଖ୍ୟ ରହିବେ । ଏହି ପଞ୍ଚମାନେ ୱାର୍ଡ଼ରୁ ନିର୍ବାଚିତ ନ ହୋଇ, ସାରା ଗ୍ରାମରୁ ନିର୍ବାଚିତ ହେବେ । ଏହା ଫଳରେ ଗ୍ରାମରେ ସଂହତି ବଢ଼ିବ । ଦଳିତ(ହରିଜନ) ଓ ଆଦିବାସୀମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ ହେବ । ପଞ୍ଚମାନେ ସାବାଳକ ଗୁପ୍ତ ମତଦାନ ଦ୍ୱାରା ପ୍ରତ୍ୟକ୍ଷ ଭାବରେ ନିର୍ବାଚିତ ହେବେ । ଗ୍ରାମର ମୁଖ୍ୟଙ୍କୁ ଗ୍ରାମଣୀ କୁହାଯାଉଥିଲା ।

ଦେଶରେ ପ୍ରଧାନମନ୍ତ୍ରୀ, ରାଜ୍ୟରେ ମୁଖ୍ୟମନ୍ତ୍ରୀ, ଜିଲା ପରିଷଦରେ ଚେୟାରମ୍ୟାନ, ପଞ୍ଚାୟତ ସମିତିରେ ଚେୟାରମ୍ୟାନ(ଯାହାକୁ ମଣ୍ଡଳ ପଞ୍ଚାୟତ କୁହାଯିବ), ସରପଞ୍ଚ ଥିବାବେଳେ, ଗ୍ରାମରେ ଜଣେ ମୁଖ୍ୟ ରହିବେ ନାହିଁ କାହିଁକି ? କେତେକ ଆଶଙ୍କା କରିପାରନ୍ତି ଯେ, ଗ୍ରାମମୁଖ୍ୟ ପଦ ସୃଷ୍ଟି ହେଲେ ସାମନ୍ତବାଦୀ ପ୍ରଥା ପୁଣି ଲେଉଟିବ । ଏପରି ଆଶଙ୍କା ଅମୂଳକ । କାରଣ ଗ୍ରାମମୁଖ୍ୟ ବା ଗ୍ରାମପତି ଲୋକମାନଙ୍କ ଦ୍ୱାରା ନିର୍ବାଚିତ ହେବେ । ଗ୍ରାମରେ ଜଣେ ମୁଖ୍ୟ ରହିଲେ ଗ୍ରାମରେ ଶାସନ ଓ ବିକାଶ ସୁଦୃଢ଼ ହେବ । ବର୍ତ୍ତମାନ ଗ୍ରାମମାନ ଯେପରି ଶାସନହୀନ ହୋଇ ପଡ଼ିଛନ୍ତି ସେଥିରେ ଜନସାଧାରଣ ଓ ସରକାରଙ୍କ ପାଇଁ ଯୋଗ ସୂତ୍ରର କେନ୍ଦ୍ର ।

ମରୁଡ଼ିବେଳେ ଗ୍ରାମ ପୁଷ୍କରିଣୀରୁ ପାଣି ମଡ଼ାହେଲାବେଳେ (ଯେତେବେଳେ ବଳଶାଳୀ ଚାଷୀମାନେ ଅନ୍ୟମାନଙ୍କୁ ପାଣି ନଦେଇ ନିଜ ଜମିକୁ ଆଗେ ପାଣି ନିଅନ୍ତି), ଗ୍ରାମ ସଭା ବସି ଏହି ଅବ୍ୟବସ୍ଥାର ବିଚାର କରିବା ଅପରିହାର୍ଯ୍ୟ ହୋଇପଡ଼େ । କିନ୍ତୁ ଗ୍ରାମସଭା ଡ଼ାକିବ କିଏ ? କିଏ ଯେତେବେଳେ ସରକାରୀ ଜାଗା ମାଡ଼ିଯାଏ, ସର୍ବସାଧାରଣ ପୋଖରୀରୁ ମାଛ ଚୋରୀ ହୁଏ, ସର୍ବସାଧାରଣ ଗଛ କଟା ଯାଏ - ଏକଥାର ଆଲୋଚନା ପାଇଁ ଗ୍ରାମସଭା ଡାକିବ କିଏ ? ଗ୍ରାମର ଦାୟିତ୍ୱ କାହା ଉପରେ ନ୍ୟସ୍ତ କରାଯାଇନାହିଁ । ବିଲାତସ୍ଥିତ ପ୍ରଫୁଲ୍ଲ ମହାନ୍ତି କହିଛନ୍ତି, "ଆମ ଗ୍ରାମମାନଙ୍କରେ ବିଶୃଙ୍ଖଳା ଅଧିଷ୍ଠିତ ହୋଇଛି । ଗ୍ରାମର ପରିଚାଳନା ପାଇଁ କେହି ଗ୍ରାମମୁଖ୍ୟ ନଥିବାରୁ ଏପରି ହୋଇଛି" ।

ଗ୍ରାମରେ ଜଣେ ମୁଖ୍ୟ ରହିଲେ ସେ ଅନ୍ୟ ପଞ୍ଚମାନଙ୍କ ସହଯୋଗରେ ଗ୍ରାମକୁ ଦିଗ୍‌ଦର୍ଶନ ଦେବେ । ଗ୍ରାମର ମୁଖ୍ୟ ସମସ୍ୟାଗୁଡ଼ିକର ନିଷ୍ପତ୍ତି ପଞ୍ଚପରମେଶ୍ୱରଙ୍କ ଦ୍ୱାରା ଗ୍ରାମ ସଭାରେ ହେବ । ଏହାଦ୍ୱାରା ସରକାରଙ୍କର ମଧ୍ୟ ସୁବିଧା ହେବ । ଗାଁରୁ ଜଳକର ଆଦାୟ ନହେଲେ, ସରକାରୀ ଋଣ ପରିଶୋଧ ନହେଲେ, ଗ୍ରାମରେ ହାଣକାଟ ହେଲେ ବର୍ତ୍ତମାନ ସରକାର ଅନ୍ଧାରରେ ବାଡ଼ି ବୁଲାଉଛନ୍ତି । ଗ୍ର ାମର ଜଣେ ମୁଖ୍ୟ ରହିଲେ, ସେ ସରକାରଙ୍କ ପାଇଁ ଯୋଗସୂତ୍ରର ବିନ୍ଦୁ ହେବେ । ବର୍ତ୍ତମାନର ୱାର୍ଡ଼ମେମ୍ବର ଗ୍ରାମର ପ୍ରାକୃତିକ ନେତା ନୁହନ୍ତି । ସେ ଯୋଗସୂତ୍ରରେ ବିନ୍ଦୁ ହୋଇପାରୁ ନାହାନ୍ତି । ମଣ୍ଡଳ ପଞ୍ଚାୟତର ସଭ୍ୟମାନଙ୍କୁ ପ୍ରଧାନ ଓ ମୁଖ୍ୟଙ୍କୁ ସରପଞ୍ଚ କୁହାଯାଇ ପାରିବ । ଏମାନେ ସମସ୍ତେ ପ୍ରତ୍ୟକ୍ଷ ଭାବରେ ନିର୍ବାଚିତ ହେବେ । ବ୍ଲକ ପଞ୍ଚାୟତ ବା ପଞ୍ଚାୟତ ସମିତିର ମୁଖ୍ୟଙ୍କୁ ଚେୟାରମ୍ୟାନ କୁହା ନ ଯାଇ ଅଧିକାରୀ କୁହାଯାଇ ପାରିବ । ସେ ଓ ବ୍ଲକ ପଞ୍ଚାୟତର ସଭ୍ୟମାନେ ପ୍ରତ୍ୟକ୍ଷ ବାବେ ନିର୍ବାଚିତ ହେଉଥିବାରୁ ଏହା ଦୁର୍ନୀତିର ଗନ୍ତାଘର ହୋଇଛି । ଜିଲ୍ଲା ପଞ୍ଚାୟତ ବା ଜିଲ୍ଲା ପରିଷଦର

ମୁଖ୍ୟଙ୍କୁ ଅଧକ୍ଷ କୁହାଯାଇ ପାରିବ । ବିଦେଶୀଚେୟାରମ୍ୟାନ ଶବ୍ଦ ଯୋଗୁ ଉପରୋକ୍ତ ସଂସ୍ଥାଗୁଡ଼ିକ ଲୋକମାନଙ୍କ ପାଖରେ ଗ୍ରହଣୀୟ ହେବାରେ ବାଧା ସୃଷ୍ଟି ହେଉଛି । ଜିଲା ପଞ୍ଚାୟତ, ବ୍ଲକ ପଞ୍ଚାୟତ ଓ ମଣ୍ଡଳ ପଞ୍ଚାୟତର କାର୍ଯ୍ୟକାଳ ଲୋକସଭା ଓ ବିଧାନସଭା ପରି ପାଞ୍ଚବର୍ଷ ରଖାଯାଇ ପାରେ । କିନ୍ତୁ ପଞ୍ଚାୟତର କାର୍ଯ୍ୟକାଳ ମାତ୍ର ଏକ ବର୍ଷ ରହିବା ଶ୍ରେୟସ୍କର । ପୁରୀ ଜିଲ୍ଲାର ନୟାଗଡ଼ ବ୍ଲକର ବୁଦ୍ଧଗ୍ରାମ (କେଶରପୁର)ରେ ୧୯୬୧ ମସିହାରୁ ପ୍ରତ୍ୟକ୍ଷ ନିର୍ବାଚନ ଦ୍ୱାରା ପାଞ୍ଚଜଣ ପ୍ରତିନିଧି ପ୍ରତିବର୍ଷ ବଛା ଯାଉଛନ୍ତି । ପ୍ରଥମେ ପ୍ରତିନିଧିମାନେ ପାଞ୍ଚବର୍ଷ ପାଇଁ ନିର୍ବାଚିତ ହେଉଥିଲେ ।

କିନ୍ତୁ ଦେଖାଗଲା ଯେ ଲୋକମାନଙ୍କର ସେମାନଙ୍କ ଉପରେ ଏତେ ଦିନ ଆସ୍ଥା ରହିଲା ନାହିଁ ଓ ପ୍ରତିନିଧିମାନେ ମଧ୍ୟ ଗ୍ରାମବାସୀଙ୍କ ସମର୍ଥନର ଅଭାବରେ ଶାସନ କାର୍ଯ୍ୟ ଓ ଉନ୍ନୟନ କାର୍ଯ୍ୟ ପାଇଁ କର୍ତ୍ତୃତ୍ୱ ଜାରି କରିପାରିଲେ ନାହିଁ । ତେଣୁ ୧୯୬୯ ମସିହାରୁ ଏହି ଗ୍ରାମରେ ପ୍ରତିବର୍ଷ ନିର୍ବାଚନ ହେଉଛି ।

ମାତ୍ର ଏକ ବର୍ଷ ପାଇଁ ନିର୍ବାଚିତ ହେବା ଦ୍ୱାରା ଗ୍ରାମ ଶାସନର ସ୍ଥିରତାରେ ଆଞ୍ଚ ଆସେ ନାହିଁ । ଅନୁଭୂତିରୁ ଦେଖାଯାଇଛି ଯେ, ଗ୍ରାମର ପ୍ରାକୃତିକ ନେତାମାନେ ପଞ୍ଚଭାବରେ ବାରମ୍ବାର ନିର୍ବାଚିତ ହୁଅନ୍ତି । ମହାତ୍ମାଗାନ୍ଧି ପ୍ରତି ଗ୍ରାମର ପଞ୍ଚାୟତରେ ବାର୍ଷିକ ନିର୍ବାଚନର ଆବଶ୍ୟକତା ଉପରେ ଗୁରୁତ୍ୱ ଦେଇଛନ୍ତି ।

କେ. ହନୁମାନ୍ତାୟାଙ୍କ ଅଧ୍ୟକ୍ଷତାରେ ଗଠିତ ପ୍ରଶାସନିକ ସଂସ୍କାର ଆୟୋଗ ୧୯୬୬-୭୦ରେ ପଞ୍ଚାୟତରାଜ ସମ୍ପର୍କରେ ରିର୍ପୋଟ ଦେଇ କହିଛନ୍ତି "ସାଧାରଣତଃ ପ୍ରତି ଗ୍ରାମରେ ପଞ୍ଚାୟତ ରହୁ ।" ଓଡ଼ିଶାର ବିଶିଷ୍ଟ ସର୍ବୋଦୟନେତା ମନମୋହନ ଚୌଧୁରୀ କହନ୍ତି, "ପ୍ରତି ଗ୍ରାମରେ ପଞ୍ଚାୟତ ରହୁ । ବର୍ତ୍ତମାନ ଓଡ଼ିଶାରେ ଥିବା ପଞ୍ଚାୟତ, ତା ଉପର ସ୍ତରର ସ୍ୱାୟତ୍ତ ଶାସନ ସଂସ୍ଥା ହୋଇ ରହୁ ।" ଭାରତର ସମ୍ବିଧାନର ୪୦ ଧାରାରେ ଗ୍ରାମ ପଞ୍ଚାୟତ ଗଠନ କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଛି । ଏହାର ଅର୍ଥ ପ୍ରତି ଗ୍ରାମରେ ପଞ୍ଚାୟତ ଗଠନ କରିବା । କିନ୍ତୁ ଏହାର ଉଲଂଘନ କରାଯାଇଛି । ନୀତି ନିର୍ଦ୍ଧାରଣକାରୀ ଓ ପଦାଧିକାରୀମାନଙ୍କର ଗଣତନ୍ତ୍ର ଉପରେ ବିଶ୍ୱାସ ନଥିବାରୁ, ଲୋକମାନଙ୍କ ଆଖିରେ ଧୂଳି ଦେଇ ଏକ ନାମକୁମାତ୍ର ପଞ୍ଚାୟତ ଗଠନ କରାଯାଇଛି । ବର୍ତ୍ତମାନର ପଞ୍ଚାୟତ ଏକ ପ୍ରହସନ । ଏହା ଏକ ଧୂଆଁବାଣ । ଏହା କୃତ୍ରିମ । ତେଣୁ ଏହା ବିଫଳ ହୋଇଛି ।

ଆଶୋକ ମେହେଟା କମିଟି କହିଛନ୍ତି, "ଯଦିଓ ଆମେ ଦୁଇସ୍ତରୀୟ ପଞ୍ଚାୟତ ବ୍ୟବସ୍ଥା ଚାହୁଁଛୁ, ତେବେ ପଞ୍ଚାୟତ ସମିତି ଓ ଗ୍ରାମପଞ୍ଚାୟତ ରହିପାରେ ।" ଅର୍ଥାତ୍

କମିଟି ଏକ ଚତୁଃସ୍ତରୀୟ ପଞ୍ଚାୟତରାଜ ବ୍ୟବସ୍ଥାର ଆବଶ୍ୟକତା ଅନୁଭବ କରିଛନ୍ତି । ଓଡ଼ିଶାର ପ୍ରାୟ ପ୍ରତି ଗ୍ରାମରେ(ଛୋଟ ଗ୍ରାମକୁ ଛାଡ଼ି) ପଞ୍ଚାୟତ ରହୁ । ପ୍ରାୟ ୧୦ ହଜାର ଲୋକଙ୍କୁ ନେଇ ଗ୍ରାମ ପୁଞ୍ଜରେ ମଣ୍ଡଳ ପଞ୍ଚାୟତ ହେଉ । (ବର୍ତ୍ତମାନର ଗ୍ରାମପଞ୍ଚାୟତ ମଣ୍ଡଳ ପଞ୍ଚାୟତରେ ରୂପାନ୍ତରିତ କରାଯାଇପାରେ) । ୯ (ନଅ)ଖଣ୍ଡ ଗ୍ରାମକୁ ନେଇ ହୋଇଥିବା ମଣ୍ଡଳ ପଞ୍ଚାୟତ ନିମ୍ନଲିଖିତ କାର୍ଯ୍ୟ କରିପାରିବ । ମରୁଡ଼ିବେଳେ କେତେକ ସମ୍ମିଳିତ ଉଦ୍ୟମରେ ବନ୍ଧ ପକାଇ ଜଳସେଚନର ବ୍ୟବସ୍ଥା କରିପାରିବ । ଗ୍ରାମପୁଞ୍ଜିଗୁଡ଼ିକ ପାର୍ଶ୍ୱବର୍ତ୍ତୀ ଜଙ୍ଗଲର ସୁରକ୍ଷା, ଡ଼ାକ୍ତରଖାନା, ହାଇସ୍କୁଲ, କଲେଜ ଆଦି କରିପାରିବ । ବ୍ଲକସ୍ତରରେ ରହିଥିବା ପଞ୍ଚାୟତ ସମିତି ଅବ୍ୟାହତ ରହୁ । ଏହାର ନାମ ବ୍ଲକ ପଞ୍ଚାୟତ କରାଯାଇପାରେ । ୧୯୬୮ରେ ପ୍ରତ୍ୟାହାର କରିନେଇଥିବା ଜିଲା ପରିଷଦକୁ ପୁନର୍ଜୀବିତ କରାଯାଉ । ଏହାକୁ ଜିଲ୍ଲାପଞ୍ଚାୟତ କୁହାଯାଇପାରେ ।

ପଞ୍ଚାୟତକୁ କୃଷି, ଜଳସେଚନ, ପଶୁପାଳନ, ମାଛଚାଷ, କ୍ଷୁଦ୍ରଶିଳ୍ପ, ଶିକ୍ଷା, ସ୍ୱାସ୍ଥ୍ୟ, ପରିବାର କଲ୍ୟାଣ, ଗ୍ରାମ୍ୟ ବିଦ୍ୟୁତକରଣ, ଗ୍ରାମ ସଫେଇ, ଦାରିଦ୍ର୍ୟ ଦୂରୀକରଣ, ନିଶାନିବାରଣ ଆଦି ଦାୟିତ୍ୱ ଦେବା ପାଇଁ (୧୯୮୯ରେ ରାଜୀବ ଗାନ୍ଧି ଯେଉଁ ବିଲ୍ ଆଣିଥିଲେ ସେଥିରେ) ବ୍ୟବସ୍ଥା ହୋଇଥିଲା । କିନ୍ତୁ ଜମିଜମାର ରେକର୍ଡ଼ ରଖିବା, ଦାଖଲ ଖାରଜର ଅଧିକାର ଓ ରାଜସ୍ୱ ବିଭାଗର, ଅନ୍ୟ କେତେକର ଅଧିକାର ଗ୍ରାମ ସଭାକୁ ଦିଆଯାଇନଥିଲା । ସେହିପରି ଗ୍ରାମର ଶାନ୍ତି ଶୃଙ୍ଖଳା ରକ୍ଷା ଓ ବିବାଦର ନିଷ୍ପତ୍ତି ଅଧିକାର ମଧ୍ୟ ଗ୍ରାମ ସଭାକୁ ଦିଆଯାଇ ନଥିଲା । ଏସବୁ କ୍ଷମତାବିନା ଗ୍ରାମସଭା ବା ଗ୍ରାମ ପଞ୍ଚାୟତ ଅକର୍ମଣ୍ୟ ହୋଇ ରହିବ ।

**ସମାଜ ୧୫.୧୨.୧୯୯୧ରେ ପ୍ରକାଶିତ**

# ଓଡ଼ିଶା ପଞ୍ଚାୟତିରାଜ ବ୍ୟବସ୍ଥା ସଂସ୍କାର : ପ୍ରତି ଗ୍ରାମରେ ପଞ୍ଚାୟତ ଓ ଗ୍ରାମଣୀ ( ୧ )

ନାରାୟଣ ହଜାରି

ଓଡ଼ିଶା ପଞ୍ଚାୟତରାଜ ବ୍ୟବସ୍ଥାର ସଂସ୍କାର କରାଯାଇଛି । ମହିଳାମାନଙ୍କ ପାଇଁ ପଞ୍ଚାୟତିରାଜ ସଂସ୍ଥା ମାନଙ୍କରେ ଏକ ତୃତୀୟାଂଶ ସ୍ଥାନ ସଂରକ୍ଷଣ କରାଯାଇଛି । ୧ ୯ ୯୩ରେ ସମ୍ବିଧାନର ୭୩ତମ ସଂଶୋଧନ ଦ୍ୱାରା ପଞ୍ଚାୟତିରାଜ ସଂସ୍ଥାମାନଙ୍କରେ ନିୟମିତ ନିର୍ବାଚନ ପାଇଁ ଓ ସମ୍ବଳର ବିକେନ୍ଦ୍ରିକରଣ ପାଇଁ ବ୍ୟବସ୍ଥା କରାଯାଇଛି । କିନ୍ତୁ କେତେକ ଆବଶ୍ୟକୀୟ ସଂସ୍କାର କରାଯାଇ ନାହିଁ । ଏହା ନ କଲେ ପଞ୍ଚାୟତିରାଜ ବ୍ୟବସ୍ଥା ସକ୍ରିୟ, ଗତିଶୀଳ ଓ ଜୀବନ୍ତ ହୋଇ ପାରିବ ନାହିଁ ।

ଏହି ପ୍ରବନ୍ଧରେ ଦୁଇଟି ମୌଳିକ ସଂସ୍କାର କଥା ଉତ୍‌ଥାପନ କରାଯାଇଛି । ପ୍ରଥମ କଥା ହେଲା : ପ୍ରତି ଗ୍ରାମରେ ପଞ୍ଚାୟତ ହେଉ । ଦ୍ୱିତୀୟ କଥା ହେଲା ଗ୍ରାମଣୀ ପଞ୍ଚାୟତର ମୁଖ୍ୟ ହୁଅନ୍ତୁ । ଏକ ଚତୁର୍ଥସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା (ଗ୍ରାମରେ ପଞ୍ଚାୟତ, ବର୍ତ୍ତମାନର ଗ୍ରାମ ପଞ୍ଚାୟତରେ ମଣ୍ଡଳ ପଞ୍ଚାୟତ, ବ୍ଲକ୍‌ରେ ବ୍ଲକ୍ ପଞ୍ଚାୟତ, ଜିଲ୍ଲାରେ ଜିଲ୍ଲା ପଞ୍ଚାୟତ) ପ୍ରଚଳନ କରାଯାଉ । ଓଡ଼ିଶାରେ ପ୍ରାୟ ୪୮୦୦୦ ଗ୍ରାମ ରହିଛି । ପ୍ରତି ଗ୍ରାମରେ ପଞ୍ଚାୟତ ଓ ଗ୍ରାମଣୀ ରହନ୍ତୁ ।

## ପଞ୍ଚାୟତିରାଜ ଗଣତନ୍ତ୍ର ଓ ବିକାଶର ବାହକ

ଭାରତୀୟ ପଞ୍ଚାୟତିରାଜ ବ୍ୟବସ୍ଥା ଗଣତନ୍ତ୍ର ଓ ବିକାଶର ବାହକ । ଗ୍ରାମବାସୀମାନଙ୍କୁ ଗ୍ରାମ ଶାସନ ଓ ଗ୍ରାମ ବିକାଶରେ ସକ୍ରିୟ ଅଂଶ ଗ୍ରହଣ କରିବାକୁ ସୁଯୋଗ ଦେବା ଏହାର ଉଦ୍ଦେଶ୍ୟ । ଏତଦ୍ ବ୍ୟତୀତ ସରକାରୀ ଯୋଜନାର କାର୍ଯ୍ୟକାରିତାରେ ସହାୟକ ହେବା ଏହାର ଅନ୍ୟତମ ଲକ୍ଷ୍ୟ ।

ଭାରତ ପୃଥିବୀର ଏକ ଦରିଦ୍ରତମ ଦେଶ । ଏହାର ଆର୍ଥିକ ପ୍ରଗତି କେବଳ ସରକାରୀ ପ୍ରଚେଷ୍ଟାରେ ସମ୍ଭବ ନୁହେଁ । ସରକାରଙ୍କର ସମ୍ବଳ ସୀମିତ । ତାଛଡ଼ା

ସରକାର ଉନ୍ନୟନମୂଳକ କାର୍ଯ୍ୟରେ ଯାହା ଖର୍ଚ୍ଚ କରୁଚନ୍ତି, ସେଥିରେ ଏକ ବିଶେଷ ଅଂଶ ବାଟମାରଣା ହେଉଛି । ଲୋକଙ୍କର ସକ୍ରିୟ ଅଂଶଗ୍ରହଣ ବିନା ଦେଶ ଓ ଦଶର ଉନ୍ନତି ସମ୍ଭବ ନୁହେଁ । ପ୍ରଗତିର ଚାବିକାଠି ଲୋକଶକ୍ତି ହାତରେ । ଦେଶ ନିର୍ମାଣରେ ଲୋକଶକ୍ତିର ଭୂମିକା ରାଷ୍ଟ୍ର ଶକ୍ତିଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ । ତେଣୁ ଲୋକମାନଙ୍କୁ କ୍ଷମତା ଓ ସମ୍ବଳ ଦିଆଯିବ ଉଚିତ । ଲୋକମାନଙ୍କୁ କ୍ଷମତା ଦେବା ପାଇଁ ବିକେନ୍ଦ୍ରୀକରଣ ଅପରିହାର୍ଯ୍ୟ । କ୍ଷମତାର ବିକେନ୍ଦ୍ରୀକରଣ ବିକେନ୍ଦ୍ରିତ ଅର୍ଥନୈତିକ ବିକାଶ ଆଣିବ ।

ଭାରତୀୟ ଶାସନ ପରମ୍ପରାରେ ବିକେନ୍ଦ୍ରୀତ ଶାସନକୁ ଉଚ୍ଚ ସ୍ଥାନ ଦିଆଯାଇଥିଲା । ଗ୍ରାମବାସୀଙ୍କର ସମୂହ କଲ୍ୟାଣ, ବିବାଦ ନିଷ୍ପତ୍ତି କରିବ, ଗ୍ରାମର ପାଞ୍ଚ ଜଣ ଲୋକ ପ୍ରତିନିଧିଙ୍କ ହାତରେ ନ୍ୟସ୍ତ ଥିଲା । ଏହାକୁ ପଞ୍ଚାୟତ କୁହାଯାଉଥିଲା । ଏମାନଙ୍କୁ ପଞ୍ଚପରମେଶ୍ୱର ଆଖ୍ୟା ଦେଇ, ଲୋକମାନଙ୍କ ମଧ୍ୟରେ ବିଶ୍ୱାସ, ଅନୁରକ୍ତି ଓ ଶ୍ରଦ୍ଧାଭାବନା ଜାଗ୍ରତ କରାଯାଉଥିଲା । ପ୍ରତି ଗ୍ରାମରେ ପଞ୍ଚାୟତ ଥିଲା । ଏହି ଆଦର୍ଶ ଦ୍ୱାରା ଉଦ୍‌ବୁଦ୍ଧ ହୋଇ, ଭାରତୀୟ ସମ୍ବିଧାନର ୪୦ ପରିଚ୍ଛେଦରେ ଗ୍ରାମ ପଞ୍ଚାୟତ ଗଠନ କରି, ଆବଶ୍ୟକ କ୍ଷମତା ପ୍ରଦାନ କରିବାକୁ ରାଜ୍ୟମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି । ତା ପରେ ଆସିଛି ୭୩ତମ ସମ୍ବିଧାନ ସଂଶୋଧନ ।

## କ୍ଷମତା ଓ ସମ୍ବଳବିହୀନ ପଞ୍ଚାୟତିରାଜ

ପଞ୍ଚାୟତିରାଜରେ ବିଭିନ୍ନ ଯୋଜନା ଗୁଡ଼ିକ କାର୍ଯ୍ୟକାରୀ କରିବାପାଇଁ ଅର୍ଥ ଦେଲେ ନାହିଁ । ରାଜ୍ୟ ସରକାରମାନେ ପଞ୍ଚାୟତିରାଜ ସଂସ୍ଥାମାନଙ୍କରେ ନିୟମିତ ନିର୍ବାଚନ ନ କରି ବର୍ଷ ବର୍ଷ ଧରି ସେଗୁଡ଼ିକୁ ମନଇଚ୍ଛା ନିଜର ପ୍ରତ୍ୟକ୍ଷ ନିୟନ୍ତ୍ରଣରେ ରଖିଲେ । ସରକାରୀ ନିୟନ୍ତ୍ରଣ, ସ୍ଥାନୀୟ ଲୋକ ପ୍ରତିନିଧିଙ୍କ ହାତରେ କୌଣସି କ୍ଷମତା ବା ଦାୟିତ୍ୱ ନ ଦେବା, ରାଜନୀତିକ ହସ୍ତକ୍ଷେପ, ସରକାରୀ ଉଦାସୀନତା, ଆର୍ଥିକ ଅସ୍ୱଚ୍ଛଳତା, ଦୁର୍ନୀତି, ଜନସାଧାରଣଙ୍କ ଅନାଗ୍ରହ ଆଦି କାରଣରୁ ପଞ୍ଚାୟତିରାଜ ବ୍ୟବସ୍ଥା ମିୟମାଣ, ନିଷ୍କ୍ରିୟ ଓ ଦୁର୍ବଳ ହୋଇ ପଡ଼ିଲା ।

ପଞ୍ଚାୟତିରାଜ ସଂସ୍ଥାଗୁଡ଼ିକ ନିଷ୍କ୍ରିୟ ହେବାର ଏକ ପ୍ରଧାନ କାରଣ ହେଲା, ଏଗୁଡ଼ିକୁ ରାଜ୍ୟ ସରକାରଙ୍କର କ୍ଷମତା ପ୍ରତିଦ୍ୱନ୍ଦୀ କେନ୍ଦ୍ରବିନ୍ଦୁ ଭାବରେ ଗ୍ରହଣ କରାଗଲା । ରାଜନୀତିକ ଓ ପ୍ରଶାସନିକ ଅଧିକାରୀଙ୍କ ହାତରୁ କ୍ଷମତା ଅପସରି ଯିବ ବୋଲି ଆଶଙ୍କା କରାଗଲା । ଏହି ସଂସ୍ଥାର ନିର୍ବାଚିତ କର୍ମକର୍ତ୍ତାଙ୍କ ନିକଟକୁ ଜନସାଧାରଣ କାର୍ଯ୍ୟ ହାସଲ ପାଇଁ ଆସିବା ଦ୍ୱାରା, ବିଧାୟକମାନେ ଏକ ସମାନ୍ତରାଳ

ନେତୃତ୍ୱର ଅଭ୍ୟୁତ୍‌ଥାନର ଆଶଙ୍କାରେ ଆତଙ୍କିତ ହେଲେ । ଏଣୁ ଏହି ସଂସ୍ଥାଗୁଡ଼ିକୁ ସ୍ଥାଣୁ କରି ଦିଆଗଲା ।

"ବର୍ତ୍ତମାନ ଓଡ଼ିଶାରେ ଯେଉଁ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକ କାର୍ଯ୍ୟ କରୁଛି, ସେଗୁଡ଼ିକ ଆଳଙ୍କାରିକ ସଂସ୍ଥା ବ୍ୟତୀତ ଅନ୍ୟ କିଛି ନୁହେଁ । ଏହି ସଂସ୍ଥାଗୁଡ଼ିକର ନିଜସ୍ୱ କୌଣସି ପାଣ୍ଠି ନାହିଁ ବା ଏହା ସରକାରଙ୍କ ଅନୁଦାନ ପାଏ ନାହିଁ । ଯତ୍‌କିଞ୍ଚିତ ପାଣ୍ଠି ଆସୁଛି, ତାହା ଡ଼ି. ଆର୍‌.ଡ଼ି.ଏ. ସଂସ୍ଥା ଦ୍ୱାରା ସମ୍ପୂର୍ଣ୍ଣ ଭାବରେ ପରିଚାଳିତ । ଏହି ସଂସ୍ଥା ବିଧାୟକମାନଙ୍କ ଦ୍ୱାରା ନିୟନ୍ତ୍ରିତ । ପଞ୍ଚାୟତ ସମିତି ଯେଉଁ କାର୍ଯ୍ୟକ୍ରମ ପ୍ରସ୍ତୁତ କରେ ତାହା ପ୍ରତି ଗୁରୁତ୍ୱ ଦିଆଯାଏ ନାହିଁ ଏବଂ ଉପର ସ୍ତରରୁ ଅବାସ୍ତବ କାର୍ଯ୍ୟକ୍ରମ ଡ଼ି.ଆର.ଡ଼ି.ଏ ଦ୍ୱାରା ମଞ୍ଜୁର ହୋଇ, ଲୋକମାନଙ୍କ ଉପରେ ଲଦି ଦିଆଯାଏ ।" ଏହା ହେଉଛି ଓଡ଼ିଶା ପ୍ରାକ୍ତନ ମନ୍ତ୍ରୀ ଶ୍ରୀ ଅନନ୍ତ ନାରାୟଣ ସିଂହଦେଓଙ୍କ ମତ ।

ପଞ୍ଚାୟତିରାଜ ସଂସ୍ଥାମାନଙ୍କର ପ୍ରକୃତରେ କୌଣସି କ୍ଷମତା ନାହିଁ । ସେମାନଙ୍କ କାର୍ଯ୍ୟକଳାପ ଉପରେ ଅମଲାତନ୍ତ୍ରର ଅଖଣ୍ଡ ନିୟନ୍ତ୍ରଣ । ସେ ପୁଣି ଲେଖିଛନ୍ତି, "ବର୍ତ୍ତମାନ ଦେଖା ଯାଉଛି ଯେ, ତଳସ୍ତରର ଉନ୍ନୟନ କାର୍ଯ୍ୟକୁ ନିଜ ଇଚ୍ଛାନୁସାରେ ବଣ୍ଟନ କରି, କାର୍ଯ୍ୟ ସମ୍ପାଦନ ଓ ବ୍ୟକ୍ତି ନିଯୁକ୍ତି କରିବା ହେଲା ବିଧାୟକମାନଙ୍କର ପ୍ରଧାନ କାର୍ଯ୍ୟ ।"

ସ୍ଥାନୀୟ ଲୋକ ପ୍ରତିନିଧିମାନଙ୍କୁ ଅଧିକ କ୍ଷମତା ଦିଆଯିବାର ଆବଶ୍ୟକତା ରହିଛି । ସରକାରୀ କର୍ମଚାରୀମାନେ ହୃଦୟଙ୍ଗମ କରିବା ଉଚିତ ଯେ, ଜନସାଧାରଣଙ୍କର ସକ୍ରିୟ ଅଂଶ ଗ୍ରହଣ ବିନା କୌଣସି କାର୍ଯ୍ୟକ୍ରମ ସଫଳ ହୋଇନାରିବ ନାହିଁ । ସ୍ଥାନୀୟ ଲୋକ ପ୍ରତିନିଧିମାନଙ୍କ ମାଧ୍ୟମରେ ହିଁ ଜନସହଯୋଗ ସମ୍ଭବ ହୋଇପାରିବ ।

## କର୍ଣ୍ଣାଟକ ଓ ପଶ୍ଚିମବଙ୍ଗର ଶକ୍ତିଶାଳୀ ପଞ୍ଚାୟତିରାଜ

କର୍ଣ୍ଣାଟକରେ ୧୯୮୭ ଜାନୁୟାରୀରେ ଚର୍ତୁସ୍ତରୀୟ ପଞ୍ଚାୟତିରା ବ୍ୟବସ୍ଥାର ପ୍ରଚଳନ କରାଗଲା । ଗ୍ରାମରେ ଗ୍ରାମସଭା, ମଣ୍ଡଳରେ (ଦଶ ହଜାରରୁ ପନ୍ଦର ହଜାର ଲୋକଙ୍କୁ ନେଇ) ମଣ୍ଡଳ ପଞ୍ଚାୟତ, ତାଲୁକା ପଞ୍ଚାୟତ ଓ ଜିଲ୍ଲାରେ ଜିଲ୍ଲା ପଞ୍ଚାୟତ ରଖାଗଲା । କର୍ଣ୍ଣାଟକ ଓ ପଶ୍ଚିମବଙ୍ଗ ସରକାରମାନେ ନିଜ ନିଜ ରାଜ୍ୟର ପଞ୍ଚାୟତିରାଜ ସଂସ୍ଥାମାନଙ୍କୁ କିଛି କ୍ଷମତା ଓ ସମ୍ବଳ ଦେଇ ଶକ୍ତିଶାଳୀ କରାଉଛନ୍ତି । ଏସବୁ ଗ୍ରାମ ସ୍ୱରାଜ୍ୟର ଆଦର୍ଶ ଠାରୁ ତଥାପି ବହୁତ ଦୂରରେ ରହିଛନ୍ତି ।

## ଓଡ଼ିଶାରେ ଚତୁଃସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥାର ଆବଶ୍ୟକତା

ଓଡ଼ିଶାରେ ଦ୍ୱିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା ରହିଛି । ଆମର ଚତୁଃସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା ରହିବା ଆବଶ୍ୟକ । ପ୍ରତି ଗ୍ରାମରେ ପଞ୍ଚାୟତ, ବର୍ତ୍ତମାନର ପଞ୍ଚାୟତରେ (ଯାହା ୯ଟି ଗ୍ରାମକୁ ନେଇ ଗଠିତ) ମଣ୍ଡଳ ପଞ୍ଚାୟତ, ବ୍ଲକ୍‌ରେ ବ୍ଲକ୍ ପଞ୍ଚାୟତ, ଜିଲ୍ଲାରେ ଜିଲ୍ଲା ପଞ୍ଚାୟତ ରହିବା ଆବଶ୍ୟକ ।

ଭାରତ ଏକ ଗାଁର ଦେଶ । ୧୯୯୧ ଜନଗଣନା ଅନୁସାରେ ଭାରତରେ ଶତକଡ଼ା ୭୪ ଭାଗ ଲୋକେ (ଓଡ଼ିଶାରେ ଶତକଡ଼ା ୮୭ ଭାଗ) ଗ୍ରାମାଞ୍ଚଳରେ ବାସ କରନ୍ତି । ଗ୍ରାମାଞ୍ଚଳର ଉନ୍ନତି ନ ହେଲେ ଭାରତର ଉନ୍ନତି ହୋଇପାରିବ ନାହିଁ । ମହାତ୍ମାଗାନ୍ଧୀ କହୁଥିଲେ " ଭାରତର ଆତ୍ମା ଗ୍ରାମରେ ରହିଛି ।" ସେ କଳ୍ପନା କରିଥିଲେ ଯେ ସ୍ୱାଧୀନ ଭାରତର ଗାଁଗୁଡ଼ିକ ଗୋଟିଏ ଗୋଟିଏ ସ୍ୱୟଂଶାସିତ ଗଣରାଜ୍ୟ ହେବ ।

ଗାଁମାନଙ୍କ ହାତରେ ସର୍ବାପେକ୍ଷା ଅଧିକ କ୍ଷମତା ଓ ସମ୍ବଳ ରହିବ । ତାହା ଉପରକୁ ମଣ୍ଡଳ, ବ୍ଲକ୍, ଜିଲ୍ଲା, ରାଜ୍ୟ ଓ କେନ୍ଦ୍ର ହାତରେ ଅପେକ୍ଷାକୃତ କମ୍ କ୍ଷମତା ରହିବ । ପ୍ରାଚୀନ କାଳରୁ ଗ୍ରାମ ଭାରତରେ ଶାସନ ଓ ବିକାଶର ମୂଳ ବିନ୍ଦୁ ହୋଇରହିଛି । ଗ୍ରାମମାନଙ୍କର ବିକାଶ ପାଇଁ ପ୍ରତି ଗ୍ରାମରେ ଏକ ପ୍ରତିନିଧିମୂଳକ ଦକ୍ଷ ଓ ନିର୍ମଳ ସରକାର ରହିବା ଉଚିତ । ୧୯୫୨ ରେ ଓଡ଼ିଶାରେ ଯେଉଁ ଗ୍ରାମପଞ୍ଚାୟତ ହେଲା, ତାହା ଗ୍ରାମର ଆର୍ଥିକ ଓ ସାମାଜିକ ପ୍ରଗତି ପାଇଁ ଜନ ସହଯୋଗ ସୃଷ୍ଟି କରିବାର ସହାୟକ ହେଲା ନାହିଁ । ଲୋକଶକ୍ତି ବିକାଶରେ ସାହାଯ୍ୟ କଲା ନାହିଁ । ଗବେଷଣାରୁ ଦେଖାଯାଇଛି ଯେ, ଓଡ଼ିଶାର ଗ୍ରାମବାସୀ ଗ୍ରାମପଞ୍ଚାୟତ ପ୍ରତି ବୀତସ୍ପୃହ । (ଡକ୍ଟର ନାରାୟଣ ହଜାରୀଙ୍କର ଗ୍ରାସରୁଟ୍ ପଲିଟିକ୍‌ସ ଇନ୍ ରୁରାଲ ଇଣ୍ଡିଆ ପୁସ୍ତକ ଦ୍ରଷ୍ଟବ୍ୟ । ପ୍ରକାଶକ ଗ୍ରାମର ଲକ୍ଷ୍ମୀନାରାୟଣ ଅଗ୍ରୱାଲା) ଗ୍ରାମବାସୀମାନେ ସେମାନଙ୍କ ସବୁଠାରୁ ପାରଙ୍ଗମ ନେତୃ ସ୍ଥାନୀୟ ବ୍ୟକ୍ତିଙ୍କୁ ୱାର୍ଡ଼ ମେମ୍ବର ଭାବେ ନିର୍ବାଚିତ କରିବାକୁ ପ୍ରସ୍ତୁତ ନୁହନ୍ତି ।

## ଗ୍ରାମ ହିଁ ଲୋକଶକ୍ତିର ଆଧାର

ଗ୍ରାମ ଏକ ସୁସଂହତ ଆର୍ଥନୀତିକ, ସାମାଜିକ, ରାଜନୀତିକ ଓ ସାଂସ୍କୃତିକ ସଂଗଠନ । ଗ୍ରାମ ହିଁ ଲୋକଶକ୍ତିର ଆଧାର, ବାହକ ଓ ପ୍ରକାଶକ । ସାମୂହିକ, ସହଯୋଗୀ ଓ ସ୍ୱେଚ୍ଛାକୃତ ଗୋଷ୍ଠୀ ପ୍ରଚେଷ୍ଟା ଦ୍ୱାରା ଗ୍ରାମର ବିକାଶ ହୋଇପାରିବ । କିନ୍ତୁ ଏଥିପାଇଁ କର୍ମ ପ୍ରେରଣା ଦରକାର । ଏହି କର୍ମ ପ୍ରେରଣା ସ୍ୱରୂପ ହେଉଛି ରାଜନୀତିକ । ପ୍ରାଚୀନ ଓ ମଧ୍ୟଯୁଗୀୟ ଭାରତରେ ପ୍ରତି ଗ୍ରାମରେ ପଞ୍ଚାୟତ ଥିଲା । ଏହା ହିଁ ପ୍ରେରଣାର ଉତ୍ସ ଥିଲା ।

ସ୍ୱାଧୀନତା ପରେ ଦେଶରେ ପଞ୍ଚାୟତ ଗଢ଼ାହେଲା । ଏହା ଗଣତନ୍ତ୍ର ଓ ବିକାଶର ମୂଳଭିତ୍ତିରୂପେ ପରିଗଣିତ ହେଲା । କେରଳ, ତାମିଲନାଡୁ, କର୍ଣ୍ଣାଟକ, ଆନ୍ଧ୍ରପ୍ରଦେଶ, ଗୁଜୁରାଟ, ପଞ୍ଜାବ, ହରିଆଣା, ଉତ୍ତରପ୍ରଦେଶରେ ପ୍ରତି ଗୋଟିଏ ବା ଦୁଇଟି ଗ୍ରାମ ପାଇଁ ଗୋଟିଏ ପଞ୍ଚାୟତ ରହିଛି । ଭାରତର ୫,୭.୯୩୬ଟି ଗ୍ରାମରେ ୨୦୦,୦୦୦ ପଞ୍ଚାୟତ ରହିଛି । ଅର୍ଥାତ୍ ୨.୮ ଗ୍ରାମ ପାଇଁ ଗୋଟିଏ ପଞ୍ଚାୟତ ରହିଛି । ଓଡ଼ିଶାରେ ୪୬୯୮୯ଟି ଗ୍ରାମ ରହିଛି ଓ ୫୨୬୨ଟି ପଞ୍ଚାୟତ ରହିଛି । ଅର୍ଥାତ୍ ହାରାହାରି ୯ଟି ଗ୍ରାମକୁ ନେଇ ଗ୍ରାମ ପଞ୍ଚାୟତ ଗଢ଼ାଯାଇଛି । ଏତେଗୁଡ଼ିଏ ଗ୍ରାମକୁ ନେଇ ଗଢ଼ା ହୋଇଥିବା ଗ୍ରାମ ପଞ୍ଚାୟତ ଦ୍ୱାରା ଗ୍ରାମ ବିକାଶର ଆଶା ସୁଦୂର ପରାହତ ହୋଇଛି । ଏହା ଅପ୍ରାକୃତିକ । ବାସ୍ତବତା ସହିତ ଏହାର କୌଣସି ସମ୍ପର୍କ ନାହିଁ । ସେଥିପାଇଁ ଓଡ଼ିଶାର ଗ୍ରାମ ପଞ୍ଚାୟତଗୁଡ଼ିକ ଗୋଟିଏ ଗୋଟିଏ ମୌଳିକ ଏକକ ଅନୁଷ୍ଠାନ ରୂପରେ କାର୍ଯ୍ୟ କରିପାରୁ ନାହିଁ ।

**ସମ୍ବାଦ, ୧୪.୮.୯୫ରେ ପ୍ରକାଶିତ**

# ଓଡ଼ିଶା ପଞ୍ଚାୟତିରାଜ ବ୍ୟବସ୍ଥା ସଂସ୍କାର :
# ପ୍ରତି ଗ୍ରାମରେ ପଞ୍ଚାୟତ ଓ ଗ୍ରାମଣୀ ( ୨ )

ନାରାୟଣ ହଜାରି

ଗ୍ରାମର ଲୋକମାନେ ପ୍ରତ୍ୟକ୍ଷ ଭାବରେ ଗ୍ରାମ ପଞ୍ଚାୟତ ଶାସନ କ୍ଷେତ୍ରରେ ଅଂଶ ଗ୍ରହଣ କରିବାକୁ ସୁଯୋଗ ପାଉ ନାହାନ୍ତି । ତା ଛଡ଼ା ଗୋଟିଏ ପଞ୍ଚାୟତ ଅନ୍ତର୍ଗତ ବିଭିନ୍ନ ଗ୍ରାମ ମଧ୍ୟରେ ଏକତା ନ ଥିବାରୁ ସାମୂହିକ ଭାବରେ ଓ ସର୍ବସମ୍ମତିକ୍ରମେ କୌଣସି ନିଷ୍ପତ୍ତି ନିଆଯାଇପାରୁ ନାହିଁ । ପୁଣି ସରପଞ୍ଚ କେବଳ ଗୋଟିଏ ନିର୍ଦ୍ଦିଷ୍ଟ ଗ୍ରାମର ହୋଇ ଥିବାରୁ ଅନ୍ୟ ଗ୍ରାମର ସମସ୍ୟା ପ୍ରତି ସେ ବିଶେଷ ଦୃଷ୍ଟି ଦେଇପାରୁ ନାହାନ୍ତି । କିମ୍ବା ଅନ୍ୟ ଗ୍ରାମଗୁଡ଼ିକର ଲୋକମାନେ ତାଙ୍କ ପ୍ରତି ଯଥେଷ୍ଟ ଆନୁଗତ୍ୟ ଓ ଆସ୍ଥା ପ୍ରକାଶ କରୁ ନାହାନ୍ତି ।

ପ୍ରାଚୀନ କାଳରୁ ଗ୍ରାମହିଁ ପଞ୍ଚାୟତର ପୀଠ ଥିଲା । ଗ୍ରାମବାସୀଙ୍କ ପାଇଁ ତାଙ୍କ ନିଜ ଗ୍ରାମ ହିଁ ସଂସାର । ନିଜ ଗ୍ରାମର ପ୍ରଗତି ପାଇଁ ଲୋକମାନଙ୍କର ସ୍ୱାଭାବିକ ଆଗ୍ରହ ଓ ସାମୂହିକ ଦାୟିତ୍ୱ ଥାଏ । କେତେଗୁଡ଼ିଏ ଗ୍ରାମକୁ ନେଇ ହୋଇଥିବା ପଞ୍ଚାୟତକୁ ଗ୍ରାମବାସୀ ନିଜର କରିପାରୁ ନାହାଁନ୍ତି । ଗ୍ରାମବାସୀମାନେ ଦାରିଦ୍ର୍ୟ ବିରୋଧରେ ଜୀବନ ସଂଗ୍ରାମରେ ଏତେ ଘନିଷ୍ଠ ଭାବରେ ଜଡ଼ିତ ଯେ, ଅନ୍ୟ ଗ୍ରାମର ନେତୃ ସ୍ଥାନୀୟ ବ୍ୟକ୍ତିମାନଙ୍କୁ ଜାଣିବାପାଇଁ ତାଙ୍କର ଅବସର ନାହିଁ ।

## ଗୋଷ୍ଠୀ ଜୀବନ ଯେଉଁଠି, ପଞ୍ଚାୟତ ସେଇଠି

ଯେଉଁଠି ଗୋଷ୍ଠୀ ଜୀବନ ରହିଛି, ସେଠାରେ ପଞ୍ଚାୟତ ରହିବା ଉଚିତ୍ । ଗୋଷ୍ଠୀ ଜୀବନ ରହିଥିବା ସଂଗଠନରେ ହିଁ ଅର୍ଥନୀତିକ ଉନ୍ନତି ଓ ସାମାଜିକ ପ୍ରଗତି ପାଇଁ ମାନବ ସମ୍ବଳକୁ କ୍ରିୟାଶୀଳ କରାଯାଇ ପାରିବ । କେବଳ ଗ୍ରାମରେ ହିଁ ଗୋଷ୍ଠୀ ଜୀବନ ରହିଛି । ଏଠାରେ ଗୋଷ୍ଠୀ କାର୍ଯ୍ୟକ୍ରମ ପାଇଁ ଅବକାଶ ରହିଛି । ସ୍ୱେଚ୍ଛାକୃତ, ସହଯୋଗମୂଳକ ଗୋଷ୍ଠୀ ପ୍ରଚେଷ୍ଟ ପାଇଁ ଓ ଜନସାଧାରଣଙ୍କ ମଙ୍ଗଳ ପାଇଁ ଜନତାକୁ

ସଂଗଠିତ ଓ ସକ୍ରିୟ କରିବାର ସୁଯୋଗ ଏଠାରେ ରହିଛି । ଗୋଷ୍ଠୀ ପ୍ରଚେଷ୍ଟା ସାମୂହିକ ଜୀବନ ବିକାଶର ଜନ୍ମଦାତା । ଗ୍ରାମର ରାଜନୀତିକ ଜୀବନର ପ୍ରଛଦପଟରେ ଯେଉଁ ପଟ୍ଟଭୂମି ରହିଛି ତାହା ୯ଟି ଗ୍ରାମକୁ ନେଇ ହୋଇଥିବା ପଞ୍ଚାୟତରେ ରହି ନ ପାରେ । ଗ୍ରାମ୍ୟ ଜୀବନରେ ଯେଉଁ ସାମାଜିକତା ରହିଛି, ସେଥିରୁ ଉଦ୍ଭୁତ ହେଉଛି, ଏହାର ନୈତିକତା ।

ପ୍ରତି ଗାଁରେ ପଞ୍ଚାୟତ ହେବା ଦ୍ୱାରା, ଗ୍ରାମବାସୀଙ୍କର ପଞ୍ଚାୟତ ସଦସ୍ୟମାନଙ୍କ ଉପରେ କ୍ରମଶଃ ନିୟନ୍ତ୍ରଣ ରହିବ । ଗ୍ରାମବାସୀଙ୍କ ଆଖିଆଗରେ ପଞ୍ଚାୟତର କାର୍ଯ୍ୟକଳାପ ସଂଘଟିତ ହେବ । ଗ୍ରାମବାସୀଙ୍କର ଅଭାବ ଅସୁବିଧା ପଞ୍ଚାୟତ ଅନାୟାସରେ ଜାଣିପାରିବ । ଗ୍ରାମବାସୀଙ୍କର ଚାହିଦା ପଞ୍ଚାୟତରେ ସହଜରେ ପ୍ରତିଫଳିତ ହୋଇପାରିବ । ପଞ୍ଚାୟତ ଲୋକମାନଙ୍କ ନିକଟରେ ଉତ୍ତରଦାୟୀ ହେବ ।

ଗଣତନ୍ତ୍ର ଶାସନର ମୂଳଭିତ୍ତି ହେଲା ଲୋକମାନେ ନିଜ କଥା ନିଜେ ବୁଝିବେ । ନିଜର ସମସ୍ୟାଗୁଡ଼ିକ ନିଜେ ନିର୍ଣ୍ଣୟ କରିବେ । ସେଗୁଡ଼ିକର ସମାଧାନ ମଧ୍ୟ କରିବେ । ନିଜର ବିଫଳତା ପାଇଁ ଅନ୍ୟ ମୁଣ୍ଡରେ ଅଠାବୋଳିବେ ନାହିଁ । ଏହାଫଳରେ ସେମାନେ ଦାୟିତ୍ୱସମ୍ପନ୍ନ ହେବେ ଓ ଆତ୍ମନିର୍ଭରଶୀଳ ହେବେ । ନିଜ ଗୋଡ଼ରେ ନିଜେ ଠିଆହେବେ ।

ଏହି ପରିପ୍ରେକ୍ଷୀରେ ଗ୍ରାମରେ ଏକ ରାଜନୀତିକ ଅନୁଷ୍ଠାନ ଦରକାର । ପଞ୍ଚାୟତ ହେଉଛି ଏହି ଅନୁଷ୍ଠାନ । ବର୍ତ୍ତମାନ ପ୍ରତି ଗ୍ରାମରେ ଥିବା ପଲ୍ଲୀସଭାର କାର୍ଯ୍ୟପାଳିକା ନାହିଁ । ତେଣୁ ପଲ୍ଲୀସଭା ନିଷ୍କ୍ରିୟ ହୋଇପଡ଼ିଛି ।

ପ୍ରତି ଗ୍ରାମରେ ପଞ୍ଚାୟତ ରହିଲେ, ଗୋଷ୍ଠୀ କାର୍ଯ୍ୟ ପାଇଁ ଏକ ରାଜନୀତିକ ସଂଗଠନ ରହିବ । ସାମୂହିକ କାର୍ଯ୍ୟ ଦ୍ୱାରା ଗୋଷ୍ଠୀ ଜୀବନ ଦୃଢ଼ୀଭୂତ ହେବ । ଏହାଦ୍ୱାରା ଲୋକମାନଙ୍କର ବିଚାରଧାରା, ପରସ୍ପର ମଧ୍ୟରେ ବୁଝାମଣା ଓ ସହଯୋଗ ଭାବ ଋଦ୍ଧିମନ୍ତ ହେବ । ଲୋକମାନେ ବିରୋଧୀ ମତ ପ୍ରତି ସହନଶୀଳ ମନୋଭାବ ପ୍ରଦର୍ଶନ କରିବା ଶିଖିବେ ।

ପ୍ରତି ଗ୍ରାମରେ ପଞ୍ଚାୟତ ପ୍ରତିଷ୍ଠା ହେଲେ ଲୋକମାନେ ରାଜନୀତିକ ଶିକ୍ଷାଲାଭ କରିବେ । ଗ୍ରାମସଭାରେ ପଞ୍ଚାୟତ କିପରି ନିଷ୍ପତ୍ତି ନେଉଛି, ତାହା ସର୍ବସାଧାରଣ ସ୍ୱଚକ୍ଷୁରେ ଦେଖିପାରିବେ । ଉନ୍ନୟନମୂଳକ କାର୍ଯ୍ୟ କରିବାରେ ପଞ୍ଚାୟତ କେତେ ଦୂର ନିଷ୍ଠା, ଦକ୍ଷତା ଓ ସଚ୍ଚୋଟପଣିଆ ପ୍ରଦର୍ଶନ କରୁଛି ତାହା ଜନସାଧାରଣ ଜାଣିପାରିବେ ।

ପ୍ରତିନିଧିମାନଙ୍କୁ ସେମାନଙ୍କ କାର୍ଯ୍ୟ ଦ୍ୱାରା (ପ୍ରତିଶ୍ରୁତି ଦ୍ୱାରା ନୁହେଁ) ବିଚାର କରିବା ଅଭ୍ୟାସ, ନାଗରିକମାନଙ୍କର ବିକାଶଲାଭ କରିବ । କାରଣ ସବୁକଥା ଲୋକମାନଙ୍କର ସମ୍ମୁଖରେ ଘଟିବ । ପ୍ରତିଗ୍ରାମରେ ପଞ୍ଚାୟତ ରହିଲେ, ସର୍ବସାଧାରଣଙ୍କର ସମସ୍ୟା ସମ୍ପର୍କରେ ଜନସାଧାରଣଙ୍କର ଆଗ୍ରହ ରହିବ । ଏହା ନାଗରିକତାର ଶିକ୍ଷାପୀଠ ଭାବେ କାର୍ଯ୍ୟକରିବ ।

ସ୍ଥାନୀୟ ସରକାର ନେତୃତ୍ୱ ଗଢ଼ିବାର ପ୍ରଶିକ୍ଷଣ କେନ୍ଦ୍ର । ପ୍ରତି ଗ୍ରାମରେ ପଞ୍ଚାୟତ ହେଲେ ଗ୍ରାମର ସାମୂହିକ ଚେତନାସମ୍ପନ୍ନ ଓ ସର୍ବସାଧାରଣଙ୍କ ମଙ୍ଗଳ ପ୍ରତି ଆଗ୍ରହୀ ଲୋକମାନଙ୍କୁ ସମାଜସେବା କରିବା ପାଇଁ ସୁଯୋଗ ମିଳିବ । ଏହି ଅନୁଭୂତି ସିଦ୍ଧ ଓ କଷଟି ପଥରରେ ପରିକ୍ଷୀତ ବ୍ୟକ୍ତିମାନଙ୍କ ମଧ୍ୟରୁ ମଣ୍ଡଳ ପଞ୍ଚାୟତ, ବ୍ଲକ୍ ପଞ୍ଚାୟତ, ଜିଲ୍ଲା ପଞ୍ଚାୟତ, ରାଜ୍ୟ ଓ ଦେଶ ପାଇଁ ନେତୃତ୍ୱ ମିଳିବ ।

## ପ୍ରତିଗ୍ରାମରେ ପଞ୍ଚାୟତ

ଭାରତକୁ ଆର୍ଥନୀତିକ ଓ ସାମାଜିକ ପ୍ରଗତିପଥରେ ଆଗେଇ ନେବାକୁ ହେଲେ, ଗ୍ରାମର ଭିତ୍ତିଭୂମି ଉପରେ ଦେଶକୁ ଗଢ଼ିବାକୁ ହେବ । ଗଣତନ୍ତ୍ର ଓ ବିକାଶର ଚାବିକାଠି ଗ୍ରାମ ହାତରେ ରହିଛି । ଗ୍ରାମରେ ଯେଉଁ ଗୋଷ୍ଠୀ ଜୀବନ ରହିଛି, ତାହାକୁ ସକ୍ରିୟ କରି, ସଦୁପଯୋଗ କରିବାକୁ ହେବ । ପ୍ରତି ଗ୍ରାମରେ ପଞ୍ଚାୟତ କରିବା ଦ୍ୱାରା ଗ୍ରାମରେ ଥିବା ଲୋକମାନଙ୍କ ସ୍ୱୀକୃତ ରାଜନୀତିକ ଶକ୍ତିକୁ ସରକାର ସ୍ୱୀକୃତି ଦେବେ ଓ ସୁଦୃଢ଼ କରିବେ । ସେ କଥା ନ କରିବାରୁ ଗ୍ରାମର ରାଜନୀତିକ ଶକ୍ତି ଅଥର୍ବ ଓ ଅଚଳ ହୋଇରହିଛି । ଆବହମାନ କାଳରୁ ପ୍ରତି ଗ୍ରାମରେ ଯେଉଁ ପଞ୍ଚାୟତ ଥିଲା ତା'ର ଅବକ୍ଷୟ ଘଟିବାରେ ଲାଗିଛି । ଏହା ପଙ୍ଗୁ ହୋଇଯାଇଛି । ବର୍ତ୍ତମାନ ଏହା ମୃତପ୍ରାୟ ।

ଗ୍ରାମରେ ଥିବା ଲୋକମାନଙ୍କ ସ୍ୱୀକୃତ ରାଜନୀତିକ ଶକ୍ତିକୁ ସରକାର ସ୍ୱୀକୃତି ନ ଦେବା ଦ୍ୱାରା ଏକ ବିରାଟ ଶୂନ୍ୟତା ସୃଷ୍ଟିହୋଇଛି । ବର୍ତ୍ତମାନର ଗ୍ରାମ ପଞ୍ଚାୟତ ଏହି ଶୂନ୍ୟତାର ସୁଯୋଗ ନେଇ ଗ୍ରାମ ଜୀବନକୁ କଳୁଷିତ ଓ ବିଷାକ୍ତ କରିଦେଉଛି । ଅବିଳମ୍ବେ ଭାରତବର୍ଷର ହଜାର ହଜାର ବର୍ଷର ମୂଳଧନ (ପ୍ରତି ଗ୍ରାମରେ ପଞ୍ଚାୟତ ବ୍ୟବସ୍ଥା) ସମ୍ପୂର୍ଣ୍ଣ ନଷ୍ଟ ହୋଇଯିବ । ଯେତେ ଶୀଘ୍ର ପ୍ରତି ଗ୍ରାମରେ ଥିବା ପାରମ୍ପରିକ ପଞ୍ଚାୟତର ଗଣତନ୍ତ୍ରୀକରଣ ଓ ଆଧୁନିକୀକରଣ କରାଯିବ, ଦେଶ ପକ୍ଷରେ ତାହା ମଙ୍ଗଳପ୍ରଦ ହେବ । ଆମ ହାତରେ ଆଉ ସମୟ ନାହିଁ । ଆମକୁ ଅବିଳମ୍ବେ ପଦକ୍ଷେପ ନେବାକୁ ହେବ ।

# ପ୍ରତି ଗ୍ରାମରେ ଗ୍ରାମଣୀ

ଗ୍ରାମରେ ଯେଉଁ ପଞ୍ଚାୟତ ହେବ, ସେଥିରେ ପାଞ୍ଚ ଜଣ ପଞ୍ଚ ରହିବେ । ବଡ଼ ଗ୍ରାମରେ ଅଧିକ ପଞ୍ଚ ରହିପାରିବେ । ଏହି ପଞ୍ଚମାନଙ୍କ ମଧ୍ୟରୁ ଜଣେ ଗ୍ରାମର ମୁଖ୍ୟ ରହିବେ । ଏହି ପଞ୍ଚମାନେ ୱାର୍ଡ଼ରୁ ନିର୍ବାଚିତ ନ ହୋଇ, ସାରା ଗ୍ରାମରୁ ନିର୍ବାଚିତ ହେବେ । ଏହାଫଳରେ ଗ୍ରାମର ସଂହତି ବଢ଼ିବ । ଦଳିତ ଓ ଆଦିବାସୀମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ ହେବ । ପଞ୍ଚମାନେ ସାବାଳକ ଗୁପ୍ତ ମତଦାନ ଦ୍ୱାରା ପ୍ରତ୍ୟକ୍ଷ ଭାବରେ ନିର୍ବାଚିତ ହେବେ । ଗ୍ରାମର ମୁଖ୍ୟ ପଞ୍ଚମାନଙ୍କ ଦ୍ୱାରା ନିର୍ବାଚିତ ହେବେ ।

ଗ୍ରାମର ମୁଖ୍ୟଙ୍କୁ ଗ୍ରାମଣୀ କୁହାଯିବ । ମହାଭାରତ ଓ ରାମାୟଣ କାଳରେ ଗ୍ରାମର ମୁଖ୍ୟଙ୍କୁ ଗ୍ରାମଣୀ କୁହାଯାଉଥିଲା । ଦେଶରେ ପ୍ରଧାନମନ୍ତ୍ରୀ, ରାଜ୍ୟରେ ମୁଖ୍ୟମନ୍ତ୍ରୀ, ଜିଲ୍ଲା ପରିଷଦରେ ଚେୟାରମ୍ୟାନ୍, ପଞ୍ଚାୟତ ସମିତିରେ ଚେୟାରମ୍ୟାନ୍ ଓ ବର୍ତ୍ତମାନ ପଞ୍ଚାୟତରେ (ଯାହାକୁ ମଣ୍ଡଳ ପଞ୍ଚାୟତ କୁହାଯିବ) ସରପଞ୍ଚ ଥିବା ବେଳେ, ଗ୍ରାମରେ ମୁଖ୍ୟ କାହିଁକି ରହିବେ ନାହିଁ? କେତେକ ଆଶଙ୍କା କରିପାରନ୍ତି ଯେ, ଗ୍ରାମମୁଖ୍ୟ ପଦ ସୃଷ୍ଟିହେଲେ ସାମନ୍ତବାଦୀ ପ୍ରଥା ପୁଣି ଲେଉଟିବ । ଏପରି ଆଶଙ୍କା ଅମୂଳକ । କାରଣ ଗ୍ରାମମୁଖ୍ୟ ବା ଗ୍ରାମୀଣ ଲୋକମାନଙ୍କ ଦ୍ୱାରା ନିର୍ବାଚିତ ହେବେ । ସେ ଓ ପଞ୍ଚାୟତର ସଭ୍ୟମାନେ ପ୍ରତିବର୍ଷ ନିର୍ବାଚିତ ହେବେ । ଉପର ସ୍ତରର ପ୍ରତିନିଧିମାନେ ପ୍ରତି ପାଞ୍ଚ ବର୍ଷରେ ନିର୍ବାଚିତ ହେବେ ।

ଗ୍ରାମର ଜଣେ ମୁଖ୍ୟ ରହିଲେ, ଗ୍ରାମରେ ଶାସନ ଓ ବିକାଶ ସୁଦୃଢ଼ ହେବ । ବର୍ତ୍ତମାନ ଗ୍ରାମମାନ ଯେପରି ଶାସନହୀନ ହୋଇ ପଡ଼ିଛନ୍ତି, ସେଥିରେ ଜନସାଧାରଣ ଓ ସରକାରଙ୍କ ପାଇଁ ଯୋଗସୂତ୍ରର ମାଧ୍ୟମ ନାହିଁ । ତେଣୁ ଗ୍ରାମମାନଙ୍କରେ ବିଶୃଙ୍ଖଳା ଅଧିଷ୍ଠିତ ହୋଇଛି । ଗ୍ରାମର ପରିଚାଳନା ପାଇଁ କେହି ଗ୍ରାମମୁଖ୍ୟ ନ ଥିବାରୁ ଏପରି ହେଉଛି ।

କେହି କେହି କହନ୍ତି ଗ୍ରାମର କେନ୍ଦ୍ର ବିନ୍ଦୁ ହେଉଛନ୍ତି ୱାର୍ଡ଼ମେମ୍ବର । କିନ୍ତୁ ସେ ଗ୍ରାମର ପ୍ରାକୃତିକ ନେତା ନୁହଁନ୍ତି । ନୟାଗଡ଼ ଜିଲ୍ଲାର ବୁଦ୍ଧଗ୍ରାମ (କେଶରପୁର)ରେ ୧୯୬୧ ମସିହାରୁ ପ୍ରତ୍ୟକ୍ଷ ନିର୍ବାଚନ ଦ୍ୱାରା ପାଞ୍ଚଜଣ ପ୍ରତିନିଧି ବଛା ଯାଉଛନ୍ତି । ମହାତ୍ମାଗାନ୍ଧୀ ପ୍ରତି ଗ୍ରାମର ପଞ୍ଚାୟତରେ ବାର୍ଷିକ ନିର୍ବାଚନ ଆବଶ୍ୟକତା ଉପରେ ଗୁରୁତ୍ୱ ଦେଇଛନ୍ତି । କେ ହନୁମନ୍ତୟାଙ୍କ ଅଧ୍ୟକ୍ଷତାରେ ଗଠିତ 'ପ୍ରଶାସନିକ ସଂସ୍କାର ଆୟୋଗ ୧୯୬୬-୭୦ରେ ପଞ୍ଚାୟତିରାଜ' ସମ୍ପର୍କରେ ରିପୋର୍ଟ ଦେଇ କହିଛନ୍ତି "ସାଧାରଣତଃ ପ୍ରତି ଗ୍ରାମରେ ପଞ୍ଚାୟତ ରହୁ ।"

ନୀତି ନିର୍ଦ୍ଧାରଣକାରୀ ଓ ପଦାଧିକାରୀମାନଙ୍କର ଗଣତନ୍ତ୍ର ଉପରେ ବିଶ୍ୱାସ ନ ଥିବାରୁ, ଲୋକମାନଙ୍କ ଆଖିରେ ଧୂଳି ଦେଇ, ଏକ ନାମକୁ ମାତ୍ର ପଞ୍ଚାୟତ ଗଠନ କରାଯାଇଛି । ବର୍ତ୍ତମାନର ପଞ୍ଚାୟତ ଏକ ପ୍ରହସନ । ଏହା ଏକ ଧୂଆଁବାଣ । ଏହା କୃତ୍ରିମ । ତେଣୁ ଏହା ବିଫଳ ହୋଇଛି ।

# ବୁଢ଼ା ଗ୍ରାମର ଗଣତନ୍ତ୍ର

ପ୍ରଫେସର ନାରାୟଣ ହଜାରୀ
ଶରତ କୁମାର ଦୋରା

ଆମ ରାଜ୍ୟରେ ଏମିତି ବି ଗାଁ ଅଛି ଯାହା ଗଣତନ୍ତ୍ରର ପ୍ରୟୋଗଶାଳା ଭାବେ କାମ କରୁଛି ଏବଂ ଗଣତନ୍ତ୍ରର ସଫଳ ପରୀକ୍ଷଣ ପରେ ଅନ୍ୟମାନଙ୍କ ପାଇଁ ଆଦର୍ଶ ହୋଇପାରିଛି । ସେଭଳି ଏକ ଗ୍ରାମ ହେଉଛି ବୁଢ଼ାଗ୍ରାମ । ଏହି ଗ୍ରାମରେ କରାଯାଇଥିବା ଗଣତନ୍ତ୍ରର ପରୀକ୍ଷଣର ଖ୍ୟାତି ଆମ ଦେଶର ସରହଦକୁ ଟପି ବିଦେଶରେ ବି ପହଞ୍ଚିଲାଣି । ସେ ସଂପର୍କରେ ପ୍ରସ୍ତୁତ ଏକ ଆଲେଖ୍ୟ ।

ବୁଢ଼ାଗ୍ରାମ (କେଶରପୁର) ପ୍ରାୟ ୧ ହଜାର ଲୋକସଂଖ୍ୟାବିଶିଷ୍ଟ ଗ୍ରାମ । ଏହା ନୟାଗଡ଼ଠାରୁ ଏଗାର କି.ମି. ଦୂରରେ ଅବସ୍ଥିତ । ଏହି ଗ୍ରାମରେ 'ବୃକ୍ଷ ଓ ଜୀବର ବନ୍ଧୁ' ନାମରେ ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଅଛି । ଉକ୍ତ ଅନୁଷ୍ଠାନ ଜାତିସଂଘର 'ପୃଥିବୀ ପରିବେଶ ପୁରସ୍କାର' (୧୯୮୯), ଭାରତ ସରକାରଙ୍କର 'ବୃକ୍ଷମିତ୍ର ପୁରସ୍କାର' (୧୯୮୯) ଓ ଓଡ଼ିଶା ସରକାରଙ୍କର 'ପ୍ରକୃତିମିତ୍ର ପୁରସ୍କାର' (୧୯୮୬) ଲାଭ କରିଛି । ନୟାଗଡ଼, ଖୋର୍ଦ୍ଧା, ଗଞ୍ଜାମ ଓ ଫୁଲବାଣୀ ଜିଲ୍ଲାର ପ୍ରାୟ ୧ ହଜାର ଗ୍ରାମରେ ଜଙ୍ଗଲ ସୁରକ୍ଷା ଉପରୋକ୍ତ ଅନୁଷ୍ଠାନ ଓ ନୟାଗଡ଼ ଜଙ୍ଗଲ ସୁରକ୍ଷା ମହାସଂଘର ପ୍ରେରଣାରେ କରାଯାଇଛି । ଉପରୋକ୍ତ ଗ୍ରାମରେ ଜଳସେଚନ ଓ ଶିକ୍ଷା ପାଇଁ ଉଲ୍ଲେଖନୀୟ କାର୍ଯ୍ୟ ଗ୍ରାମବାସୀଙ୍କ ଦ୍ୱାରା ହୋଇଛି ।

୧୯୫୪ ମସିହାରେ ଏହି ଗ୍ରାମବାସୀ ହଣାମରା, ମାଲିମକଦ୍ଦମାରେ ଅତିଷ୍ଠ ତଥା ତଳିତଳାନ୍ତ ହୋଇ ଘୋର ଅଶାନ୍ତି ମଧ୍ୟରେ ଜୀବନଯାପନ କରୁଥିଲେ । ଈଶ୍ୱରଙ୍କ କୃପାରୁ କେତେକ ଯୁବକଙ୍କ ଉଦ୍ୟମରେ ଗ୍ରାମର ଆର୍ଥନୈତିକ, ସାମାଜିକ, ସାଂସ୍କୃତିକ ଓ ରାଜନୀତିକ ଅଭ୍ୟୁତ୍ଥାନ ସମ୍ଭବ ହୋଇଥିଲା । 'ପ୍ରଗତି ଶିଶୁ ସଂଘ' ଓ 'ବାପୁଜୀ ଗ୍ରାମସେବକ ସଂଘ' (ଯୁବକମାନଙ୍କ ଦ୍ୱାରା ସଂଗଠିତ) ଗ୍ରାମର ବିକାଶମୂଳକ କାର୍ଯ୍ୟର

ଭିତ୍ତିଭୂମି ପକାଇଥିଲେ । ୧୯୬୧ ମସିହାରେ ଗ୍ରାମରେ ପ୍ରତ୍ୟକ୍ଷ ଗଣତନ୍ତ୍ରର ପ୍ରଚଳନ କରାଯାଇଥିଲା । ଗ୍ରାମର ପ୍ରତ୍ୟେକ ସାବାଳକ ସେଥିରେ ସାମିଲ ହୋଇ ଭୋଟଦେଲେ । ଏକ ନିର୍ଦ୍ଦିଷ୍ଟ ଦିନରେ (ପ୍ରାୟ ଜୁନ୍ ମାସ) ଗ୍ରାମବାସୀ ମତଦାନ କରୁଥିଲେ । ଭୋଟ ଦେଉଥିବା ପ୍ରତ୍ୟେକ ବ୍ୟକ୍ତିଙ୍କୁ ଦୁଇଟି ଭୋଟ୍ କାଗଜ ଦିଆଯାଉଥିଲା । ଗୋଟିଏ କାଗଜରେ ଭୋଟଦାତା ପାଞ୍ଚ ଜଣଙ୍କର ନାମ ଉଲ୍ଲେଖ କରୁଥିଲେ । ଅନ୍ୟ କାଗଜରେ ଜଣକର ନାମ ଉଲ୍ଲେଖ କରୁଥିଲେ । ନିର୍ବାଚନରେ କେହି ପ୍ରତିଦ୍ୱନ୍ଦ୍ୱିତା କରୁନଥିଲେ । ଯେଉଁ ପାଞ୍ଚଜଣ ସର୍ବାଧିକ ଭୋଟ ପାଉଥିଲେ, ସେମାନେ ଏକ ବର୍ଷ ପାଇଁ ଗ୍ରାମ ଶାସନ ଦାୟିତ୍ୱରେ ରହି, ଗ୍ରାମର ବିକାଶ, ଗାଁର ଲୋକମାନଙ୍କ ମଧ୍ୟରେ ସୃଷ୍ଟି ହେଉଥିବା ବିଭିନ୍ନ ଗଣ୍ଡଗୋଳର ସମାଧାନ, ସାଂସ୍କୃତିକ ତଥା ଧାର୍ମିକ କାର୍ଯ୍ୟକ୍ରମର ପରିଚାଳନା କରୁଥିଲେ । ଯେଉଁ ବ୍ୟକ୍ତି ସର୍ବାଧିକ ଭୋଟ ପାଉଥିଲେ, ସେ ଗ୍ରାମର ଗ୍ରାମଣୀ (ସଭାପତି) ବା ମୁଖ୍ୟ ହେଉଥିଲେ । ରାମାୟଣ, ମହାଭାରତ କାଳରେ ଗ୍ରାମମୁଖ୍ୟଙ୍କୁ ଗ୍ରାମଣୀ (ଗ୍ରାମପତି) କୁହାଯାଉଥିଲା । ଏଠାରେ ଉଲ୍ଲେଖ କରିବା ଆବଶ୍ୟକ ଯେ, ବୁଦ୍ଧଗ୍ରାମରେ ସରକାରୀ ଗ୍ରାମ ପଞ୍ଚାୟତ ନଥିଲା । ଗ୍ରାମରେ ଥିବା ପଞ୍ଚାୟତ ପାରମ୍ପରିକ ଓ ଅନୌପଚାରିକ ଥିଲା । ଏ ପ୍ରକାର ପଞ୍ଚାୟତ ଭାରତର ଗ୍ରାମମାନଙ୍କରେ ହଜାର ହଜାର ବର୍ଷ ଧରି ରହି ଆସିଥିଲା । ଏଭଳି ପଞ୍ଚାୟତର ସଭ୍ୟମାନଙ୍କର ନ୍ୟସ୍ତସ୍ୱାର୍ଥ ଦାନା ବାନ୍ଧି ପାରିବାର ସୁଯୋଗ ନ ଥିଲା । ସ୍ୱଳ୍ପ ସମୟ କ୍ଷମତାରେ ରହିବା ଯୋଗୁଁ, ଲୋକମାନେ ନେତୃତ୍ୱ ପରିବର୍ତ୍ତନ କରିବାର ସୁଯୋଗ ପାଉଥିଲେ । ଏହା ସ୍ୱଚ୍ଛ, ନିର୍ମଳ ଓ ଦୃଢ଼ ଶାସନର ସହାୟକ ଥିଲା ।

ଯେଉଁ ଭୋଟ୍ କାଗଜଟିରେ ଗୋଟିଏ ନାମ ଉଲ୍ଲେଖ ରହୁଥିଲା, ସେଥିରୁ ସର୍ବାଧିକ ଭୋଟ୍ ପାଉଥିବା ବ୍ୟକ୍ତି ଗ୍ରାମର ହିସାବ ରକ୍ଷକ ରହୁଥିଲେ । ସେ ଗ୍ରାମର କୋଠ ଜମିରୁ ଆଦାୟ ହେଉଥିବା ଧାନର ହିସାବ ରଖିବା ସଙ୍ଗେ ସଙ୍ଗେ ଅର୍ଥର ହିସାବ ମଧ୍ୟ ରଖୁଥିଲେ ।

ପଞ୍ଚାୟତ ସଭ୍ୟ ସ୍ୱଳ୍ପକାଳ କ୍ଷମତାରେ ରହିବା ସପକ୍ଷରେ ଜନମତ ଥିଲା । ତଦ୍ଦ୍ୱାରା କ୍ଷମତାଲୋଭୀ, ମନମୁଖୀ, ଉଚ୍ଛୃଙ୍ଖଳ, ପକ୍ଷପାତୀ, ଦୁର୍ନୀତିଗ୍ରସ୍ତ ତଥା ଭ୍ରଷ୍ଟାଚାରୀ ବ୍ୟକ୍ତିମାନଙ୍କୁ ବଦଳାଇବାରେ ଏହି ରାଜନୈତିକ ବ୍ୟବସ୍ଥା ସହାୟକ ହେଉଥିଲା । ଏହି ରାଜନୈତିକ ବ୍ୟବସ୍ଥା ଦୀର୍ଘ ୪୩ ବର୍ଷ ଚାଲିବା ପରେ, ୨୦୦୪ ମସିହାରେ ବାର୍ଷିକ ନିର୍ବାଚନ ହୋଇନଥିଲା । ସେଥିପାଇଁ ଗ୍ରାମବାସୀମାନଙ୍କ ଭିତରେ ଆଲୋଡ଼ନ ଜାତ ହୋଇଥିଲା । ଗ୍ରାମବାସୀଙ୍କ ଚାପରେ ୨୦୦୬ ମସିହା ଜୁଲାଇ ମାସରେ ନିର୍ବାଚନ ହେଲା । ଏହି ନିର୍ବାଚନରେ ଗ୍ରାମ ନେତୃତ୍ୱ ରାଜନୈତିକ ବ୍ୟବସ୍ଥାରେ

ଘୋର ପରିବର୍ତ୍ତନ ଆଣିଥିଲେ । ଆସନ୍ତା ବର୍ଷରୁ ପଣାସଂକ୍ରାନ୍ତିଠାରୁ ସପ୍ତାହ ମଧ୍ୟରେ ନିର୍ବାଚନ ହେବ ବୋଲି ସ୍ଥିର କରାଯାଇଥିଲା ।

ବର୍ତ୍ତମାନ ସାବାଳକ ଭୋଟ ପ୍ରଥାକୁ ଉଚ୍ଛେଦ କରାଯାଇ କେବଳ ପରିବାର ମୁଖ୍ୟଙ୍କୁ ଭୋଟ ଅଧିକାର ଦିଆଯାଇଛି । ଏମ୍‌ପି, ଏମ୍‌ଏଲ୍‌ଏ ଓ ପଞ୍ଚାୟତ ନିର୍ବାଚନରେ ସାବାଳକ ଭୋଟପ୍ରଥା ଥିବାବେଳେ ଗ୍ରାମ ଭୋଟ୍‌ରେ କାହିଁକି ସାବାଳକ ଭୋଟ ପ୍ରଥା ଲାଗୁ କରାଯିବ ନାହିଁ, ଏ ପ୍ରଶ୍ନ ଉଠିଥିଲା । ଏଥିରେ ଯୁବଗୋଷ୍ଠୀ ଅସନ୍ତୁଷ୍ଟ ହୋଇଥିଲେ । ଗ୍ରାମ ନେତୃତ୍ୱର ମତ ଥିଲା ଯେ, ସାବାଳକ ଭୋଟପ୍ରଥା ପ୍ରଚଳନ ଯୋଗୁଁ ଗ୍ରାମରେ ବିଶୃଙ୍ଖଳା ବଢୁଛି । ଯୁବଗୋଷ୍ଠୀ ମତ ରଖିଲେ ଯେ, ଯୁବଶକ୍ତି ହେଉଛି ଦେଶର ପ୍ରାଣ । ଏହା ସମାଜକୁ କର୍ମଚଞ୍ଚଳ କରେ । ଜଙ୍ଗଲ ଉଜୁଡ଼ିବା ବେଳେ, ମାଛ ଚୋରି ହେବାବେଳେ, ସମାଜର ଘଡ଼ିସନ୍ଧି ମୁହୂର୍ତ୍ତରେ, ଗ୍ରାମବାସୀ ଯୁବଶକ୍ତିକୁ ବିନିଯୋଗ କରୁଛି । କେବଳ ଅଭିଭାବକଙ୍କ ମଧ୍ୟରେ ଭୋଟ ଅଧିକାରକୁ ସୀମିତ କରାଗଲେ ମଧ୍ୟ, କିଛି ଯୁବକ (ଯେଉଁମାନେ ଗୃହକର୍ତ୍ତା ନୁହଁନ୍ତି) ନିର୍ବାଚିତ ହେଲେ । ତେଣୁ ପ୍ରଶ୍ନ ଉଠିଲା ଯେ, ଯଦି ଯୁବଗୋଷ୍ଠୀର ମତଦାନ ଦେବାର ଅଧିକାର ନାହିଁ, ତେବେ ସେମାନେ ଗ୍ରାମର ନାଗରିକ ନୁହଁନ୍ତି । ଏଥର ଗ୍ରାମ ନେତୃତ୍ୱ ଆଉ ଏକ ବ୍ୟତିକ୍ରମ କଲେ । ତେୟାଳିଶ ବର୍ଷ ହେଲା ଗ୍ରାମ ଶାସନ ଦାୟିତ୍ୱରେ ମାତ୍ର ପାଞ୍ଚଜଣ ରହୁଥିଲେ । ବର୍ତ୍ତମାନ ସାତ ଜଣ ସେ ଦାୟିତ୍ୱରେ ରହିଲେ । ଗ୍ରାମ ନେତୃତ୍ୱର ଯୁକ୍ତି ହେଲା, ପାଞ୍ଚଜଣ ଗ୍ରାମ ଚଳାଇଲେ, ଗ୍ରାମକୁ ନିୟନ୍ତ୍ରଣରେ ରଖିବା ପାଇଁ ନେତୃତ୍ୱର ବଳ ପାଉନାହିଁ । ତେଣୁ ସାତଜଣ ଗ୍ରାମ ପରିଚାଳନା କଲେ ନେତୃତ୍ୱର ବଳ ବୃଦ୍ଧିପାଇବ ।

ବୁଦ୍ଧଗ୍ରାମରେ ଯେଉଁ ରାଜନୈତିକ ବ୍ୟବସ୍ଥାର ପ୍ରଚଳନ କରାଯାଇଥିଲା, ତାହା ଯେ ଏକ ବୈପ୍ଲବିକ ଓ ଯୁଗାନ୍ତକାରୀ ପଦକ୍ଷେପ ଏବଂ ପୃଥିବୀ ପାଇଁ ଏକ ଆଦର୍ଶ, ଏ କଥା ଯେ କେହି ଉପଲବ୍ଧ କରିପାରିବ । ଏ ପ୍ରକାର ରାଜନୈତିକ ବ୍ୟବସ୍ଥାର ପ୍ରଚଳନର କିଛିବର୍ଷ ପରେ, ସ୍ୱିଡେନ୍ ସରକାରଙ୍କର ଏକ ଗୋଷ୍ଠୀ ବୁଦ୍ଧଗ୍ରାମ ପରିଦର୍ଶନରେ ଆସି ଏଠାରେ ପ୍ରଚଳିତ ଥିବା ରାଜନୈତିକ ବ୍ୟବସ୍ଥାର ବିଶ୍ଳେଷଣ କରି ଅଭିଭୂତ ହୋଇଯାଇଥିଲେ ଓ ସାରା ଜଗତ ପାଇଁ ଏ ପ୍ରକାର ଗଣତାନ୍ତ୍ରିକ ବ୍ୟବସ୍ଥା ପ୍ରେରଣାର ଉତ୍ସ ହୋଇରହିବ ବୋଲି ସ୍ୱୀକାର କରିଥିଲେ । ଏହି ଗ୍ରାମ ଜଙ୍ଗଲ ସଂରକ୍ଷଣ ଦିଗରେ ଅନେକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ଦେଇଥିବାରୁ ସ୍ୱିଡେନ୍ ସରକାର ଖୁସି ହୋଇ ଓଡ଼ିଶା ସରକାରଙ୍କ ସାମାଜିକ ବନୀକରଣ ଯୋଜନାକୁ ୩୩ କୋଟି ଟଙ୍କା ଦାନ କରିଥିଲେ ।

ସମ୍ବାଦ ୮.୧୦.୨୦୦୬ରେ ପ୍ରକାଶିତ

# ଲୁଣ ଓ ଓଡ଼ିଶା ସରକାର

**ନାରାୟଣ ହଜାରୀ**

ଦିଲ୍ଲୀର ଏକ ସଭା । ଅଖିଳ ଭାରତୀୟ ଆୟୁର୍ବିଜ୍ଞାନ ସଂସ୍ଥାନର ପ୍ରାକ୍ତନ ପ୍ରଫେସର ଏମ୍.ଜି. କର୍ମକରନ୍ କହୁଥାନ୍ତି ଲୁଣର ଆୟୋଡ଼ିନ୍ ମିଶ୍ରଣର ଆବଶ୍ୟକତା ସମ୍ପର୍କରେ । ଶରୀର ପାଇଁ ତିନୋଟି ଜିନିଷ ଅପରିହାର୍ଯ୍ୟ । ଭିଟାମିନ୍-ଏ । ଆଖିର ସୁସ୍ଥତା ତା ଉପରେ ନିର୍ଭରଶୀଳ । ସବୁଜ ପରିବା, ପତ୍ର, ଫଳରୁ ମିଳେ । ଦ୍ୱିତୀୟଟି ହେଉଛି ଆଇରନ୍ । ଭାରତରେ ୭୦ ପ୍ରତିଶତ ଲୋକଙ୍କର ଆଇରନ୍ ଅଭାବ । ତେଣୁ ଦୁର୍ବଳ ଲାଗେ । ଦେହ ଭାଙ୍ଗି ଭାଙ୍ଗି ପଡ଼େ । ଭୁଶୁଡ଼ି ପଡ଼େ । କାମ କରିବାକୁ ଶକ୍ତି ପାଏନାହିଁ । ତା'ପରେ ଆୟୋଡ଼ିନ୍ । ଏହା ଉପରେ ମଣିଷର ଦୈହିକ ଶକ୍ତି ଓ ବୁଦ୍ଧି ନିର୍ଭରଶୀଳ । ମାଟିରୁ ଶକ୍ତି ମିଳେ । ଆୟୋଡ଼ିନଯୁକ୍ତ ଲୁଣ ଆମ ପାଇଁ ନ ହେଲେ ନ ଚଳେ । ଥାଇରଏଡ୍ ଉପରେ ଆୟୋଡ଼ିନ୍ କାର୍ଯ୍ୟକରି ଥାଇରୋସିନ୍ ସୃଷ୍ଟିକରେ । ଉତ୍ତରପ୍ରଦେଶ ଓ ବିହାରରେ ସର୍ବାପେକ୍ଷା ଆୟୋଡ଼ିନ୍ ଅଭାବ ଅଧିକ । ରୋଷେଇ ଶେଷବେଳକୁ ଆୟୋଡ଼ିନ୍ ଲୁଣ, ଡାଲି, ତରକାରୀରେ ପକାଇବାକୁ ପରାମର୍ଶ ଦେଇଥାନ୍ତି । ତାହେଲେ, ଆୟୋଡ଼ିନ୍ ଅକ୍ଷତ ରହେ, ଜାଳରେ ନଷ୍ଟ ହୁଏ ନାହିଁ । ସଭାରେ ପ୍ରାୟ ୪୦୦ ଶ୍ରୋତାଥାନ୍ତି ।

ମୁଁ ପ୍ରଶ୍ନ ପଚାରିଲି । ସାଧାରଣ ଲୁଣ କେଜି ୨ ଟଙ୍କା ହେଲାବେଳକୁ ଟାଟା ଲୁଣ, ଅନ୍ନପୂର୍ଣ୍ଣା ଲୁଣ କେଜି ପ୍ରାୟ ୭ ଟଙ୍କା କାହିଁକି ? ଭାରତରେ ୫୨ ପ୍ରତିଶତ ଲୋକ ଦାରିଦ୍ର୍ୟର ସୀମାରେଖା ତଳେ ଓ ୨୬ ପ୍ରତିଶତ ଲୋକ ଉତ୍କଟ ଦାରିଦ୍ର୍ୟ ମଧ୍ୟରେ ସଢ଼ନ୍ତି । ଶେଷୋକ୍ତଭାଗ ଲୋକଙ୍କୁ ୨ ବେଳା ପେଟପୁରା ଖାଦ୍ୟ ମିଳେ ନାହିଁ । ପ୍ରମୁଖ ଭାଗ ଲୋକଙ୍କୁ ପୁଷ୍ଟିସାର ଖାଦ୍ୟ ମିଳେନାହିଁ । ସେମାନେ କେଜିକରେ ୫ଟଙ୍କା ଅଧିକ ଦେଲେ, କେତେ ଅଧିକ ସମ୍ବଳ ବ୍ୟୟ କରୁଛନ୍ତି ? ସାଧାରଣ ଲୋକ କେତେ ଶୋଷିତ ହେଉଛନ୍ତି ?

ତା'ର ଉତ୍ତରରେ ପ୍ରଫେସର କର୍ମକରନ୍ କହିଲେ – ଲୁଣର ଦାମ୍ ଅହେତୁକ ଭାବେ ବଢ଼ିବାର ୨ଟି କାରଣ ରହିଛି । ପ୍ରଥମ କଥା ହେଲା ବିଜ୍ଞାପନ ଖର୍ଚ୍ଚ ।

ଦ୍ୱିତୀୟ କାରଣ ହେଲା ପ୍ୟାକେଜିଂ ଖର୍ଚ୍ଚ ।

ସଭା ସାଙ୍ଗ ହେଲା । ମୋ ମନ ବୁଝିଲା ନାହିଁ । ତାଙ୍କୁ କହିଲି, ଏ ରହସ୍ୟ ମୁଁ ବୁଝିପାରୁନାହିଁ । ଦୁଇ ଟଙ୍କାରୁ ସାତ ଟଙ୍କା । ଏତେ ବଡ଼ ବ୍ୟବଧାନ କାହିଁକି ? ଅଭାବୀ ଲୋକ ଏ ବୋଝ କିପରି ବୋହିବେ ? ମୋ ମନ ଗୋଳେଇଘାଣ୍ଟି ହେଉଥାଏ । ଏ ଶୋଷଣରୁ କ'ଣ ମୁକ୍ତି ପାଇବାର ବାଟ ନାହିଁ? ତାପରେ ସେ ମତେ କହିଲେ "କାହିଁକି ଆୟୋଡ଼ିନଯୁକ୍ତ ଲୁଣ ୨ ଟଙ୍କା ୫୦ ପଇସା ଓ ୩ ଟଙ୍କାରେ ମିଳୁଛି ।" ମୁଁ ବିସ୍ମିତ ହେଲି । ମୁଁ ଏକଥା କିପରି ଜାଣିନାହିଁ? ଦୋକାନୀ ମୋତେ ଏ କଥା ତ କେବେ କହିନାହିଁ । ସେ ବୁଝାଇଲେ, ଲାଭର ସୀମା ଏଥିରେ କମ୍ । ତେଣୁ ଦୋକାନୀମାନେ ଗ୍ରାହକମାନଙ୍କୁ ଏକଥା ଜଣାନ୍ତି ନାହିଁ ।

ତାପରେ ସ୍ୱତଃ ମନକୁ ପ୍ରଶ୍ନ ଆସିଲା । ସରକାରଙ୍କର ଏ ସମ୍ପର୍କରେ କ'ଣ କିଛି ଦାୟିତ୍ୱ ନାହିଁ? ଓଡ଼ିଶା ସରକାର ଆୟୋଡ଼ିନଯୁକ୍ତ ଲୁଣ ଖାଇବାକୁ ଲୋକଙ୍କୁ ବାଧ କରିବାକୁ ଆଇନ ପ୍ରଣୟନ କରିବେ ବୋଲି ଶୁଣିଥିଲି । ତାହେଲେ ଓଡ଼ିଶା ସରକାର ଶସ୍ତାରେ ଆୟୋଡ଼ିନଯୁକ୍ତ ଲୁଣ ମିଳେ ବୋଲି କାହିଁକି ଲୋକଙ୍କୁ କହୁନାହାନ୍ତି । କ'ଣ ଜାଣିଶୁଣି ଖବର ଦବାଯାଉଛି । ପ୍ରଫେସର କର୍ମକରନ୍ ଏ କଥା କାହିଁକି ସଭାରେ ପ୍ରକାଶ କଲେନାହିଁ । ଏ ସବୁ ପ୍ରଶ୍ନବାଚୀ ମୋ ସମ୍ମୁଖରେ । ଆୟୋଡ଼ିନଯୁକ୍ତ ଲୁଣ ପ୍ରସ୍ତୁତ କରୁଥିବା କର୍ପୋରେଟ୍ ସେକ୍ଟର, ସରକାର ଓ ପ୍ରଫେସର କର୍ମକରନ୍‌ଙ୍କ ମଧ୍ୟରେ କ'ଣ ଏକ ଅଦୃଶ୍ୟ ଡୋରିର ସମ୍ପୃକ୍ତି ରହିଛି ? ଏ ପରିପ୍ରେକ୍ଷୀରେ ସର୍ବୋଦୟର ପୂଜାରୀ ମନମୋହନ ଚୌଧୁରୀଙ୍କ 'ପୁଣି ଲୁଣ ଆନ୍ଦୋଳନ' ଲେଖାଟି ପ୍ରାସଙ୍ଗିକ ମନେହୁଏ । ପ୍ରାୟ ୭୦ ଜଣ ଆଦର୍ଶବାଦୀ ଯୁବକଙ୍କର ଓଡ଼ିଶାର ଉପକୂଳର ଦୀର୍ଘ ଅଞ୍ଚଳରେ ପଦଯାତ୍ରାର ଯଥାର୍ଥତା ବୁଝିହୁଏ ।

ସରକାର ରାଜସ୍ୱ ଆଦାୟ ପାଇଁ ଗାଁପୋଖରୀ ନିଲାମ କଲେ, ପାହାଡ଼ର ପଥର ନିଲାମ କଲେ, ନଦୀର ବାଲି ନିଲାମ କଲେ, ଜଙ୍ଗଲର ଗଛ ବାଉଁଶ ନିଲାମ କଲେ । ଗାଁଗହଳିରେ ଘର ଟିକସ ବସାଇବା ସ୍ଥିର କଲେ । ଏତେ ସବୁ କରି ପେଟ ପୂରିଲା ନାହିଁ । ଓଡ଼ିଶା ସରକାର ଅଭାବ ପୂରଣ ପାଇଁ ଶେଷକୁ ମଦଦୋକାନ ଖୋଲିବା ଆଇନସମ୍ମତ କଲେ । ନୀତି ଯିବା ସାର ହେବ । ପେଟ ପୂରିବ ନାହିଁ । ସରକାର ଏ ସମ୍ପର୍କରେ ଚିନ୍ତା କରନ୍ତୁ । ଝିଙ୍କିକା ମାରି ବଣି ପୋଷିବା ନୀତି ପରିହାର କରନ୍ତୁ । ଲୋକଙ୍କର ସର୍ବନାଶ କରି ଦେଶକୁ ଉଠାଇବା ପ୍ରୟାସରୁ କ୍ଷାନ୍ତ ରହନ୍ତୁ ।

**ସମାଜ ୨୦.୦୫.୨୦୦୨ରେ ପ୍ରକାଶିତ**

# ଲୋକ ବିରୋଧୀ ସରକାରୀ ନୀତି

ନାରାୟଣ ହଜାରୀ

ଶ୍ରେଣୀଭେଦ ଓ ଜାତିଭେଦକୁ ଭିତ୍ତିକରି ସମାଜ ଠିଆହୋଇଛି । ସମାଜର ଏକ ବିରାଟ ଅଂଶ ଶୋଷିତ ଓ ଦଳିତ । ଏହା ବିଭିନ୍ନ ସୁବିଧା ସୁଯୋଗରୁ ବଞ୍ଚିତ । ଆଜିର ସମାଜରେ ଏହା ଏକ ଜଘନ୍ୟ ଅପରାଧ । ମାନବାଧିକାର ପାଇଁ କେତେକ ପାଟି କରୁଛନ୍ତି; କିନ୍ତୁ ତା'ର ବ୍ୟାପକ ଉଲଂଘନ ହେଉଛି ।

କେତେ କ୍ଷେତ୍ରରେ ଦେଖାଯାଉଛି ଯେ, ବୃହତ ଜଳ ବିଦ୍ୟୁତ୍ ପ୍ରକଳ୍ପ ଓ ଶିଳ୍ପକାରଖାନା ଯୋଗୁଁ, ଆଦିବାସୀ, ଦଳିତ (ହରିଜନ) ଓ ଗରିବ ଲୋକେ ନିଜର ଜମି, ଘରବାଡ଼ି ହରାଇ ବିସ୍ଥାପିତ ହେଉଛନ୍ତି । ସେମାନେ ଦରିଦ୍ର, ଅଶିକ୍ଷୀତ ଓ ନିରବ ରହୁଥିବାରୁ ସହଜରେ ବାସଚ୍ୟୁତ ହେଉଛନ୍ତି । କେଉଁଠି କାରାଗାର ଓ ଥାନା ହାଜତରେ ଭୟଙ୍କର ନିର୍ଯାତନା ଓ ମୃତ୍ୟୁ ହେଉଛି ତ କେଉଁଠି ଲୋକେ ଦିନସାରା ଖଟି ଖଟି, ଦୁଇଓଳା ପେଟପୁରା ଖାଇବାକୁ ପାଉନାହାନ୍ତି । ମହିଳାମାନଙ୍କ ଉପରେ ଜୁଲମ ଓ ଅତ୍ୟାଚାର ବଢ଼ିବାରେ ଲାଗିଛି ।

ଶୋଷିତ ଲୋକେ ଅସାମ୍ୟ, ଅନ୍ୟାୟ, ଶୋଷଣ ଓ ଅତ୍ୟାଚାର ବିରୋଧରେ ଲଢ଼ିଲାବେଳେ, ସରକାର ବେଳେ ବେଳେ ଅସହିଷ୍ଣୁ ହେଉଛନ୍ତି । ଏହି ଅସହନଶୀଳ ମନୋଭାବ ଦିନକୁ ଦିନ ବଢ଼ିବାରେ ଲାଗିଛି ।

ଗୋଟିଏ ପଟେ ବଣ, ଜଙ୍ଗଲ, ଖଣି ଆଜି ସର୍ବସାଧାରଣଙ୍କ ସମ୍ପଦକୁ ଘରୋଇ କମ୍ପାନୀମାନଙ୍କୁ ଲିଜ୍ ଦିଆଯାଉଛି । ଅନ୍ୟପଟରେ କଳାହାଣ୍ଡିର ମହିଳାମାନଙ୍କୁ ସେମାନଙ୍କ ନିଜ ଜଙ୍ଗଲରୁ ବାହାରୁଥିବା ଜିନିଷମାନଙ୍କର କିଣାବିକା ପାଇଁ ଅଧିକାର ଦିଆଯାଉନାହିଁ ।

ଲଘୁ ବନଜାତ ଦ୍ରବ୍ୟ ଉପରେ ସମ୍ପୃକ୍ତ ଅଞ୍ଚଳର ଅଧିବାସୀମାନଙ୍କର ଅଧିକାର ଅଛି କି ନାହିଁ? ଆଦିବାସୀମାନେ ତାଙ୍କର ଜଙ୍ଗଲରେ ହେଉଥିବା ମହୁଲ, ତେନ୍ତୁଳି,

ଶାଳମଞ୍ଜି, ଶାଳପତ୍ର, ଝୁଣା ଆଦି ଜିନିଷ ସଂଗ୍ରହକରି ନିଜ ଘରେ ରଖି, ଦରବଢ଼ିବା ସମୟରେ ବଜାରରେ ବିକ୍ରି କରିପାରିବେ କି ନାହିଁ ?

ଓଡ଼ିଶାର ରାୟଗଡ଼ା ଜିଲା ଅନ୍ତର୍ଗତ, କାଶୀପୁର ବ୍ଲକ୍ ଏକ ଅନୁନ୍ନତ ଅଞ୍ଚଳ । ଏହା ଏକ ଆଦିବାସୀ ଓ ଦଳିତବହୁଳ ଅଞ୍ଚଳ । ଏଠାରେ ଫେବୃଆରୀ ୧୦ରୁ ୧୩ ପର୍ଯ୍ୟନ୍ତ ଚାରିଦିନ ଲେଖକ କଟାଇଥିଲା । ତା୧୦ରିଖରେ ମାଣ୍ଡିବିଶି ପଞ୍ଚାୟତର ଆମ ଶାସନକଳର ଏତେ ବିମୁଖତା, ହୃଦୟହୀନତା, କ୍ରୁରତା ଓ ବର୍ବରତା । ଭାବିଲେ ହୃଦୟ ବିଦୀର୍ଣ୍ଣ ହୁଏ ।

ସରକାରଙ୍କ ଆଦିବାସୀ ଉନ୍ନୟନ ସମବାୟ ନିଗମ ଆଦିବାସୀ ଅଞ୍ଚଳମାନଙ୍କରେ ଖୋଲାଯାଇଛି । ବିଭାଗର ଦାୟିତ୍ୱ ହେଲା, ଲୋକେ କିପରି ଅମଳ କରୁଥିବା ଜିନିଷପତ୍ରକୁ ଉଚିତ୍ ମୂଲ୍ୟରେ ବିକ୍ରିକରିବେ ଓ ସୁଲଭ ମୂଲ୍ୟରେ କିଣିବେ । ଲଘୁ ବନଜାତ ଜିନିଷଗୁଡ଼ିକୁ କିଣାବିକା ପାଇଁ ଏହି ସଂସ୍ଥା ଲାଇସେନ୍ସ ପାଇଛି । କିନ୍ତୁ ସଂସ୍ଥା ଲୋକମାନଙ୍କଠାରୁ ଠିକ୍ ଦରରେ କିଣିବା ବଦଳରେ, ଲୋକଙ୍କୁ ଠକୁଛି । ଏହାର ପ୍ରତିବାଦରେ ମାଣ୍ଡିବିଶି ମହିଳାମଣ୍ଡଳ, ପୂର୍ବତନ ମୁଖ୍ୟମନ୍ତ୍ରୀଙ୍କ ସହ ଆଲୋଚନା ଅନୁସାରେ, ଏ ଅଞ୍ଚଳରୁ ୧୭୩ କ୍ୱିଣ୍ଟାଲ ଫୁଲଝାଡୁ ସଂଗ୍ରହ କରିଥିଲା । ଝାଡୁଗୁଡ଼ିକୁ ଉଚିତ ଦରରେ ବିକିବା ପାଇଁ, ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଚିଠି ଲେଖିଥିଲା । ଏହାର ଉତ୍ତରରେ ବର୍ତ୍ତମାନ ସରକାରଙ୍କ ପଞ୍ଚାୟତିରାଜ ବିଭାଗ, ଚିଠି ସଂଖ୍ୟା ୫/୫୯ ୩୪୭୩/ପି.ଆର୍. ତା୧୮/୦୪/୧୯୯୫ରେ ଓରମାସ୍ ଜରିଆରେ ପ୍ରତ୍ୟେକ ଜିଲ୍ଲାର ଡିଆରଡିଏ ଏବଂ ଭୁବନେଶ୍ୱରସ୍ଥିତ ଟିଡିସିସି ପରିଚାଳନା ନିର୍ଦ୍ଦେଶକଙ୍କୁ ଜଣାଇଛନ୍ତି ଯେ, ଲଘୁବନଜାତ ଦ୍ରବ୍ୟ, ପଞ୍ଜିକୃତ ମହିଳାମଣ୍ଡଳକୁ କିଣାବିକା ପାଇଁ ଲାଇସେନ୍ସ ଦେବେ ।

ମହିଳାମଣ୍ଡଳ କିଛିଦିନ ଅପେକ୍ଷାକରି ଦେଖିଲେ ଯେ, ତାଙ୍କର ଝାଡୁକୁ ଟିଡିସିସି ପ୍ରକୃତ ମୂଲ୍ୟଦେଇ କିଣିବା ପାଇଁ ପ୍ରସ୍ତୁତ ନୁହେଁ । ଏଠାରେ ସୂଚନାଯୋଗ୍ୟ ଯେ, ଗୋଟିଏ କିଲୋ ଝାଡୁରେ ୩ ମୁଠା ଝାଡୁହେବ । ଗୋଟିଏ ମୁଠା ଝାଡୁର ଦାମ ୮୪ ଟଙ୍କା ଓ ୩ ମୁଠା ଝାଡ଼ୁର ଦାମ ୨୪ ଟଙ୍କା । ଗୋଟିଏ କିଲୋ ଝାଡୁରେ ୨୪ ଟଙ୍କା ମିଳୁଥିବାବେଳେ, ମହିଳାମଣ୍ଡଳର ମାଆମାନେ କାହିଁକି ୫ ଟଙ୍କାରେ ବିକିବେ । ତେଣୁ ନିଜେ ଝାଡୁବାନ୍ଧି ବିକିବେ ବୋଲି ସ୍ଥିରକଲେ ।

ଝାଡୁବନ୍ଧା ତାଲିମ ଆରମ୍ଭ ହେଲା । ମଇ ୨୮ ତାରିଖ ଦିବା ୧୧ ଘ. ୩୦ମି. ସମୟରେ ଟିଡିସିସିର ପରିଚାଳନା ନିର୍ଦ୍ଦେଶକ, ଝାଡୁ ବ୍ୟବସାୟୀ (ହାଇଦ୍ରାବାଦର), ଜଙ୍ଗଲ ବିଭାଗ କର୍ମଚାରୀ, ପୁଲିସ, ତହସିଲଦାର ଆଦି ୩ଟି

ଜିପ୍, ଗୋଟିଏ ଟ୍ରାକ୍ଟର ଓ ୨ଟି ଟ୍ରକ୍‌ରେ କାଶୀପୁରରୁ ଆସି ପହଞ୍ଚିଲେ । ସେ ସମୟରେ ମହିଳାମାନେ ଝାଡୁ ବାନ୍ଧୁଥାଆନ୍ତି । ଡିଡିସିସିର ବ୍ରାଞ୍ଚ ମ୍ୟାନେଜର ଓ କର୍ମଚାରୀମାନେ କହିଲେ, ତୁମକୁ ୫ ଟଙ୍କାରେ ଝାଡୁ ଦେବାପାଇଁ ବାରମ୍ବାର କହିବାପରେ, ତମେ ଦେଲନାହିଁ । ଯଦି ଆଜି ନ ଦିଅ, ଜବରଦସ୍ତ ଝାଡୁ ନେବୁ । ଆମେ ମାଜିଷ୍ଟ୍ରେଟ୍‌ଙ୍କ କ୍ଷମତାଧରି ଆସିଛୁ । ମହିଳାମଣ୍ଡଳର ମାଆମାନେ କହିଲେ, ଆମେ ୫ ଟଙ୍କାରେ ଝାଡୁ ଦେବୁନାହିଁ । ତାପରେ ସେମାନେ ବହୁତ ଅଶ୍ଳୀଳ ଭାଷାରେ ଗାଳିଗୁଲଜ କଲେ ବୋଲି ମା'ମାନେ ମୋ ଆଗରେ ଅଭିଯୋଗ କଲେ । ସରକାରୀ ବାବୁମାନେ କହିଲେ, ତୁମେମାନେ ବିନା ଲାଇସେନ୍ସରେ ଝାଡୁ ବିକୁଛ, ପୁଣି ଅର୍ଡ଼ର ମାଗୁଛ । ଏହି କଥା ଉପରେ ଯୁକ୍ତିତର୍କ ହେବାରୁ, ମାରିବାକୁ ଧମକାଇଲେ । ତାପରେ ଝାଡୁ ନେବାପାଇଁ ଚାବି ନ ମାଗିଲେ । ଆମେମାନେ ଚାବି ନ ଦେବାରୁ, ଜବରଦସ୍ତ ପାବେଲ ଡୋମ୍‌ର ତାଲାକୁ ଭାଙ୍ଗି ଆମମାନଙ୍କ ଉପସ୍ଥିତିରେ ଝାଡୁବୋଝେଇ କରିଥିଲେ । ମହିଳାମଣ୍ଡଳର ମାଆମାନେ ବୋଝେଇ ଗାଡ଼ି ଛାଡ଼ି ନ ଦେବାପାଇଁ ରାସ୍ତାରେ ଅବରୋଧ କରି ବସିଗଲେ । ବାବୁମାନେ ଗାଡ଼ିଗୁଡ଼ିକୁ ମହିଳାମାନଙ୍କ ପାଖକୁ ଆଣି ସେମାନଙ୍କ ଦେହକୁ ଲଗାଇ ରଖିଦେଲେ । ମାଆମାନେ ଏଥିରେ ସାହସ ହରାଇ ନଥିଲେ । ସେମାନେ କହିଲେ, "ତୁମେମାନେ ଆମକୁ ନ ପଚାରି ଆମର ଗୋଦାମ୍ ଘରର ତାଲା ଭାଙ୍ଗି, ଆମ ପେଟର ଦାନା ଛଡ଼ାଇ ନେଉଛ ଏବେ ଆମ ଉପରେ ଗାଡ଼ି ଚଢ଼ାଇ ନେଇଯାଅ ।" ଏହି କଥା କହିଲାବେଳେ ମାଆମାନେ କାନ୍ଦି ପକାଇଥିଲେ । ସେମାନଙ୍କ ଆଖିରୁ ଧାର ଧାର ଲୁହ ବୋହିଯାଉଥିଲା । ବାବୁମାନେ ମାଆମାନଙ୍କୁ ଟଣାଓଟରା କରି, ଗାଳିଗୁଲଜ କରି ରାସ୍ତାରୁ ବାହାର କରିଦେଇଥିଲେ । ତାପରେ ଗାଡ଼ିରେ ଫୁଲଝାଡୁ ସବୁ ନେଇଯାଇଥିଲେ । କ୍ଷମତା ଓ ବାହୁବଳ ବାବୁମାନଙ୍କୁ ଅନ୍ଧ କରିଦେଇଥିଲା ଓ ଅର୍ଥଲୋଭର ବଶବର୍ତ୍ତୀ ସେମାନେ ହୋଇଥିଲେ ବୋଲି ମାଆମାନେ ଅଭିଯୋଗ କରିଥିଲେ ।

ରେଞ୍ଜର ଯେତେବେଳେ ଆଦେଶ ଦେଲେ ଚାବିଦେବାକୁ, ଲାକାଇ ଦେଈ କହିଲା, "ମୋ ବେକ କାଟିଦେ ପଛେ, ମୁଁ ଚାବି ଦେବିନି ।" ତାଲା ଭାଙ୍ଗିଲା ପରେ ଲାକାଇ କାନ୍ଦି କାନ୍ଦି କହିଲା, "ମୋ ଛୁଆଠୁ ଝାଡ଼ୁକୁ ଅଧିକ ଯତ୍ନ କରିଥିଲି, ତମେମାନେ ନେଇଯାଉଛ ।" ଝାଡୁ ଗାଡ଼ିରେ ଚଢ଼ାଇଲା ପରେ ଗ୍ରାମବାସୀଙ୍କର ସମ୍ମତି ଅଛି ବୋଲି ପ୍ରମାଣ ସକାଶେ ଦସ୍ତଖତ ପାଇଁ ବାବୁମାନେ ଚାରିଆଡ଼େ ଖେଦିଗଲେ । ତାପରେ ଗ୍ରାମବାସୀମାନେ ଗ୍ରାମ ଛାଡ଼ି ପଳାଇଲେ । ଉପରୋକ୍ତ କଥା ବର୍ଣ୍ଣନା କଲାବେଳେ ଶୁକ୍ରୁ ଦେଈ ତା' ଫଟାପାଦ ମତେ ଦେଖାଇ କାନ୍ଦି କାନ୍ଦି କହିଲା,

"ଆଜି ସକାଳୁ ଫୁଲଝାଡୁ ଆଣିବା ପାଇଁ ଜଙ୍ଗଲକୁ ଯାଇଥିଲି । ପାଦ ଫାଟିଗଲା, ହାତ କଟିଗଲା । ହାତରେ ଆଉ ଖାଇପାରିବି ନାହିଁ । ଏବେ ଏତେ ରାତି ହେଲାଣି । ଭୋକ କରୁଛି । ଘରେ ଜାଳ ନାହିଁ । ମୁଁ କ'ଣ ଖାଇବି ? ସରକାର ଆମ ପେଟ ଚିହ୍ନନ୍ତା କ'ଣ ଆମକୁ ନାଲି ଆଖି ଦେଖାଉଛି ଓ ପେଟକୁ ନାତ ମାରୁଛି ।" ଏ ସବୁ ଶୁଣି ମୁଁ ବିଶେଷ ଦୁଃଖିତ ହୋଇଥିଲି । ମତେ ଗୋଟେ କଥା ଭଲ ଲାଗିଥିଲା । ଝାଡୁ ନେଇଯାଉଥିବାବେଳେ ମା'ମାନେ ବଡ଼ ପାଟିରେ କାନ୍ଦି ନଥିଲେ । ନୀରବରେ ଅଶ୍ରୁପାତ କରିଥିଲେ । ଏଥିରୁ ସେମାନଙ୍କର ଆତ୍ମସମ୍ମାନ ଓ ଆତ୍ମବିଶ୍ୱାସର ପରିଚୟ ମିଳେ । ସେମାନଙ୍କ ମଧ୍ୟରେ ଭୟ ଲକ୍ଷ୍ୟ କରିନଥିଲି ।

ଜୁନ୍ ୧୯ ତାରିଖରେ କାଶୀପୁର ତହସିଲଦାରଙ୍କ କାର୍ଯ୍ୟାଳୟ ସମ୍ମୁଖରେ ୬୫ ଜଣ ମହିଳା ଗଣଧାରଣାରେ ସାରାଦିନ ବସିଥିଲେ । ଜିଲ୍ଲାପାଳଙ୍କ ନେତୃତ୍ୱରେ ନିଷ୍ପତ୍ତି ହେଲା ଯେ, ୭ ଟଙ୍କା ଦରରେ ୭୦ କ୍ୱିଣ୍ଟାଲ ଝାଡୁର ଦାମ ଦିଆଯିବ । ଏଥିରେ ମହିଳାମଣ୍ଡଳ ରାଜି ହେଲେ ନାହିଁ । ସେମାନେ କହିଲେଏ "ଆଉ ୧୦୩ କ୍ୱିଣ୍ଟାଲ ଝାଡୁର ଦାମ ଆମକୁ କିଏ ଦେବ ?" ଏ ଘଟଣାର ସମାଧାନ ପାଇଁ ରାଜସ୍ୱ କମିଶନରଙ୍କ ସଭାପତିତ୍ୱରେ ରାୟଗଡ଼ାଠାରେ ଏକ ବୈଠକ ବସିଲା । ଟିଡିସିସିର ଶାଖା ପରିଚାଳକ ଓ ଡିଏଫ୍ଓଙ୍କୁ ସଭାପତି କହିଲେ - "ଆଦିବାସୀ ଉନ୍ନୟନ ସମବାୟ ନିଗମ ଗଠନ କରାଯାଇଛି । ଆଦିବାସୀ ଲୋକମାନଙ୍କୁ ସାହାଯ୍ୟ କରିବା ପାଇଁ ଓ ସେମାନଙ୍କ ଦାରିଦ୍ର୍ୟ ଘୁଞ୍ଚାଇବା ପାଇଁ । ସେମାନଙ୍କୁ ହଇରାଣ କରି ଗରିବରୁ ଅଧିକ ଗରିବ କରିବାକୁ ନୁହେଁ ।" ତାଙ୍କର ଏ ପ୍ରକାର ଚେତାବନୀ ସତ୍ତ୍ୱେ, ମହିଳାମଣ୍ଡଳର ମା'ମାନଙ୍କ ବିରୋଧରେ ହୋଇଥିବା କେସ୍ ଏ ପର୍ଯ୍ୟନ୍ତ ଉଠାଯାଇନାହିଁ ।

ପ୍ରଧାନମନ୍ତ୍ରୀଙ୍କ ସଚିବ ବି.ଏନ୍. ଯୁଗାନ୍ଧର କୋରାପୁଟ ଗସ୍ତରେ ଆସିଥିବାବେଳେ ଆଦିବାସୀମାନେ ଅଭିଯୋଗ କରିଥିଲେ ଯେ, ସାମାନ୍ୟ ଛାଞ୍ଚୁଣି ବିକ୍ରି କରିବା ପାଇଁ, ସେମାନଙ୍କର ଅଧିକାର ନାହିଁ । ପ୍ରତିକ୍ରିୟାରେ ଯୁଗାନ୍ଧର କହିଥିଲେ, "କେନ୍ଦ୍ର ସରକାର ରାଜ୍ୟ ସରକାରଙ୍କୁ ଇସ୍ପାତ କାରଖାନା ପାଇଁ ସ୍ୱାଧୀନତା ଦେଉଥିବାବେଳେ, ସାମାନ୍ୟ ଛାଞ୍ଚୁଣି ବିକ୍ରି କରିବା ପାଇଁ ଲାଇସେନ୍ସ ଦରକାର ପଡୁଥିବା କ୍ଷୋଭର ବିଷୟ ।" ଆଦିବାସୀ ବିଧାୟକମାନଙ୍କୁ ବର୍ତ୍ତମାନର ମୁଖ୍ୟମନ୍ତ୍ରୀ ଏହି ସବୁ ସାମଗ୍ରୀ ସଂଗ୍ରହ କରି, ଆଦିବାସୀମାନେ ଯାହାକୁ ଚାହିଁବେ ତାକୁ ବିକ୍ରି କରିପାରିବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି । ତାହା କେବେ କାର୍ଯ୍ୟକାରୀ ହେବ କେଜାଣି ?

ଉପରୋକ୍ତ ସଂଘର୍ଷ ଆମ ସମାଜ ଭିତରେ ଲୁଚି ରହିଥିବା ହିଂସାତ୍ମକ ଭାବନାର

ନମୁନା । ଏହି ଭାବନାରୁ ସୃଷ୍ଟିହେଉଥିବା ସାମାଜିକ ପ୍ରକ୍ରିୟା, ଆଇନ୍‌କାନୁନ୍, ନୀତିନିୟମ, କୋଟି କୋଟି ଲୋକଙ୍କୁ ଦୁଃଖ ଦେଉଛି । ଶୋଷଣର ମୁକାବିଲା ପାଇଁ ସଂଘବଦ୍ଧ ଭାବେ କାର୍ଯ୍ୟ କରିବାକୁ ହେବ ।

ହଳିଆ ସାହିରୁ ରାତି ୮ଟାରେ ମାଣ୍ଡିବିଶି ଗାଁକୁ ଫେରିବା ବେଳେ ଆକାଶରେ ତାରାଗୁଡ଼ିକ ମଲ୍ଲୀଫୁଲ ପରି ବିଞ୍ଛିପଡ଼ିଥିଲା । ଶୁକ୍ରୁ ଦେଈର ଆଖିର ଲୁହଟୋପାଗୁଡ଼ିକ ମୁକ୍ତାପରି ଖସିପଡ଼ିବା ଦୃଶ୍ୟ ହୃଦୟରେ ଲାଖି ରହିଗଲା ।

# ଦେବଭୂମି ହିମାଳୟ

ନାରାୟଣ ହଜାରୀ
ସୁମନ୍ତକୁମାର ବେହେରା

ଭାରତର ଚାରିଧାମ ମଧ୍ୟରୁ ବଦ୍ରିନାଥ ଗୋଟିଏ । ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ମଧ୍ୟରୁ କେଦାରନାଥ ଅନ୍ୟତମ । ଯମୁନୋତ୍ରୀ ଓ ଗଙ୍ଗୋତ୍ରୀ ହିମାଳୟର ଆଉ ଦୁଇଟି ପବିତ୍ର ସ୍ଥାନ । ସେଠାରୁ ଯମୁନା ଓ ଗଙ୍ଗା ଯଥାକ୍ରମେ ବାହାରିଛନ୍ତି । ଏହି ଚାରିଗାଟି ପବିତ୍ର ସ୍ଥାନକୁ ଉତ୍ତରପ୍ରଦେଶର ଉତ୍ତରଖଣ୍ଡର ଚାରିଧାମ (ଦେବଭୂମି) ବୋଲି ସ୍ଥାନୀୟ ଲୋକେ କହନ୍ତି । ଚାରୋଟିଯାକ ସ୍ଥାନ ଦଶହଜାର ଫୁଟରୁ ଅଧିକ ଉଚ୍ଚରେ ଅବସ୍ଥିତ । ବଦ୍ରିନାଥ-୩୧୧୦ ମିଟର, କେଦାରନାଥ-୩୮୫୩ ମିଟର, ଗଙ୍ଗୋତ୍ରୀ-୩୧୪୦ ମିଟର ଓ ଯମୁନୋତ୍ରୀ ୩୩୨୩ ମିଟର ଉଚ୍ଚରେ ଅବସ୍ଥିତ । ଏଗୁଡ଼ିକ ଚୀନ୍ ଦେଶର ସୀମାନ୍ତରୁ ପ୍ରାୟ ୪୦ରୁ ୬୦ କି.ମି. ଦୂରରେ ଅବସ୍ଥିତ ।

ସ୍ଥାନଗୁଡ଼ିକ ବର୍ଷର ଛଅମାସ ବରଫାବୃତ୍ତ ରହନ୍ତି । ଏପ୍ରିଲ ଶେଷ ସପ୍ତାହରେ ବା ମଇ ମାସରେ ଏହି ସ୍ଥାନଗୁଡ଼ିକୁ ଯାତାୟାତ ଆରମ୍ଭ ହୁଏ । ବଦ୍ରିନାଥଠାରୁ ୩ କି.ମି. ଦୂରରେ ୩୦/୪୦ଟି ପରିବାର ବିଶିଷ୍ଟ ଗ୍ରାମ ଅବସ୍ଥିତ । ଏଠାରେ ବ୍ୟାସଙ୍କ ମନ୍ଦିର ଅବସ୍ଥିତ । ବେଦବ୍ୟାସ ଏହି ସ୍ଥାନରେ ବେଦ, ମହାଭାରତ ଓ ଭାଗବତ ରଚନା କରିଥିଲେ ବୋଲି ଲୋକମୁଖରେ ପ୍ରଚାରିତ । ଏଠାରେ ଅଳ୍ପଦୂରରେ ଭୀମ୍‌କାପୁଲ ବା ଭୀମଙ୍କ ତିଆରି ପୋଲ । ସେଠାରେ ପ୍ରବାହିତ ସ୍ରୋତସ୍ୱତୀ ସରସ୍ୱତୀ ନଦୀକୁ ପାଣ୍ଡବମାନେ ମହାପ୍ରୟାଣ ସମୟରେ ଅତିକ୍ରମ କରିନପାରିବାରୁ, ଭୀମ ନଦୀର ଦୁଇପାର୍ଶ୍ୱ ସଂଯୋଗ କଲାଭଳି ପ୍ରାୟ ୧୦୦ ଟନ୍ ଓଜନର ଚଉଡ଼ା ପଥର ଆଣି ପୋଲ ନିର୍ମାଣ କରିଥିଲେ ବୋଲି ଜନଶ୍ରୁତି । ଏହି ସରସ୍ୱତୀ ନଦୀର ଅନ୍ତଃସଲିଳା ସରସ୍ୱତୀ ନଦୀ ସହିତ କିଛି ସମ୍ବନ୍ଧ ଅଛି କି ନାହିଁ ତାହା ଅଜଣା ।

ହିମାଳୟ ପାଦଦେଶରେ ଅବସ୍ଥିତ ଋଷିକେଶଠାରୁ ବଦ୍ରିନାଥ ୨୯୮ କି.ମି. ଦୂର । ଯାତ୍ରୀମାନଙ୍କର 'ଜୟବଦ୍ରି' ବିଶାଳ ଧ୍ୱନିରେ ରାସ୍ତା ପ୍ରତିଧ୍ୱନିତ ହେଉଥାଏ ।

ଏ ବର୍ଷ ମଇ ୧୨ରୁ ୨୬ ପର୍ଯ୍ୟନ୍ତ ୧୫ ଦିନ ହିମାଳୟ ଚାରିଧାମ ଦର୍ଶନ କରିବାର ସୁଯୋଗ ଲେଖକ ଓ ତା'ର ଧର୍ମପତ୍ନୀ ହୈମବତୀ ଦେବୀଙ୍କୁ ମିଳିଥିଲା ।

ରାସ୍ତାର ଗୋଟିଏ କଡ଼ରେ ଋଷିକେଶଠାରୁ ବଦ୍ରିନାଥ ପର୍ଯ୍ୟନ୍ତ ଅଳକାନନ୍ଦୀ ପ୍ରବାହିତ । କେଦାରନାଥ ଯିବା ରାସ୍ତାର କଡ଼େ କଡ଼େ ମନ୍ଦାକିନୀ ପ୍ରବାହିତ । ଗଙ୍ଗୋତ୍ରୀ ଯିବା ରାସ୍ତାର କଡ଼େ କଡ଼େ ଭାଗୀରଥି ପ୍ରବାହିତ । ଯମୁନୋତ୍ରୀ ଯିବା ରାସ୍ତାର କଡ଼େ କଡ଼େ ଯମୁନା ପ୍ରବାହିତ । ରାସ୍ତାର ଉଭୟ ପାର୍ଶ୍ୱରେ ନଭଶ୍ଚୁମ୍ବୀ ପର୍ବତମାଳା । ପାହାଡ଼ କାଟି କାଟି ବସ୍ ଚାଲୁଥାଏ । ତଳକୁ ଦେଖିଲେ ଅତଳ ଗର୍ଭରେ ପତିତପାବନୀ ଜାହ୍ନବୀ ବିଭିନ୍ନ ନାମ ଓ ରୂପରେ ପ୍ରବାହିତ । ସେ ଦୃଶ୍ୟ ଦେଖିଲେ ପ୍ରାଣରେ ଭୀତି ସଞ୍ଚାର ହୁଏ । ବସ୍ ଯେତେବେଳେ ମୋଡ଼କୁ ଅତିକ୍ରମ କରେ ହୃଦୟ ଥରିଉଠେ । ହିମାଳୟର କେତେକ ଶୃଙ୍ଗର ଅଗ୍ରଭାଗ ଚିରବରଫାବୃତ । ସେଥିରୁ ବହୁଥିବା ଝରଣାଗୁଡ଼ିକ ସୂତାଖିଅଟିଏ ପରି ଦେଖାଯାଆନ୍ତି । ସ୍ଥାନେ ସ୍ଥାନେ ପର୍ବତମାନଙ୍କର ଆକୃତି ମନୋମୁଗ୍ଧକର । ଶ୍ରୀନଗର (୫୭୯ ମିଟର ଉଚ୍ଚ)ଠାରୁ ସୁଦୃଶ୍ୟ ପାଇନ୍ ଗଛ ଚାରିଆଡ଼େ ଦେଖାଯାଏ । କେତେକ ପର୍ବତମାଳା ଶ୍ୱେତ ପଥରରେ ଗଠିତ ବୋଲି ମନେହୁଏ । ବରଫ ଆବୃତ ପର୍ବତର ମଝିରେ ମଝିରେ କଳା ଅଂଶ ଦୃଷ୍ଟିଗୋଚର ହୁଏ । ବାଳକୃଷ୍ଣଙ୍କ ଲହୁଣୀଖିଆ ମୁଖମଣ୍ଡଳ ମାନସ ପଟରେ ଭାସିଯାଏ । ସତେ ଯେପରି ତାଙ୍କର ଲହୁଣୀ ଆବୃତ ମୁଖମଣ୍ଡଳ ସ୍ଥାନେ ସ୍ଥାନେ ଅନାବୃତ ।

ବଦ୍ରିନାଥର ନିମ୍ନଭାଗରେ ପଞ୍ଚ ପ୍ରୟାଗର ସୃଷ୍ଟି । ବଦ୍ରିନାଥଠାରୁ ୩୮ କି.ମି. ଦୂରରେ ବିଷ୍ଣୁ ପ୍ରୟାଗରେ ଅଳକାନନ୍ଦା ସହିତ ଧଉଳି ଗଙ୍ଗାଙ୍କ ସଂଗମ । ୧୦୬ କି.ମି. ଦୂରରେ ନନ୍ଦ ପ୍ରୟାଗରେ ଅଳକାନନ୍ଦ ସହିତ କେଦାରନାଥରୁ ପ୍ରବାହିତ ମନ୍ଦାକିନୀଙ୍କର ସଂଗମ । ୧୨୮ କି.ମି. ଦୂରରେ କର୍ଣ୍ଣ ପ୍ରୟାଗଠାରେ ଅଳକାନନ୍ଦଙ୍କ ସହିତ ପିଣ୍ଡାର ନଦୀର ସଂଗମ । ୧୪୯ କି.ମି. ଦୂରରେ ରୁଦ୍ର ପ୍ରୟାଗରେ ଅଳକାନନ୍ଦାଙ୍କ ସହିତ ମନ୍ଦାକିନୀଙ୍କର ପୁଣି ସଂଗମ । ଶେଷରେ ୨୨୮ କି.ମି. ଦୂରରେ ଦେବପ୍ରୟାଗଠାରେ ଅଳକାନନ୍ଦଙ୍କ ସହିତ ଗଙ୍ଗୋତ୍ରୀରୁ ପ୍ରବାହିତ ଭାଗୀରଥିଙ୍କର ସଂଗମ । ଗାଙ୍ଗେୟ ପରିବାରର ସମସ୍ତ ନଦୀ ଧୌଳିଗଙ୍ଗା ବ୍ୟତୀତ ସ୍ୱଚ୍ଛନୀରା । କେବଳ ଧୌଳିଗଙ୍ଗାର ପାଣି ଗୋଳିଆ । ତେଣୁ ଏହି ନଦୀର ଅଳକାନନ୍ଦାଙ୍କ ସହିତ ମିଳନସ୍ଥଳ, ବିଷ୍ଣୁ ପ୍ରୟାଗଠାରୁ ଅଳକାନନ୍ଦା ଗୋଳିଆ ହୋଇ ପ୍ରବାହିତ । ଦେବ ପ୍ରୟାଗଠାରେ ଭାଗୀରଥି ସହିତ ମିଳନ ପରେ ଅଳକାନନ୍ଦା ଗଙ୍ଗା ନାମରେ ନାମିତ ହୁଅନ୍ତି । ହିମାଳୟ କୋଳରେ ଗାଙ୍ଗେୟ ପରିବାରର ଲୀଳା ଅତ୍ୟନ୍ତ ମନୋରମ ।

ବଦ୍ରିନାଥଙ୍କ ମୂର୍ତ୍ତିର ଗୋଟିଏ ତରଫରେ କୁବେର ଓ ନାରଦ ଏବଂ ଅନ୍ୟ ତରଫରେ ଉଦ୍ଧବ, ଚତୁର୍ଭୁଜ ଓ ନରନାରାୟଣ ଏକ ଆସ୍ଥାନାରେ ବସି ପୂଜା ପାଆନ୍ତି । ଯେଉଁ ମୂର୍ତ୍ତି ବର୍ତ୍ତମାନ ବଦ୍ରିନାଥ ବୋଲି ପୂଜା ପାଉଛନ୍ତି ସେ ମୂର୍ତ୍ତି ପଦ୍ମାସନରେ ଆସୀନ । ପଦ୍ମାସନ ବିଷ୍ଣୁଙ୍କର ପାରମ୍ପରିକ ଆସନ ନୁହେଁ । ବୌଦ୍ଧ ଧର୍ମର ଅଭ୍ୟୁଦୟବେଳେ ବୌଦ୍ଧମାନେ ମୂର୍ତ୍ତିଟିକୁ ଅପସାରଣ କରି, ନାରଦ କୁଣ୍ଡରେ ନିକ୍ଷେପ କଲେ ଓ ତା' ସ୍ଥାନରେ ବୁଦ୍ଧ ମୂର୍ତ୍ତି ପ୍ରତିଷ୍ଠା କଲେ । ହିନ୍ଦୁଧର୍ମର ପୁନରୁତ୍‌ଥାନରେ ହିନ୍ଦୁମାନେ ବୁଦ୍ଧ ମୂର୍ତ୍ତିଟିକୁ ଅପସାରଣ କରି ସେଇପରି ନାରଦ କୁଣ୍ଡରେ ବିସର୍ଜନ କଲେ । ମୂଳ ମୂର୍ତ୍ତି ପାଇବାରେ ନିରାଶ ହୋଇ ଶାଳଗ୍ରାମ ପ୍ରତିଷ୍ଠା କରି ପୂଜାକଲେ । ଶଙ୍କରାଚାର୍ଯ୍ୟ ଏଥିରେ ସନ୍ତୁଷ୍ଟ ନ ହୋଇ ନାରଦ କୁଣ୍ଡରେ ବାରମ୍ବାର ବୁଡ଼ି ପୂର୍ବ ମୂର୍ତ୍ତି ଖୋଜି ପ୍ରତିଷ୍ଠ କରିବାକୁ ଚାହିଁଲେ । ସହସ୍ରାଧିକ ବର୍ଷ ତଳେ ଅପସାରିତ ମୂଳ ମୂର୍ତ୍ତିଟିକୁ ସେ ପାଇଲେ ନାହିଁ । ଗୋଟିଏ ଭଗ୍ନ ପଦ୍ମାସନ ମୂର୍ତ୍ତି ପାଇଲେ । ଯାହାକୁ ସେ ପ୍ରତିଷ୍ଠା କରିବାକୁ ଅନିଚ୍ଛୁକ ଥିଲେ । କିନ୍ତୁ ଶବ୍ଦାଦେଶ ପାଇଲାପରେ ସେହି ମୂର୍ତ୍ତିଟିକୁ ବିଷ୍ଣୁ ମୂର୍ତ୍ତି ରୂପେ ପ୍ରତିଷ୍ଠା କରି ପୂଜା ଅର୍ଚ୍ଚନା କଲେ । କ୍ଷେତ୍ର ଶୁଦ୍ଧତା ରକ୍ଷା ପାଇଁ, ସେ ସେଠାରେ ନିଜର ସାଥୀ ନମ୍ବୁଦ୍ରୀ ବ୍ରାହ୍ମଣମାନଙ୍କୁ ବଦ୍ରିନାଥଙ୍କର ପୂଜକ ଭାବେ ନିଯୁକ୍ତ କଲେ । ପୂଜକ ବିବାହ କରନ୍ତି ନାହିଁ । ବିବାହ କଲେ କାର୍ଯ୍ୟଚ୍ୟୁତ ହୁଅନ୍ତି ।

ବର୍ତ୍ତମାନର ମନ୍ଦିର ୧୫୦୦ ଶତାବ୍ଦୀରେ ଗଢ଼ୱାଲ୍‌ର ରାଜାଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ବର୍ଷର ଛଅମାସ ମନ୍ଦିର ବନ୍ଦ ରହିବାବେଳେ ଚତୁର୍ଭୁଜ ନାରାୟଣ ମୂର୍ତ୍ତିଟି ଜୋଷୀମଠକୁ ସ୍ଥାନାନ୍ତରିତ ହୋଇ ପୂଜାପାଆନ୍ତି । ଅନ୍ୟ ମୂର୍ତ୍ତିମାନେ ମନ୍ଦିରରେ ଚାବି ପଡ଼ି ବନ୍ଦ ରହନ୍ତି । ଗୋଟିଏ ମାତ୍ର ଦୀପ ମନ୍ଦିର ଭିତରେ ଜଳାଇ ଦିଆଯାଏ । ଏହା ଦିନରାତି ୨୪ ଘଣ୍ଟା ଜଳି ୬ ମାସ ପରେ ମନ୍ଦିର ଖୋଲିଲାବେଳେ ଦୀପଟି ମଧ୍ୟ ପ୍ରଜ୍ୱଳିତ ରହିଥାଏ । ଏହି ଅଲୌକିକ ଦୃଶ୍ୟ ଦେଖିବାକୁ ମନ୍ଦିର ଖୋଲିଲାବେଳେ ବହୁତ ଭିଡ଼ ହୁଏ ।

ନଦୀର ଅପରପାର୍ଶ୍ୱରେ ମନ୍ଦିର ପାହାଚ ତଳେ ଗୋଟିଏ ଉଷ୍ଣ ପ୍ରସ୍ରବଣ ବା ତପ୍ତପାଣି ଅଛି । ଏହାକୁ ଅଗ୍ନିତୀର୍ଥ କୁହାଯାଏ । ଏଥିରେ ସ୍ନାନ କରି ବଦ୍ରିନାଥଙ୍କୁ ଦର୍ଶନ କରିବାକୁ ହୁଏ । ଅଗ୍ନିତୀର୍ଥ ଓ ନଦୀ ମଧ୍ୟରେ ନାରଦ କୁଣ୍ଡ ।

ବଦ୍ରିନାଥ ପର୍ଯ୍ୟନ୍ତ ବସ୍‌ଯାଏ । କେଦାରନାଥକୁ ଯିବାକୁ ୧୪ କି.ମି. ଚାଲିବାକୁ ପଡ଼େ । ଗଙ୍ଗୋତ୍ରୀ ପର୍ଯ୍ୟନ୍ତ ବସ୍‌ଯାଏ । ଯମୁନୋତ୍ରୀକୁ ଯିବାକୁ ୧୩ କି.ମି. ଚାଲିବାକୁ ପଡ଼େ । ତୀର୍ଥଯାତ୍ରୀମାନେ ପାଦରେ ପିଠୁ (ଜଣେ ବାହକ ପିଠିରେ ଏକ ବୋଝ ଉପରେ ବସାଇ ନିଅନ୍ତି)ରେ ଖଚରରେ ଓ ଡାଲା (ଚାରିଜଣ ଏକ ପାଲିଙ୍କିରେ

ବୋହିନିଅନ୍ତି)ରେ ଯାଆନ୍ତି । ଦକ୍ଷିଣ ଭାରତ, ବଙ୍ଗଳା, ଗୁଜୁରାଟ, ମହାରାଷ୍ଟ୍ର ହିନ୍ଦୀ ଭାଷୀ ରାଜ୍ୟମାନଙ୍କରୁ ବହୁସଂଖ୍ୟକ ଯାତ୍ରୀ ଏସବୁ ସ୍ଥାନରେ ଦେଖିବାକୁ ମିଳନ୍ତି । କିନ୍ତୁ ଓଡ଼ିଆ ଯାତ୍ରୀ କ୍ୱଚିତ୍ ଦେଖିବାକୁ ମିଳନ୍ତି । କେଦାରନାଥ, ଯମୁନୋତ୍ରୀ ଯାତ୍ରୀ, ପାଦରେ ଚାଲିକରି ସାଙ୍ଗ କଲେ, ତୀର୍ଥ ଯାତ୍ରୀଙ୍କର ଆନ୍ତରିକତାର ସାଧୁବାଦ କରି, ସନ୍ନ୍ୟାସୀମାନଙ୍କଠାରୁ ଶୁଣିବେ, "ଅହୋଭାଗ୍ୟ" ।

ଲେଖକଙ୍କର ଯମଜପୁତ୍ର ସାଇରାମ, ସାଇକୃଷ୍ଣ ଅସ୍ଥିର ସ୍ୱଭାବର ଥିଲେ । ତେଣୁ ଲେଖକ ଓ ତା'ର ପତ୍ନୀ କେଦାରନାଥକୁ ୧୪ କି.ମି. ପାଦରେ ଚାଲିକରି ଯିବା ପାଇଁ ମାନସିକ କଲେ । ଲେଖକଙ୍କ ପତ୍ନୀ ୨ କି.ମି. ଯିବା ପରେ ଏତେ ଅବଶ ହୋଇପଡ଼ିଲେ ଯେ, ଆଉ ପାଦ ଆଗକୁ ବଢ଼ାଇବା ସମ୍ଭବ ହେଲାନାହିଁ । ତେଣୁ ସେ ଘୋଡ଼ାରେ ଚଢ଼ି ଅଗ୍ରସର ହେଲେ । ଲେଖକର ବୟସ ସେତେବେଳେ ୫୮ ବର୍ଷ ଓ ହୈମବତୀଙ୍କ ବୟସ ୪୮ ବର୍ଷ । ଘୋଡ଼ା ଆଗରେ ଚାଲିଗଲା । ଲେଖକଙ୍କ ସାଙ୍ଗରେ ଯେଉଁମାନେ ଥିଲେ, ସେମାନେ ମଧ୍ୟ ଆଗେଇ ଚାଲିଲେ । ଲେଖକ ଏକୁଟିଆ ଆଗେଇଲା । ଲେଖକକୁ ବିଶେଷ କଷ୍ଟ ହେଉଥାଏ । ହୃତ୍‌ପିଣ୍ଡ ପଡୁଥାଏ, ଉଠୁଥାଏ । ହିମାଳୟର ବିଶାଳ ବକ୍ଷରେ ଲେଖକ ଏକାକୀ ଜୀବନକୁ ପାଣି ଛଡ଼ାଇ ଅଗ୍ରସର ହେବାକୁ ଲାଗିଲା । ଲେଖକ ମାନସିକ ପ୍ରସ୍ତୁତ କରିସାରିଥିଲା ଯେ, ସେ ପଡ଼ିଯାଇ, ତା'ର ଜୀବନ ଯିବ । କେଦାରନାଥରେ ପହଞ୍ଚିଲାବେଳକୁ ଗୋଧୂଳିର ବେଳ । ସ୍ୱାମୀ ଫେରିବେ ନାହିଁ ଆଶଙ୍କା କରି ବିକଳ ହୋଇ ହୈମବତୀ ଅଶ୍ରୁବର୍ଷଣ କରୁଥାନ୍ତି । ବେଳକୁ ମନ୍ଦିର ବନ୍ଦ ହୋଇଯାଇଥିଲା । ତେଣୁ ଠାକୁରଙ୍କୁ ବାହାରୁ ପ୍ରଣିପାତ କରି ଉଭୟେ ଘୋଡ଼ାରେ ଫେରିଲୁ ।

ଏ ଅଞ୍ଚଳର ପଶୁ,ପକ୍ଷୀଙ୍କ ଦେହ ଘନ ଲୋମାବୃତ । ବରଫପାତ, ଥଣ୍ଡା ଓ ଶୀତରୁ ରକ୍ଷା ପାଇବା ପାଇଁ ପ୍ରକୃତି ତାଙ୍କୁ ଏପରି କରିଛି । ଯମୁନୋତ୍ରୀଠାରେ ଦୀର୍ଘ କାଉଙ୍କୁ ଦେଖିଲେ ଯେ କେହି ବିସ୍ମୟାଭିଭୂତ ହେବେ । ଉତ୍ତରାଖଣ୍ଡର ଗାଈ, ଛେଳି, ମେଣ୍ଢା, କୁକୁର ଆପଣଙ୍କର କୌତୁହଳ ଜାଗ୍ରତ କରିବେ ।

ବର୍ଷର ମଇ-ଜୁନ୍‌ରେ ଆପଣ ଧାନ, ଗହମ, ଆଳୁ, ବନ୍ଧାକୋବି, ବିଲାତି ବାଇଗଣ ଫସଲ ଦେଖିବେ । ସେଓ ଗଛର ବଗିଚା ଅନେକ ଜାଗାରେ ଦେଖିବେ । ଗାଁ ପାଖ ପାହାଡ଼ କାନ୍ଥରେ ପାହାଚ ପାହାଚ ପଥର ହିଡ଼ ଘେରା ଚାଷଜମିର କିଆରି । ଉପରେ ନୀଳ ଆକାଶ । ତଳେ ଦୁଇ ପାହାଡ଼ ସନ୍ଧିରେ ପଥର ପଥରରେ ନୁପୂର ବଜାଇ ଶୁଭ୍ର ଫେଣର ମୁକୁଟ ପିନ୍ଧି ବହିଯାଇଥିବା ପାହାଡ଼ୀ ନଈର ମୃଦୁ କଳନାଦ । ପାହାଡ଼ ଉପରେ ଚାଷଜମି ବହୁତ କମ୍ । ପାହାଡ଼ କାନ୍ଥରେ ପାହାଡ଼ ତଳେ ନଈ ଓ

ଝରଣା କୂଳେ ଅଳ୍ପ ଜମି । ଚାଷ ଛଡ଼ା ଆଉ ଗୋଟିଏ ଧନ୍ଦା ହେଲେ ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ । ଏଠିକାର ବଣ ହେଲା ଚୀଡ଼, ଦେଓଦାରୁ ପ୍ରଭୃତି ଥଣ୍ଡା ଜଳବାୟୁର ଗଛ । ମାତ୍ର ସବୁଠୁ ମହତ୍ୱପୂର୍ଣ୍ଣ ଧନ୍ଦା ହେଲା ସେନାବାହିନୀରେ ଚାକିରି । ଗଡ଼ୱାଲୀ ସୈନ୍ୟ ବୀରତ୍ୱ ପାଇଁ ବିଖ୍ୟାତ । ଏଇଟାକୁ ଗଡ଼ୱାଲ ଅଞ୍ଚଳ କୁହାଯାଏ । ଲୋକେ ଗଡ଼ୱାଲୀ ।

ଗାଁ ସବୁ ସାଧାରଣତଃ ପାହାଡ଼ କାନ୍ଥରେ । ଦୁଇ ପାହାଡ଼ ମଝି ଉପତ୍ୟକାରେ ଅଣଓସାରିଆ ପାହାଡ଼ୀ ନଈ ବହିଯାଉଥିବ । ଗାଁ ତା'ର କିଛିଟା ଉପରେ । ଘରର ସବୁ କାନ୍ଥ ପଥରରେ । ପ୍ରାୟ ମାଟି ଯୋଡ଼େଇ । ଛାତ ସିଲଟ ପଥରର ଟାଇଲି ଭଳି ଚଟକା ଚଟକା ଖଣ୍ଡର । ପାହାଚ ପରି ଥାକକୁ ଥାକ ଘର । ଜଣଙ୍କର ଛାତ ଉପରେ ଆଉ ଜଣଙ୍କର ଦାଣ୍ଡ ଦୁଆର । ଶୀତ ଯୋଗୁଁ ଘରେ ଝରକା ପ୍ରାୟ ନଥାଏ ।

ହିମାଳୟ ପର୍ବତମାଳା ବିନ୍ଧ୍ୟ ପର୍ବତ ଓ ଦାକ୍ଷିଣାତ୍ୟ ଉପତ୍ୟକା ତୁଳନାରେ ଏକାବେଳକେ ଶିଶୁ । ଏକ କାଳରେ ସେଠି ସମୁଦ୍ର ଥିଲା । ପୃଥିବୀର ନାନାପ୍ରକାର ଚାପ ସୃଷ୍ଟି ହୋଇ କ୍ରମେ ସେ ସମୁଦ୍ର ଭିତରୁ ମୁଣ୍ଡଟେକିଛି । ସେଥିପାଇଁ ହିମାଳୟ ବିନ୍ଧ୍ୟ ଆଦି ପର୍ବତ ପରି ଟାଣୁଆ ଆଗ୍ନେୟ ପଥରରେ ଗଢ଼ା ନୁହେଁ । ମାଟି, ଗୋଡ଼ି ଓ ବାଲି ଗରଡ଼ା ଭଳି ଟିକେ ଚିକ୍‌କଣ ହୋଇ ଆସିଥିବା ସାନବଡ଼ ପଥର ମୁଣ୍ଡାରେ ଗଢ଼ା । ବର୍ଷାହେଲେ ସହଜରେ ଧୋଇଯାଏ ଓ ଭୁଶୁଡ଼ି ପଡ଼େ । ଯେଉଁ ପର୍ବତନ ଘନ ବୃକ୍ଷରାଜିରେ ଆଚ୍ଛାଦିତ ଥିଲା ତା'ର ଦୀନହୀନ ଅବସ୍ଥା ଦେଖିଲେ ଦୁଃଖ ଲାଗେ । ହିମାଳୟର ଶୋକାକୁଳ ହୃଦୟକୁ ବିଦୀର୍ଣ୍ଣ କରିବ ।

# ଓଡ଼ିଶାର ବୈଭବ ଫେରିବ କିପରି ?

ନାରାୟଣ ହଜାରୀ

ଏପ୍ରିଲ୍ ୨୨ ତାରିଖ । ମୁଁ ଟ୍ରେନ୍‌ରେ ଦିଲ୍ଲୀ ଯାଉଥିଲି । ଜଣେ ଶିଖ୍ କିଛି ଦୂରରେ ବସିଥିଲେ । ପୃଥୁଳ ଶରୀର । ଖର୍ବକାୟ । ବୟସ ସତଷଠି । ମୁହଁରେ ଅନୁଭବ ଫୁଟିଉଠୁଥାଏ । ଆଖିରେ କରୁଣା । ଯାଇ ପାଖରେ ବସିଲି । ମନରେ ଜିଜ୍ଞାସା । ହିନ୍ଦୀରେ ପଚାରିଲି । ଓଡ଼ିଆରେ ଉତ୍ତର ଦେଲେ । ମତେ ଓଡ଼ିଆରେ କଥାବାର୍ତ୍ତା କରିବାର ସେ ଲକ୍ଷ୍ୟ କରିଥିଲେ । ଜୀବନକାହାଣୀ କହିବା ଆରମ୍ଭ କଲେ । ବିଦଗ୍ଧ କଥାକାର ।

"୧୯୬୧ ମସିହା । ମୁଁ ମାୟାଁମାର (ବର୍ମା)ରେ ଥାଏ । ମୋର ବୟସ ୨୬ ହୋଇଥାଏ । ହଠାତ୍ ପିତାଙ୍କର ଦେହାନ୍ତ ହେଲା । ସୈନ୍ୟବିଭାଗ ଦେଶର ଶାସନକୁ ହାତକୁ ନେଲା । ଭାରତୀୟମାନଙ୍କୁ ଦେଶରୁ ବହିଷ୍କାର କରାଗଲା । ଅଗତ୍ୟା ମା' ଓ ମୁଁ ଭୁବନେଶ୍ୱର ଚାଲିଆସିଲୁ ।

ମୋର ଦୁଇଭଉଣୀ ଭୁବନେଶ୍ୱରରେ ଥାଆନ୍ତି । ବଡ଼ଭଉଣୀ ବର୍ମା ଜେନେରାଲ ଷ୍ଟୋରର ମାଲିକ । ମୋର ପଢ଼ା କମ୍ । ବଡ଼ଭଉଣୀ ୭୦୦୦ ଟଙ୍କାର ଗ୍ରସରିଜ୍, ଷ୍ଟେସନାରୀ, ଫାଷ୍ଟ୍‌ଫୁଡ୍ ଦେଇ ପାରାଦ୍ୱୀପ ପଠାଇଲେ ବ୍ୟବସାୟ କରିବାକୁ । ଯୁଗୋସ୍ଲୋଭିଆର ୮୦ ଜଣ ଇଞ୍ଜିନିୟର୍ ପାରାଦ୍ୱୀପ ବନ୍ଦରରେ କାମ କରୁଥାନ୍ତି । ସେମାନଙ୍କ ପାଇଁ ଉପରୋକ୍ତ ଜିନିଷ ନେଇକରି ଗଲି । କାରଣ ସେତେବେଳେ ପାରାଦ୍ୱୀପରେ ଭଲ ଦୋକାନବଜାର ନଥାଏ । ଭୁବନେଶ୍ୱରରୁ ସବୁ ଜିନିଷ ଯୋଗାଯାଉଥାଏ । ସେତେବେଳେ ଭୁବନେଶ୍ୱର-ପାରାଦ୍ୱୀପ ରାସ୍ତା ବିଶେଷ ଖରାପ ଥାଏ । ଜିନିଷ ସବୁ ତାଙ୍କୁ ବିକ୍ରି କଲି । ହୋଟେଲରେ ଖାଇଲି । ବାରଣ୍ଡାରେ ଶୋଇଲି । ମୋର ବାଣିଜ୍ୟ ବିପଣନ ବଢ଼ିଚାଲିଲା । କ୍ରମେ ଅଧିକ ଜିନିଷ ଆଣିଲି । ମୋର ଗ୍ରାହକମାନଙ୍କ ସଂଖ୍ୟା ବଢ଼ିବାରେ ଲାଗିଲା । ତିନି ବର୍ଷ ପରେ ବିଦେଶୀମାନେ ପାରାଦ୍ୱୀପ ଛାଡ଼ିଲେ । ସେତେବେଳକୁ ମୋର ଗ୍ରାହକମାନଙ୍କ ସଂଖ୍ୟା ଯଥେଷ୍ଟ

ବଢ଼ିଗଲାଣି । ଭୁବନେଶ୍ୱର ଭଉଣୀଘର ଦୋକାନରୁ ଜିନିଷ ଆଣିବା ବନ୍ଦ ହେଲାଣି । ମୋର ନିଜର ବ୍ୟବସାୟ ଆରମ୍ଭ ହେଲାଣି । ବ୍ୟବସାୟ ସହିତ, ଜାହାଜକୁ ଆଳୁ, ପିଆଜ ବସ୍ତା ପିଠିରେ ବୋହି, କିଛି ରୋଜଗାର କରି, ଆୟରେ ମିଶାଏ । ଆଜି ପର୍ଯ୍ୟନ୍ତ ସମୟେ ସମୟେ ମୋ ପୁଅମାନଙ୍କୁ ଏକଥା କହେ । ସେତେବେଳେ ମୋର ଛାତି ଫୁଲିଉଠେ ସ୍ୱାଭିମାନରେ । ନିଜର ଜୀବନ କାହାଣୀ ବର୍ଣ୍ଣନା କଲାବେଳେ ତାଙ୍କ ଆଖି ଜକେଇ ଯାଇଥାଏ ।

ଆଜି ସେ ଜଣେ ପ୍ରତିଷ୍ଠିତ ବ୍ୟବସାୟୀ । ଆର୍ଥିକ ଦିଗରୁ ସ୍ୱଚ୍ଛଳ । ରାଜଧାନୀ ଏକ୍ସପ୍ରେସ୍‌ରେ ଭ୍ରମଣ କରୁଥାନ୍ତି । ଦିଲ୍ଲୀର ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସୋସାଲ୍ ସାଇନ୍ସ ଦ୍ୱାରା ନିମନ୍ତ୍ରିତ ହୋଇ ମୁଁ ଏକ ଆଲୋଚନା ଚକ୍ରକୁ ଯାଉଥାଏ ।

ଶିଖ୍ ବ୍ୟବସାୟୀଙ୍କୁ ପଚାରିଲି । ଓଡ଼ିଆମାନଙ୍କ ଦୁର୍ବଳତା କ'ଣ ? ସେମାନେ ଆର୍ଥିକ ଦିଗରୁ କାହିଁକି ଦରିଦ୍ର ? ଚାଳିଶ ବର୍ଷର ଅଭିଜ୍ଞତାକୁ ପାଥେୟ କରି କହିଲେ, "ଓଡ଼ିଆମାନଙ୍କର ଦୁଇଟି ଦୁର୍ବଳତା ରହିଛି । ପ୍ରଥମଟି ହେଲା, ସେମାନେ ଅଳ୍ପରେ ସନ୍ତୁଷ୍ଟ । ଅଧିକ ପରିଶ୍ରମକରି, ରୋଜଗାର ବଢ଼ାଇ, ଭଲ ଘରଟିଏ, ଗାଡ଼ିଟିଏ କରିବି, ଏ ଭାବ ନାହିଁ । ଦ୍ୱିତୀୟରେ ରିସ୍କ୍ ନେବା ପାଇଁ କୁଣ୍ଠାବୋଧ । ରିସ୍କ୍ ନେବା କଥା ଉଠିଲେ, ହିସାବ କିତାବରେ ବହୁତ କସରତ୍ ।" ବେଣ୍ଡି ପଡ଼ିଥିବା ଦୁଇ ପାପୁଲିକୁ ମତେ ଦେଖାଇ କହିଲେ, "ଦେଖନ୍ତୁ ଖାଲିହାତରେ ଆସିଥିଲି । ଏବେ ମୁଁ କୋଉଠି ? ତାଙ୍କର କବାଟ ପରି ଛାତି ତୃପ୍ତିରେ କୁଣ୍ଢେମୋଟ । ମୋର ଆଖିରେ ଅନୁରାଗ, ବିସ୍ମୟ ଓ ଲୁହ ।

ଓଡ଼ିଶାର କର୍ମନିଯୁକ୍ତି ବିହୀନ ଶିକ୍ଷିତ ଅର୍ଦ୍ଧଶିକ୍ଷିତ ଯୁବସମାଜ ନିରାଶ, ହତାଶ ଓ କର୍ମକୁଣ୍ଠ । କଠିନ ଦୈହିକ ପରିଶ୍ରମ ବିମୁଖ । ଜମିବାଡ଼ିରେ ଶାରୀରିକ ଶ୍ରମକୁ ଘୃଣା । ଅବଶ୍ୟ ପାଞ୍ଚସାତବର୍ଷ ଚାକିରୀକୁ ଅପେକ୍ଷା କରି ବିଫଳ ହେଲାପରେ କେତେକ ଟିଉସନ୍, ଇନ୍ସୁରାନ୍ସ, ଦୋକାନ ଆଦି କରି କିଛି ରୋଜଗାର କରୁଛନ୍ତି । ଗାଁଗଣ୍ଡାରେ ରାଜମିସ୍ତ୍ରୀ, ବଢ଼େଇ ଧନ୍ଦାର ଚାହିଦା ରହିଛି । ସହରରେ ଡ୍ରାଇଭର, ମଟର ମେକାନିକ୍ ଧନ୍ଦାର ଚାହିଦା ରହିଛି । କେତେକ ଅଗତ୍ୟା ସେ ଧନ୍ଦା ଆଦରୁଛନ୍ତି । ଅଧିକାଂଶଙ୍କର ସେ ଧନ୍ଦା ପ୍ରତି ଅନାଗ୍ରହ ରହିଛି । ଗାଁଗଣ୍ଡାରେ ମଦ ବିକ୍ରି କରିବେ, ଗାଁ ପୋଖରୀରୁ ରାତିରେ ମାଛ ଚୋରି କରି ବିକ୍ରି କରିବେ, ରାଜନେତାଙ୍କ ପଛରେ ବୁଲି ଭାତିଆ ପାଇବେ, କଣ୍ଟ୍ରାକ୍ଟରଙ୍କୁ ଧମକାଇ କମିଶନି ନେବେ, ପୂଜାପାର୍ବଣରେ ଚାନ୍ଦା ଆଦାୟ କରିବେ । ଏହା ରୋଜଗାରର ପନ୍ଥା । ଇଚ୍ଛାଶକ୍ତି, ଦୃଢ଼ ସଂକଳ୍ପ, କଠିନ ପରିଶ୍ରମ, ସମୟାନୁବର୍ତ୍ତିତା, ସ୍ୱାଭିମାନ ଦରକାର ।

ଶାରିରୀକ ଶ୍ରମ ପ୍ରତି ସମ୍ମାନ ରହିବା ଦରକାର । ପିତାମାତାଙ୍କ ରୋଜଗାର ଉପରେ ନିର୍ଭରଶୀଳ ହେବିନାହିଁ, ପରାଙ୍ଗପୁଷ୍ଟ ହେବିନାହିଁ । ନିଜେ ଶ୍ରମ କରି ବଞ୍ଚିବି, ନିଜ ଶିଙ୍ଗରେ ମାଟି ତାଡ଼ିବି - ଏ ମାନସିକତାର ପ୍ରତୀକ୍ଷାରେ ଓଡ଼ିଶା ରହିଛି ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଜାପାନ, ଜର୍ମାନୀ ଭଗ୍ନସ୍ତୁପର ପାଉଁଶରୁ ଉଠି ଠିଆହେଲେ । ହତାଶ, ନିଷନ୍ଦ, ନିର୍ବାକ, ସ୍ଥବିର, ଭୟାଳୁ, ଆର୍ତ୍ତ ହୋଇରହିଲେ ନାହିଁ । ସଂକଳ୍ପ, ଶ୍ରମ ବଳରେ ବିଦେଶରୁ କଞ୍ଚାମାଲ ସଂଗ୍ରହ କରି କୃଷି, ଶିଳ୍ପ, ବିଜ୍ଞାନ, ପ୍ରଯୁକ୍ତିବିଦ୍ୟା, ବ୍ୟବସାୟ, ବାଣିଜ୍ୟ, ସ୍ୱାଭିମାନ, ବୈଭବର ଅଗ୍ରଗଣ୍ୟ ଦେଶ ହେଲେ ।

ଓଡ଼ିଶା ଦାରିଦ୍ର୍ୟ, ବେକାରୀ, ଅଜ୍ଞତା, ପୁଷ୍ଟିହୀନତା, ଭଗ୍ନସ୍ୱାସ୍ଥ୍ୟ, ଆତ୍ମବିଶ୍ୱାସହୀନତାରେ ସନ୍ତୁଳିତ । ଷଡ୍ରୁଛି । ଓଡ଼ିଶାକୁ ଉଠାଇବାକୁ କେତେକ ଧଳାହାତୀ ପାରିଷଦମାନେ ଆଗ୍ରହୀ ନୁହଁନ୍ତି । ଦୁର୍ନୀତି ସେମାନଙ୍କର ଶିରାପ୍ରଶିରାରେ ବ୍ୟାପିଯାଇଛି । କେତେକ ରାଜନେତା ତାଙ୍କ ଉପରେ ଅଙ୍କୁଶ ଲଗାଇବାକୁ ଅକ୍ଷମ । କାରଣ, ସେମାନେ ଭୋଗବିଳାସର ଦାସ । ଭ୍ରଷ୍ଟାଚାରୀ ଓ ଦୁର୍ନୀତିଗ୍ରସ୍ତ । ରାଜନେତାମାନେ ଶୁଦ୍ଧ, ସ୍ୱଚ୍ଛ ଓ ଲୋକସେବୀ ହେବା ଦେଶବାସୀ ଚାହାନ୍ତି । ସେମାନଙ୍କ ମଧ୍ୟରେ ସ୍ଥାଣୁତ୍ୱ, ସ୍ଥିବରତା, ଦୃଢ଼ ନିଷତ୍ତି ନେବାର ଦୌର୍ବଲ୍ୟ ରହିଛି । ଶାସକମାନେ ଲୋକମାରଣ ନୀତି ଓ ରଣକୌଶଳ ପରିହାର କରନ୍ତୁ । ପୁଞ୍ଜିପତି, ଶିଳ୍ପପତି, କର୍ପୋରେଟରମାନେ ରାଜନେତା ଓ ପ୍ରଶାସକଙ୍କୁ ଉତ୍କୋଚ ଦେଇ, କାବୁ କରି, ସମାଜକୁ ଶୋଷଣ କରିବାରୁ କ୍ଷାନ୍ତ ହୁଅନ୍ତୁ ।

ଖାଲି ରାଜନେତା, ପ୍ରଶାସକ ଓ କର୍ପୋରେଟରଙ୍କ ତ୍ରୁଟି ଯୋଗୁଁ ଦେଶ ଭୁଶୁଡ଼ି ପଡୁନାହିଁ । ସର୍ବାଗ୍ରେ ପିତାମାତା, ଶିକ୍ଷକ (ପ୍ରାଥମିକ ସ୍କୁଲଠାରୁ ବିଶ୍ୱବିଦ୍ୟାଳୟ ଯାଏଁ) ପ୍ରାଜ୍ଞ (ଏଲିଟ୍) ମୂଲ୍ୟବୋଧର ଅବକ୍ଷୟ ପାଇଁ ଦାୟୀ । ଦେଶ ବହୁଭାବରେ ଅଗ୍ରଗତି କଲାଣି । ଭୋକଉପାସ କମିଲାଣି । ଆଦିବାସୀ, ଦଳିତ, ସର୍ବହରା ଆହୁରି ବହୁପଥ ଯିବାକୁ ଅଛି । ଅନ୍ୟକାହାକୁ ଦୋଷ ଦେବା ପୂର୍ବରୁ, ଆମେ ଦେଶ ଓ ଦଶପାଇଁ କ'ଣ କରୁଛେ, ନିଜକୁ ସେ ପ୍ରଶ୍ନ ପଚାରିବାର ବେଳ ଆସି ପହଞ୍ଚିଛି । ଅନ୍ୟ ମୁଣ୍ଡରେ ଆଉ କେତେଦିନ ଅଠା ବୋଳିବା ? ଆମକୁ ନିସ୍ତାର ନାହିଁ । ରକ୍ତ ଓ ସ୍ୱେଦ ଦେବାକୁ ହେବ ।

କମ୍ କାମ କରି ଅଧିକ ପଇସା ନେବାର ଦୃଷ୍ଟିକୋଣ ବଦଳୁ । ସୁବିଧାବାଦର ମନୋଭାବ ବଦଳୁ । ଠକାମିକରି କେହି କେବେ ସମୃଦ୍ଧି ଆଣିନାହିଁ । ଶ୍ରମକାତର ସମାଜର ଭବିଷ୍ୟତ ନାହିଁ । ସ୍ୱାର୍ଥପରତା ଲୋଭ ଓ ଭୋଗର ସୀମାଙ୍କନ କରାଯାଉ ।

ଦେହସୁଖ କାମନା ଉପରେ ଲଗାମ ଲାଗୁ । ଦୁଃଖୀଦରିଦ୍ରଙ୍କୁ ରୋଜଗାର ଉପରେ ଆମର ଲୋଲୁପଦୃଷ୍ଟି ନ ପଡୁ । ଜୀବନଚର୍ଯ୍ୟାରେ ଅଙ୍ଗୀକାରବଦ୍ଧତା ରହୁ । ସମସ୍ତଙ୍କ ମଙ୍ଗଳରେ ଆମର ମଙ୍ଗଳ । ଭକ୍ତରାଜ ପ୍ରହ୍ଲାଦ ପ୍ରାର୍ଥନା କରୁଥିଲେ-

"ନତ୍ୱଚଂ କାମୟେ ରାଜ୍ୟଂ,
ନ ସ୍ୱର୍ଗଂ, ନା ପୁନର୍ଭବଂ,
କାମୟେ ଦୁଃଖତପ୍ତାନାଂ
ପ୍ରାଣିନାଂ ଆର୍ତ୍ତିନାଶନଂ ।"

ସେ ପ୍ରଭୁତ୍ୱ (କ୍ଷମତା), ସ୍ୱର୍ଗ ଓ ପୁନର୍ଜନ୍ମ ପାଇଁ ପ୍ରାର୍ଥନା କରୁନଥିଲେ । ଦୁଃଖକଷ୍ଟରେ ସନ୍ତୁଳିତ ପ୍ରାଣୀଙ୍କର ଆର୍ତ୍ତିନାଶନ ତାଙ୍କର ଧ୍ୟେୟ ଥିଲା । ଏ କଥା ଆମକୁ ଉଦ୍‌ବୁଦ୍ଧ କରିବ କି ?

ଓଡ଼ିଆମାନଙ୍କର ପୂର୍ବକଥା ମନେପଡୁ । ଓଡ଼ିଆଙ୍କ ବୀରତ୍ୱ, ଐଶ୍ୱର୍ଯ୍ୟ କଥା ମନେପଡୁ । ବାଲି, ଜାଭା, ସୁମାତ୍ରା, ବୋର୍ଣ୍ଣିଓରେ ସାମୁଦ୍ରିକ ନୌବାଣିଜ୍ୟ କଥା ମନେପଡୁ । ଜୀବନକୁ ପାଣିଛଡ଼େଇ ବିପଦସଂକୁଳ ସାମୁଦ୍ରିକ ଯାତ୍ରା ଓ ସାଧବମାନଙ୍କର ବାଣିଜ୍ୟ ବ୍ୟବସାୟର ଗୌରବଗାଥା ଆମକୁ ପ୍ରେରଣା ଦେଉ । ଓଡ଼ିଆମାନେ ଉଦ୍ୟୋଗୀ । ଇତିହାସ ତା'ର ସାକ୍ଷୀ । ଇତିହାସ ପ୍ରେରଣାର ଉତ୍ସ ହେଉ । ଓଡ଼ିଆମାନେ ଯେ ନିକମା ନୁହନ୍ତି, ସେମାନେ ଯେ ଉଦ୍‌ଯୋଗୀ, ଏକଥା ନିଜେ ବିଶ୍ୱାସ କରନ୍ତୁ ।

# ବୃନ୍ଦଗ୍ରାମରେ କିଶନ ପଟ୍ଟନାୟକ

ନାରାୟଣ ହଜାରୀ

ସ୍ୱର୍ଗତ କିଶନ ପଟ୍ଟନାୟକଙ୍କୁ ଅତି ନିବିଡ଼ ଭାବରେ ଜାଣିବାର ସୁଯୋଗ ମୁଁ ପାଇନାହିଁ ତେବେ ତାଙ୍କୁ ଅତି ପାଖରୁ ବହୁବର ଦେଖିଛି । ଥରେ ନର୍ମଦା ବଞ୍ଚାଅ ଆନ୍ଦୋଳନର ନେତ୍ରୀ ମେଧା ପାଟେକର ଓଡ଼ିଆ ଆସିଥାନ୍ତି । ଭୁବନେଶ୍ୱରରେ ସଭା ହେଉଥାଏ । ପ୍ରାୟ ସାତ ଶହ ଲୋକ ଉପସ୍ଥିତ ଥାଆନ୍ତି । କିଶନ ପଟ୍ଟନାୟକ ପ୍ରାରମ୍ଭିକ ସୂଚନା ଦେବାକୁ ଯାଇ ମୌଳିକ ଚିନ୍ତନ ଓ ବିଚାରର ଚମତ୍କାର ନିଷ୍କର୍ଷ ସହ ପରିବେଶ ସଂରକ୍ଷଣ ଓ ନିରବଚ୍ଛିନ୍ନ ବିକାଶ ସଂପର୍କରେ କହିଲେ ।

ସେହିପରି ଆଉ ଦିନକର ଏକ ସଭାର କଥା । ପ୍ରାୟ ଦୁଇଶହ ଲୋକ ଥା'ନ୍ତି । କିଶନ ବାବୁ ସବା ପଛ ଧାଡ଼ିରେ ବସିଥାନ୍ତି । ସେ ଜଣେ ନମ୍ର, ଧୀର, ଶାନ୍ତ ପ୍ରକୃତିର ବ୍ୟକ୍ତି ବୋଲି ମୋର ଧାରଣା ଥିଲା । ସେ ନିଜକୁ ଦେଖେଇ ହେବାରେ ବିଶ୍ୱାସୀ ନଥିଲେ । ମଳିମୁଣ୍ଡିଆ, ପଦଦଳିତ, ଅବହେଳିତ, ଶୋଷିତ, ଆଦିବାସୀ, ଦଳିତ, କୃଷକ, ଶ୍ରମିକ, ନାରୀମାନଙ୍କର ସମସ୍ୟା ତାଙ୍କ ଚେତନାରେ ବସା ବାନ୍ଧିରହିଥିଲା । ତାହା ହିଁ ତାଙ୍କ ଲେଖା ଓ ବକ୍ତବ୍ୟରେ ସ୍ୱତଃସ୍ଫୂର୍ତ୍ତ ଉକୁଟି ଉଠୁଥିଲା ।

ତାଙ୍କ ସମ୍ପାଦନାରେ ପ୍ରକାଶିତ ପ୍ରଗତିଶୀଳ ଓ ଜନଆନ୍ଦୋଳନର ବାହକ 'ବିକଳ୍ପ ବିଚାର'ର କେତେକ ପ୍ରବନ୍ଧ ମୁଁ ପଢ଼ିଛି । ତାଙ୍କର ପୁସ୍ତକ 'ଭାରତୀୟ ବୁଦ୍ଧିଜୀବୀର ସଙ୍କଟ ଓ ଅନ୍ୟାନ୍ୟ ପ୍ରବନ୍ଧ' ପାଠକରିଛି । ଅତ୍ୟନ୍ତ ଭାବଗର୍ଭକ ମୌଳିକ ଚିନ୍ତାରୁ ସେ ସବୁ ପ୍ରସୂତ ହେଉଥିଲା । ସେ ସବୁ ଥିଲା ଯେପରି ଶାଣିତ ଓ ସେହିପରି ଦରଦ ଭରା ।

ମୁଁ ତାଙ୍କ ଘରକୁ ତିନି ଚାରିଥର ଯାଇଛି । ଘରର ଅବସ୍ଥା, ଆସବାବପତ୍ର ଓ ଚଳଣି କହେ ସେ ଥିଲେ ଅତ୍ୟନ୍ତ ନିଃସ୍ୱ । ତାଙ୍କର ଧର୍ମପତ୍ନୀ ଉଚ୍ଚ ବିଦ୍ୟାଳୟରେ କଳା ଶିକ୍ଷୟିତ୍ରୀ ଥିଲେ । ଘରଟି ଥିଲା ନିହାତି ଛୋଟ ଓ ଆଡ଼ମ୍ବରବିହୀନ । ତାଙ୍କର ସନ୍ତାନସନ୍ତତି ନଥିଲେ । ସୁବର୍ଣ୍ଣ ନାୟକ ଏକ ଝିଅକୁ ପାଳି ମଣିଷ କରୁଥିଲେ ।

ସେ ସବଳ ଓ ସ୍ୱାସ୍ଥ୍ୟବାନ ଦେଖାଯାଉନଥିଲେ । ମୁଁ କେବେ ତାଙ୍କୁ ହସିବାର ଦେଖିଲା ପରି ମନେପଡୁନାହିଁ । ସର୍ବଦା ତାଙ୍କୁ ଗମ୍ଭୀର ଥିବା ଦେଖିଛି । ଯେପରି ଅବିରତ ଦେଶ ଓ ଦଶ କଥାରେ ଚିନ୍ତାମଗ୍ନ ରହୁଥିଲେ । ଭାରତ ଓ ଓଡ଼ିଶାର ଭବିଷ୍ୟତ ସମ୍ପର୍କରେ ଉଦ୍‌ବିଗ୍ନ ଥିଲେ । ସେ କଥା ତାଙ୍କ ଲେଖାରୁ ସ୍ପଷ୍ଟ ବାରିହେଉଥିଲା ।

ସେ ବିହାର, ଉତ୍ତରପ୍ରଦେଶ, କର୍ଣ୍ଣାଟକ, ପଶ୍ଚିମବଙ୍ଗ, କେରଳ ଆଦି ରାଜ୍ୟକୁ ବାରମ୍ବାର ଯାଉଥିଲେ ଓ ଲୋକ ସଂଗଠନ ଓ ଲୋକ ଆନ୍ଦୋଳନରେ ବ୍ରତୀ ଥିଲେ । ସେ ଏଭଳି ଏକ ସମାଜ ପ୍ରତିଷ୍ଠା କରିବା ପାଇଁ ଲାଗିପଡ଼ିଥିଲେ ଯେଉଁଠି ନଥିବ ଶୋଷଣ ଓ ଅସାମ୍ୟ ।

ତାଙ୍କର ଲିଖିତ ଦୁଇଟି ହିନ୍ଦୀ ପୁସ୍ତକ 'ଭାରତ ଶୁଦ୍ରୋଁକା ହୋଗା' ଓ 'ବିକଳ୍ପହୀନ ନେହିଁ ହୈ ଦୁନିଆଁ' ଅତ୍ୟନ୍ତ ଚିନ୍ତାଦ୍ୟୋତକ ଥିଲା । ତାଙ୍କର ହିନ୍ଦୀ ସାହିତ୍ୟ ପ୍ରତି ଅବଦାନ ପାଇଁ ବିହାରର ରାବିଡ଼ିଦେବୀ ସରକାର ଏକ ଲକ୍ଷ ଟଙ୍କା ପୁରସ୍କାର ଦେବାକୁ ଘୋଷଣା କରିଥିଲେ । ତାହା ସେ ପ୍ରତ୍ୟାଖ୍ୟାନ କରିଥିଲେ । ତା'ପଛରେ ଏକ କାରଣ ଥିଲା - ବିହାର ସରକାରର ଦୁର୍ନୀତି ପରାୟଣତା ।

ବୁଦ୍ଧଗ୍ରାମ (କେଶରପୁର) ନୟାଗଡ଼ ଜିଲ୍ଲାର ପ୍ରାୟ ୧ ହଜାର ଲୋକସଂଖ୍ୟାବିଶିଷ୍ଟ ଗ୍ରାମ । ନୟାଗଡ଼ ସହରଠାରୁ ୧୨ କି.ମି. ଦୂରରେ ଅବସ୍ଥିତ । ଏହି ଗ୍ରାମ ୧୯୫୪ ମସିହାରେ ଦୁଇ ଭାଗ ହୋଇଥିଲା । ଦୁଇ ବିବାଦମାନ ଗୋଷ୍ଠୀରେ ପରିଣତ ହୋଇ ଗ୍ରାମବାସୀ ରକ୍ତାକ୍ତ ସଂଘର୍ଷରେ ଲିପ୍ତ ଥିଲେ । କେତେକ ଆଦର୍ଶବାଦୀ ଓ ସମାଜ ପ୍ରତି ପ୍ରତିଶ୍ରୁତିବଦ୍ଧ ଯୁବକଙ୍କ ନେତୃତ୍ୱରେ ଗ୍ରାମରେ ସାମାଜିକ ସଂହତି ଓ ଏକତା ଅଣାଯାଇଥିଲା । ଆଜିକୁ ପ୍ରାୟ ୫୧ ବର୍ଷ ହେଲା ସେ ଗ୍ରାମରେ ଆର୍ଥିକ ବିକାଶର ଧାରା, ଅନେକ ଉତ୍ଥାନ, ପତନ ମଧ୍ୟରେ ଅବ୍ୟାହତ ରହିଛି । ପ୍ରଥମେ ଜଳସେଚନ ଉପରେ ପ୍ରାଧାନ୍ୟ ଦିଆଯାଇ ଗ୍ରାମର ପୁଷ୍କରିଣୀଗୁଡ଼ିକର ପୁନରୁଦ୍ଧାର କରାଯାଇଥିଲା । ଗ୍ରାମରେ ସ୍କୁଲ ନଥିଲା । ୧୯୫୮ ମସିହାରେ ନିମ୍ନ ପ୍ରାଥମିକ ସ୍କୁଲ ଆରମ୍ଭ ହୋଇ ୧୯୬୬ ମସିହାରେ ତାହା ମାଇନର ସ୍କୁଲରେ ପରିଣତ ହେଲା । ୧୯୭୦ ମସିହାରେ ହାଇସ୍କୁଲ ପ୍ରତିଷ୍ଠା ହେଲା । ଏହି ଶିକ୍ଷାନୁଷ୍ଠାନଗୁଡ଼ିକର ପ୍ରତିଷ୍ଠା ଫଳରେ ଗୁଣାତ୍ମକ ମାନବ ସମ୍ବଳ ଉପଲବ୍ଧ ହୋଇଥିଲା । ୧୯୭୨ ମସିହାରେ ଗ୍ରାମରେ ପ୍ରତିଷ୍ଠିତ 'ବୃକ୍ଷ ଓ ଜୀବର ବନ୍ଧୁ ପରିଷଦ' ଆନୁକୂଲ୍ୟରେ 'ବୁଦ୍ଧଗ୍ରାମ ପରିବେଶ ଆନ୍ଦୋଳନ'ର ସୂତ୍ରପାତ ହେଲା । ବର୍ତ୍ତମାନ ନୟାଗଡ଼ର ୮୦୦ ଗ୍ରାମରେ ଜଙ୍ଗଲ ସଂରକ୍ଷଣ କାର୍ଯ୍ୟ ଚାଲିଛି । ନୟାଗଡ଼ରେ ପ୍ରତିଷ୍ଠିତ 'ଜଙ୍ଗଲ ସୁରକ୍ଷା ମହାସଂଘ' ଏହି କାର୍ଯ୍ୟକୁ ଆଗେଇନେଇଛି ।

ବୁଦ୍ଧଗ୍ରାମକୁ ଯୁକ୍ତରାଷ୍ଟ୍ର ଆମେରିକା, କାନାଡ଼ା, ବିଲାତ, ଫ୍ରାନ୍ସ, ଜର୍ମାନୀ, ସ୍ୱିଡେନ୍, ନରଓ୍ୱେ, ଋଷିଆ, ଜାପାନ, ଇଣ୍ଡୋନେସିଆ, ଆଫ୍ରିକା ଆଦିରୁ ପରିବେଶପ୍ରେମୀମାନେ ଆସି ପ୍ରେରଣା ଲାଭ କରିଛନ୍ତି । ପରିବେଶ ସଂରକ୍ଷଣ ପାଇଁ ନିରବଚ୍ଛିନ୍ନ ସାଧନା କରିଥିବା, ଗଙ୍ଗାନଦୀର ଟେହେରୀ ବନ୍ଧକୁ ବିରୋଧ କରୁଥିବା, ଯମୁନାଲାଲ ବଜାଜ୍ ଓ ମାଗାସାସୀ ପୁରସ୍କାର ଲାଭ କରିଥିବା ଶ୍ରୀଯୁକ୍ତ ସୁନ୍ଦରଲାଲ ବହୁଗୁଣା ବୁଦ୍ଧଗ୍ରାମ ଅଞ୍ଚଳର ୯ଟି ଗ୍ରାମ ପରିଦର୍ଶନ କରିଥିଲେ । 'ବୃକ୍ଷ ଓ ଜୀବର ବନ୍ଧୁ'ଙ୍କୁ ଜାତିସଂଘର 'ପୃଥିବୀ ପରିବେଶ' ପୁରସ୍କାର (୧୯୮୯), ଭାରତ ସରକାରଙ୍କ 'ବୃକ୍ଷମିତ୍ର' ପୁରସ୍କାର (୧୯୮୯) ଓ ଓଡ଼ିଶା ସରକାରଙ୍କ 'ପ୍ରକୃତି ମିତ୍ର' ପୁରସ୍କାର (୧୯୮୫) ମିଳିଛି । 'ବୃକ୍ଷ ଓ ଜୀବର ବନ୍ଧୁ' ନୟାଗଡ଼ ଜିଲ୍ଲା ବ୍ୟତୀତ ଖୋରଧା, ଗଞ୍ଜାମ ଓ ଫୁଲବାଣୀ ଜିଲ୍ଲାରେ ମଧ୍ୟ ପରିବେଶ ସଂରକ୍ଷଣ କାର୍ଯ୍ୟ କରିଛି ।

୧୧ ଅକ୍ଟୋବର ୨୦୦୨ ମସିହା ଦିନ କିଶନ ପଟ୍ଟନାୟକଙ୍କର ସାମଗ୍ରିକ କୃତି ଓ ସମାଜସେବା ପାଇଁ ବୁଦ୍ଧଗ୍ରାମରେ ସ୍ୱର୍ଣ୍ଣପଦକ ପ୍ରଦାନ କରାଯାଇଥିଲା । ଏହା ଆଗରୁ ବୁଦ୍ଧଗ୍ରାମ ୫ ଜଣ ବ୍ୟକ୍ତିଙ୍କୁ ସ୍ୱର୍ଣ୍ଣପଦକ ପ୍ରଦାନ କରିଥିଲା । ସେମାନେ ହେଲେ ଜ୍ଞାନମଣ୍ଡଳର ଲେଖକ ଶ୍ରୀ ବିନୋଦ କାନୁନ୍‌ଗୋ, ଯଶସ୍ୱୀ ଔପନ୍ୟାସିକ ଶ୍ରୀ ଗୋପୀନାଥ ମହାନ୍ତି, ବୁଦ୍ଧଗ୍ରାମର ଗ୍ରାମସେବୀ ଉଦୟନାଥ ଖଟେଇ, ବୁଦ୍ଧଗ୍ରାମର ସ୍ୱେଚ୍ଛାସେବୀ ଶ୍ରୀ ଭିକ୍ଷାକାରୀ ହଜାରୀ ଓ ନୟାଗଡ଼ର ରଙ୍ଗଣୀପାଟଣା ଗ୍ରାମର ପରିବେଶବିତ୍ ଅଧ୍ୟାପକ ରାଧାମୋହନ ।

କିଶନ ପଟ୍ଟନାୟକ ସେଦିନ ବୁଦ୍ଧଗ୍ରାମର ସଭାରେ ନିମ୍ନଲିଖିତ ଉଦ୍‌ବୋଧନ ଦେଇଥିଲେ । 'ଭାରତକୁ ତିନୋଟି ରାହୁ ଗ୍ରାସ କରିଛି ।' ପ୍ରଥମଟି ହେଲା, 'ଖାଲି ଖର୍ଚ୍ଚ କରି ଚାଲ । କିପରି ରାତାରାତି ଧନୀ ହେବ ଏହି ନିଶା ଧରିଛି । ପୃଥିବୀର ବ୍ୟାପାରୀମାନେ ଧନ ସଂଗ୍ରହ, କ୍ଷମତା ସଂଗ୍ରହରେ ଲାଗିଛନ୍ତି । ଲୋକମାନଙ୍କୁ ନିରନ୍ନ କରିବାରେ ଲାଗିଛନ୍ତି । ଦାରିଦ୍ର୍ୟ ଓ ସମୃଦ୍ଧି ଭିତରେ କମ୍ ବ୍ୟବଧାନ ରଖିବାକୁ ହେବ । କ୍ଷୁଧାର୍ତ୍ତ, ବସ୍ତ୍ରହୀନ ଓ ଗୃହହୀନ ଲୋକଙ୍କୁ ସ୍ୱପ୍ନ ଦେଖିବାର ଅଧିକାର ଦେବାକୁ ହେବ । ନଚେତ୍ ଏ ପୃଥିବୀ ମରିଯାଇପାରେ । ଧନୀ ନିର୍ଦ୍ଧନୀ ସମସ୍ତଙ୍କର ବିନାଶ ହେବ । ୧୯୯୦ ଦଶକରେ ଆରମ୍ଭ ହୋଇଥିବା ଉଦାରୀକରଣ - ଘରୋଇକରଣ - ଜଗତୀକରଣ ପ୍ରକ୍ରିୟାକୁ ପ୍ରଚ୍ଛନ୍ନ ଗୋଲାମୀର ବାହକ ବୋଲି କିଶନ ବାବୁ କହିଥିଲେ ।'

ଦ୍ୱିତୀୟରେ, 'ପୁରୁଷ-ନାରୀ ଭେଦ । ନାରୀମାନଙ୍କୁ ଚପାଇ ରଖାଯାଇଛି । ଗହଣା ପିନ୍ଧାଇ, ଶାଢ଼ୀ ଏକ ନିର୍ଦ୍ଦିଷ୍ଟ ଢଙ୍ଗରେ ପିନ୍ଧାଇ, ପାଉଡର, ସ୍ନୋ, ଲିପଷ୍ଟିକ୍

ଲଗାଇ, ନାରୀଙ୍କୁ ପୁରୁଷର ଭୋଗ୍ୟବସ୍ତୁ କରାଯାଇଛି । ଶାଢ଼ୀ ମହାରାଷ୍ଟ୍ର, ଆନ୍ଧ୍ର ପରି କଛା ମାରି ପିନ୍ଧିଲେ, ସେମାନେ ଦୌଡ଼ିପାରନ୍ତେ । ସେମାନଙ୍କର ମାନସିକତା ଏପରି ପୁରୁଷ ସମାଜ କରିଛି ଯେ, ଘରକଣରେ ପଡ଼ିବେ, କିଛି ଶିଖିବେ ନାହିଁ ।'

ତୃତୀୟରେ, 'ରାଜନେତାମାନେ ନିଜର ସ୍ୱାର୍ଥସାଧନ ପାଇଁ ଧର୍ମ-ଧର୍ମ ଭିତରେ, ଜାତି-ଜାତି ମଧ୍ୟରେ ବିଭେଦ ସୃଷ୍ଟିକରି, ଦେଶର ସର୍ବନାଶ କରିବାରେ ଲାଗିଛନ୍ତି ।'

ଗ୍ରାମବାସୀ ବହୁସଂଖ୍ୟାରେ ଯୋଗଦାନ କରି ତାଙ୍କ ବକ୍ତବ୍ୟ ଶୁଣି ମନ୍ତ୍ରମୁଗ୍ଧ ହୋଇଥିଲେ । ଏହି ସଭାରେ ଗ୍ରାମର ସଭାପତି ଶ୍ରୀ ମନମାଳୀ ଦୋରା ସଭାପତିତ୍ୱ କରି ତାଙ୍କୁ ସ୍ୱର୍ଣ୍ଣପଦକ ପ୍ରଦାନ କରିଥିଲେ । ନାରାୟଣ ହଜାରୀ, ଯୋଗୀନାଥ ସାହୁ ଓ ଭିକ୍ଷାକାରୀ ହଜାରୀ ବୁଦ୍ଧଗ୍ରାମ ଆନ୍ଦୋଳନ ବିଷୟରେ ସୂଚନା ଦେଇଥିଲେ ।

'ସ୍ମୃତିର ସୁନୀଳ ସରସୀ' କିଶନ ପଟ୍ଟନାୟକଙ୍କୁ ଶ୍ରଦ୍ଧାର ସୁମନାଞ୍ଜଳି,
୨୯ ଜୁନ୍ ୨୦୦୫, ସଂପାଦନା-ଅଭୟ ସିଂହ,
ସାହିତ୍ୟିକ ଓ ପରିବେଶ୍‌ବିତ

# ଭବିଷ୍ୟଦ୍ରଷ୍ଟା ଜଣେ ସ୍ଥିତପ୍ରଜ୍ଞ

ନାରାୟଣ ହଜାରୀ
ଶରତ କୁମାର ଦୋରା

କେବଳ ସୁଖ ସ୍ୱାଚ୍ଛନ୍ଦ୍ୟ ଭୋଗ ପାଇଁ ମଣିଷ ଜୀବନ ଉଦ୍ଦିଷ୍ଟ ନୁହେଁ। ବସ୍ତୁ ସର୍ବସ୍ୱ ହୋଇ ଭୋଗ ବିଳାସର ଯାନ୍ତ୍ରିକ ଜୀବନ ମଣିଷକୁ ଆଳସ୍ୟ, ନିର୍ଦ୍ଦୟତା ଆଡ଼କୁ ଟାଣି ନିଏ ଏବଂ ଚେତନାକୁ କଳୁଷିତ କରିପକାଏ। ଶ୍ରମକୁଣ୍ଠା ରହିଲେ ଯନ୍ତ୍ର ଉପରେ ମଣିଷ ଅଧିକ ନିର୍ଭରଶୀଳ ହୁଏ, ଯନ୍ତ୍ର ନିର୍ଭରଶୀଳତା ପ୍ରଦୂଷଣକୁ ବଢ଼ାଏ, ପ୍ରକୃତି ଓ ପରିବେଶର କ୍ଷୟକ୍ଷତିକୁ ଡାକି ଆଣେ ଏବଂ କୌଶଳୀ ମଣିଷ ସ୍ୱାବଲମ୍ବୀ, ଆତ୍ମନିର୍ଭରଶୀଳ ନହୋଇ ଦୁର୍ବଳତାର ମଣିଷକୁ ଶୋଷଣ ତଥା ପ୍ରାକୃତିକ ସଂପଦର ଲୁଣ୍ଠନ କରେ। ଶ୍ରମଦାନ ରହିଲେ ସେଥିରେ ଆଶ୍ରମ ପରି ପବିତ୍ର ବାତାବରଣ ଏବଂ ସନ୍ଥ ପ୍ରତିମ ବ୍ୟକ୍ତିସତ୍ତା ନିର୍ମାଣ କରି ହୁଏ।

ଉପରୋକ୍ତ କଥାଗୁଡ଼ିକ ଲାଗେ ଯେପରି ମହାତ୍ମାଗାନ୍ଧି କିମ୍ବା ସନ୍ଥ ବିନୋବା ଭାବେଙ୍କ ଉଚ୍ଚାରଣ। ମାତ୍ର ଏହା ହେଉଛି ଆମ ସମୟର ଜଣେ ସନ୍ଥ ପ୍ରତିମ କର୍ମଯୋଗୀଙ୍କ ବକ୍ତବ୍ୟ। ତାଙ୍କର ନାମ ଶ୍ରୀ ରାଜ କିଶୋର ନାୟକ। ନୟାଗଡ଼ ଜିଲ୍ଲାର କେଶରପୁର ଅଞ୍ଚଳରେ ଶହଶହ ଗ୍ରାମମାନଙ୍କୁ ନେଇ ପ୍ରକୃତି ଓ ପରିବେଶର ସୁରକ୍ଷା ନିମନ୍ତେ ଗଢ଼ା ହୋଇଥିବା ବୃକ୍ଷଗ୍ରାମରେ ସ୍ୱର୍ଗତ ନାୟକ ପଦାର୍ପଣ କରି ସମବେତ ଗ୍ରାମବାସୀମାନଙ୍କୁ ଦେଇଥିବା ଉଦ୍‌ବୋଧନର ଏହା କିଛି ଝଲକ। ଜଣେ ପ୍ରମୁଖ ସଂଗଠକ ଓ ସମାଜସେବୀ ରୂପେ ଖ୍ୟାତ ଶ୍ରୀ ରାଜକିଶୋର ନାୟକଙ୍କୁ ଆକର୍ଷିତ କରିପାରିଥିବା ଏହି ବୃକ୍ଷଗ୍ରାମ ସଂପର୍କରେ ପ୍ରଥମେ କିଛି ସୂଚନା ଦେବା ଯଥାର୍ଥ ହେବ।

ନୟାଗଡ଼ ସହରଠାରୁ ୧୧ କି.ମି. ଦୂର କେଶରପୁର ଗ୍ରାମ ହେଉଛି ବୃକ୍ଷଗ୍ରାମର କେନ୍ଦ୍ରସ୍ଥଳୀ। ପରିବେଶର ସୁରକ୍ଷା ଓ ସମୃଦ୍ଧି ପାଇଁ ୧୯୮୯ରେ ଜାତିସଂଘର 'ଅନ୍ତଃରାଷ୍ଟ୍ରୀୟ ପରିବେଶ ପୁରସ୍କାର' ଏବଂ ୧୯୮୯ରେ ଭାରତ ସରକାରଙ୍କ 'ବୃକ୍ଷ ମିତ୍ର' ଓ ୧୯୮୬ରେ ଓଡ଼ିଶା ସରକାରଙ୍କ 'ପ୍ରକୃତି ମିତ୍ର' ପୁରସ୍କାର ଲାଭ କରିଥିବା ବୃକ୍ଷଗ୍ରାମର 'ବୃକ୍ଷ ଓ ଜୀବର ବନ୍ଧୁ' ନାମକ ସ୍ୱେଚ୍ଛାସେବୀ ଅନୁଷ୍ଠାନଟି ନୟାଗଡ଼ର ଆଠଟି ବ୍ଲକ୍‌ର ପ୍ରାୟ ଏକ ହଜାର ଗ୍ରାମରେ ଚିରସ୍ଥାୟୀ ଜୈବ କୃଷି, ଜୈବ ବିବିଧତା, ସ୍ଥାୟୀ ଜଳସେଚନ, ପ୍ରାକୃତିକ ପ୍ରଣାଳୀରେ କ୍ଷେତ ଓ ଶସ୍ୟର ସୁରକ୍ଷା ଏବଂ ପରିବେଶ ସଂରକ୍ଷଣ, ସ୍ୱାସ୍ଥ୍ୟ ଓ ପରିଚ୍ଛନ୍ନତା, ନିଶା ନିବାରଣ, ଯୌତୁକ ବିରୋଧି ଆନ୍ଦୋଳନ, ନାରୀ ପ୍ରଗତି ଓ ଶିକ୍ଷା, ପରିବାର

ନିୟନ୍ତ୍ରଣ, ଅସ୍ପୃଶ୍ୟତା ନିବାରଣ, ସୁଗମ ଆୟକାରୀ ଯୋଜନା ପ୍ରଭୃତି ଉପରେ କାର୍ଯ୍ୟ କରୁଛି। ଏ ସବୁ କାର୍ଯ୍ୟକ୍ରମର ମୂଳ ପ୍ରେରଣା ଓ ପିଣ୍ଡ ହେଉଛନ୍ତି କେତେଜଣ ଶିକ୍ଷକ ଓ କୃଷକ। ପ୍ରତିଦିନ ଠେଙ୍ଗାପାଳି କରି ସାଧାରଣ ଗ୍ରାମବାସୀ ରାତି ତମାମ୍ ପାର୍ଶ୍ୱସ୍ଥ ଜଙ୍ଗଲରେ ବୁଲି ଅବାଧ ଓ ଚୋରା ଗଛକଟାକୁ ରୋକନ୍ତି ଏବଂ ଏହା ଉପରେ ଇଂଲଣ୍ଡର ଏକ ସଂସ୍ଥା ପ୍ରମାଣିକ ଚଳଚ୍ଚିତ୍ର ନିର୍ମାଣ କରିଛି। ବୁଦ୍ଧଗ୍ରାମ ଜନ ଆନ୍ଦୋଳନର ସୂତ୍ର ଜାଣିବାକୁ ଆମେରିକା, କାନାଡ଼ା, ଇଂଲଣ୍ଡ, ଜର୍ମାନ, ଫ୍ରାନ୍ସ, ସୁଇଡ଼େନ, ଜାପାନ, ଇଣ୍ଡୋନେସିଆ, ଭାରତର ବିଭିନ୍ନ ପ୍ରାନ୍ତରୁ ପରିଦର୍ଶକ ଓ ଗବେଷକମାନେ ଆସିଛନ୍ତି। ତିନୋଟି ପନ୍ଥାର ପ୍ରୟୋଗରେ ଏଠାରେ ପରିବେଶ ସୁରକ୍ଷା ହୋଇଥାଏ - ପ୍ରଥମେ ପଦଯାତ୍ରା ଓ ଗ୍ରାମେ ଗ୍ରାମେ ସଭା ଅନୁଷ୍ଠିତ କରି ଲୋକଙ୍କୁ ପରିବେଶର ମହତ୍ତ୍ୱ ବୁଝାଇବା, ସ୍ଲୋଗାନ ଓ ପ୍ରାଚୀର ପତ୍ର। ଦ୍ୱିତୀୟରେ ନିର୍ଦ୍ଦୟ ନିଷ୍ଠୁର ଓ ପରିବେଶ ପରିପନ୍ଥୀଙ୍କ ପାଦତଳେ ପଡ଼ି ହୃଦୟ ପରିବର୍ତ୍ତନ ପାଇଁ ପ୍ରଚେଷ୍ଟା ଏବଂ କିଛି ନହେଲେ ତୃତୀୟରେ ଅନଶନ।

ଉପରୋକ୍ତ କାର୍ଯ୍ୟକ୍ରମକୁ ଦେଖିବା ପାଇଁ କଟକର ରାମକୃଷ୍ଣ କୁଟୀରର ସହାୟତାରେ ଶିକ୍ଷା ଲାଭକରି ରେଭେନ୍‌ସା କଲେଜରୁ ବି.ଏ ପାସ କରିଥିବା, ଏହା ପରେ ହାଇସ୍କୁଲରେ ଦୀର୍ଘଦୀନ ଶିକ୍ଷକତା କରି ବହୁ ତ୍ୟାଗୀ ଛାତ୍ରଙ୍କୁ ସୃଷ୍ଟି କରିପାରିଥିବା, ବୁଢ଼ା ହଡ଼ା ଗୋରୁଗାଈଙ୍କର  ସଂରକ୍ଷଣ ପାଇଁ ଆଜୀବନ ଉତ୍ସର୍ଗୀକୃତ, ପାଟକୁରା ନିର୍ବାଚନ ମଣ୍ଡଳୀରୁ ଦୁଇଥର ବିଧାନସଭା ସଦସ୍ୟ ଭାବରେ ନିର୍ବାଚିତ, ଦଳୀୟ ପାଣ୍ଠିରୁ ନିର୍ବାଚନ ପାଇଁ ଦିଆଯାଉଥିବା ସ୍ୱଳ୍ପ ପୁଞ୍ଜିରୁ ସୀମିତ ଖର୍ଚ୍ଚ କରି ସିଂହଭାଗ  ପୁନଶ୍ଚ ଦଳକୁ ଫେରାଇ ଦେଉଥିବା, ପାଦରେ ଚାଲି ଚାଲି ନିର୍ବାଚନ ପ୍ରଚାର କରୁଥିବା, ଓଡ଼ିଶା ଖଦୀ ଓ ଗ୍ରାମୋଦ୍ୟୋଗ ବୋର୍ଡ଼ର ଅଧକ୍ଷ ରାଜକିଶୋର ବାବୁଙ୍କ ସହ ମୁଁ ଓ ଡ. ସୁବାସ ଚନ୍ଦ୍ର ହଜାରୀ ୧୯୮୪ ଜାନୁୟାରୀ ୨୯ ଓ ୩୦ ତାରିଖରେ ସାତଟି ଗ୍ରାମ ପରିଦର୍ଶନ କରିଥିଲୁ। ପୂର୍ବରୁ କେତେକ ଲୋକଙ୍କର ଧାରଣା ଥିଲା ଯେ ଖଦି ଓ କୁଟୀର ଶିଳ୍ପର ପରିବେଶର ବିକାଶ  କ୍ଷେତ୍ରରେ ଉଲ୍ଲେଖନୀୟ ଭୂମିକା ନାହିଁ। କିନ୍ତୁ ଶ୍ରୀ ନାୟକ ଲୋକଙ୍କୁ ଯେପରି ବୁଝେଇଦେଲେ, ଅବସର ସମୟରେ ଲୋକମାନେ ସୂତାକାଟି କିଛି ଉପାର୍ଜନ କରି ପାରିବେ, ସମୟର ଉଚିତ୍ ଉପଯୋଗ ହେବ, ଶ୍ରମକୁଣ୍ଠା ରହିବ ନାହିଁ। ସୂତାକଟାର ପୁର୍ନରୁଦ୍ଧାର ନହେଲେ ଗ୍ରାମରୁ ଦାରିଦ୍ର୍ୟ ହଟିବ ନାହିଁ ଏବଂ ତୃଣମୂଳ ଲୋକମାନଙ୍କର ଆର୍ଥିକାବସ୍ଥାର ଉନ୍ନତି ସମ୍ଭବପର ନୁହେଁ। ଲୁଗାପଟା ପାଇଁ ସେମାନଙ୍କୁ ଯେପରି ଖୁବ୍ କମ୍ ଖର୍ଚ୍ଚ କରିବାକୁ ପଡ଼ିବ, ଖାଦ୍ୟ, ବସ୍ତ୍ର, ବାସଗୃହ, ନିର୍ମାଣ ଆଦିରେ ଗ୍ରାମବାସୀଙ୍କୁ ସ୍ୱାବଲମ୍ବୀ ହେବାକୁ ପଡ଼ିବ। ଏପରି ବକ୍ତବ୍ୟ ଶୁଣି ଅନେକ ଉଦ୍‌ବୁଦ୍ଧ ହେଲେ।

ଦେଶର ବିକାଶର ଧାରା ବିପଥଗାମୀ ହୋଇପଡ଼ିଛି। ଲୋକେ ସୂତା କାଟିବା ଓ

ଲୁଗା ବୁଣିବା ଛାଡ଼ି, ଗଛ କାଟି, ପଥର ଭାଙ୍ଗି ଜୀବିକା ନିର୍ବାହ କରୁଛନ୍ତି। ପଥର ଭାଙ୍ଗି କଠିନ ପରିଶ୍ରମ କରି ଏହି ଅଞ୍ଚଳର ଏକଗ୍ରାମ ମାନପୁରର ୧୬ଜଣ ମହିଳା ଦିନକୁ ପାଞ୍ଚ ବା ଛ ଟଙ୍କା ରୋଜଗାର କରୁଛନ୍ତି। ବର୍ତ୍ତମାନ ବିକାଶର ଧାରା ପ୍ରକୃତି ଓ ଜନସାଧାରଣଙ୍କ ସ୍ୱାର୍ଥର ବିରୋଧି। ଯେତେଦିନ ଯାଏଁ ଲୋକମାନେ ବୁଝିନାହାଁନ୍ତି ଯେ ଜଙ୍ଗଲ ସୁରକ୍ଷା, ପରିବାର ନିୟନ୍ତ୍ରଣ, ଆୟୁର୍ବେଦୀୟ ବା ପ୍ରାକୃତିକ ପଦ୍ଧତିରେ ଚିକିତ୍ସା ଏବଂ ମୂଲ୍ୟବୋଧ ଭିତ୍ତିକ ଶିକ୍ଷାପଦ୍ଧତିକୁ ହେୟଜ୍ଞାନ କରାଯାଉଥିବ ସେତେଦିନ ଯାଏଁ ସମାଜର ସମୃଦ୍ଧି ହୋଇପାରିବ ନାହିଁ। ମାନପୁର, ବୁଦ୍ଧଗିରି (ବିଂଝଗିରି), ଗମେଇ, ଗମ୍ଭାରିଡ଼ିହି, ଡମସାହି, ଡିମିଶର, ନାଗମୁଣ୍ଡଳୀ ଆଦି ଗ୍ରାମଗୁଡ଼ିକୁ ଶ୍ରୀ ନାୟକ ପରିଦର୍ଶନରେ ଯାଇଥିଲେ। ସବୁକଥାକୁ ସେ ଖୁବ୍ ତଲେଇ କରି ଦେଖନ୍ତି। ଲୋକଙ୍କ ଅନୁଭବ କଥା ସବୁ ଶୁଣନ୍ତି ଏବଂ ଗୁରେଇ ତୁରେଇ ପ୍ରଶ୍ନ ପଚାରନ୍ତି। ତାଙ୍କ ପ୍ରଶ୍ନର ଉତ୍ତରରେ ବୁଦ୍ଧଗିରି ଗ୍ରାମବାସୀମାନେ କହିଥିଲେ ଯେ, ଜଙ୍ଗଲ ରକ୍ଷା କରିବାଦ୍ୱାରା ସେ ଅଞ୍ଚଳରେ ୧୦ ବର୍ଷ ହେଲା ମରୁଡ଼ି ପଡ଼ିନାହିଁ। ଠିକଣା ସମୟରେ ବର୍ଷା ହେଉଛି। ଗମ୍ଭାରୀଡ଼ିହ ଗ୍ରାମରେ ୪୫ ଗୋଟି ତନ୍ତ ଥିବାର ଜଣାପଡ଼ିଥିଲା। ସୂତାର ଅଭାବ ଓ ଖଦଡ଼ ଲୁଗା ବିକ୍ରିର ଅସୁବିଧା ଯୋଗୁଁ ଏବେ ସବୁଯାକ ତନ୍ତ ବନ୍ଦ ଅଛି। ତନ୍ତୀମାନେ ହାତବାନ୍ଧି ବସିଛନ୍ତି। ଏହି ଗ୍ରାମରେ ଲୋକମାନେ ବିଶେଷ ତ୍ୟାଗ ସ୍ୱୀକାର କରି ହାଇସ୍କୁଲ ଓ ଡାକ୍ତରଖାନା ପ୍ରତିଷ୍ଠା କରିଛନ୍ତି। ଡମସାହି, ଗୋଡ଼ିପଡ଼ା, ଡିମିସର, କାଳିକାପ୍ରସାଦ, ଗମ୍ଭାରୀଡ଼ିହ ଗ୍ରାମରେ ଲୋକଶକ୍ତିର ପ୍ରୟୋଗରେ ହାଇସ୍କୁଲ, ଡାକ୍ତରଖାନା ଓ କଲେଜ ହୋଇଥିବାର ଦେଖି ଶ୍ରୀ ନାୟକ ଆନନ୍ଦ ପ୍ରକାଶ କରି ଉଲ୍ଲସିତ ହୋଇଥିଲେ ଓ ବିସ୍ମିତ ମଧ୍ୟ ହୋଇଥିଲେ। ସେ ନିଜ ଅଞ୍ଚଳ ପାଟକୁରାରେ ଏପରି କାର୍ଯ୍ୟ କେବେ ହୋଇଥିବାର ଜାଣିନାହାନ୍ତି ବୋଲି କହିଥିଲେ।

ଶ୍ରୀ ନାୟକଙ୍କ ଜନସେବାର କର୍ମନିଷ୍ଠା ସମସ୍ତଙ୍କୁ ଅଭିଭୂତ କରିଥିଲା। ସେ ଅନେକଙ୍କ ପାଇଁ ପ୍ରେରଣାର ଉତ୍ସ ଥିଲେ। ଡିମିସର ଗ୍ରାମରେ ଶ୍ରୀଯୁକ୍ତ ନାୟକଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଦିଆଯାଇଥିଲା। ଲୋକମାନେ ସଂକୀର୍ତ୍ତନ ସହ ଅତିଥିଙ୍କ ଗହଣରେ ଗ୍ରାମ ପରିକ୍ରମା କରିଥିଲେ। ୪୦୦୦ ଜନ ସଂଖ୍ୟା ବିଶିଷ୍ଟ ଏହି ଗ୍ରାମରେ ଶତକଡ଼ା ୪୦ ଭାଗ ଲୋକ ବୁଣାକାର। ସୂତାର ଅଭାବରୁ, ତନ୍ତ ବୁଣାକାର ହାତ ବାନ୍ଧି ବସିଛନ୍ତି ଜାଣି ଶ୍ରୀ ନାୟକ ପ୍ରାୟ ୨୦୦ ଲୋକଙ୍କୁ ଉଦ୍‌ବୋଧନ ଦେଇ ନିମ୍ନଲିଖିତ କଥାମାନ ଉଲ୍ଲେଖ କରିଥିଲେ।

ଖଦୀର ମୂଲ୍ୟ ଏତେ ଅଧିକ ହୋଇଯାଇଛି ଯେ, ଗରିବ ଲୋକଙ୍କ ପାଇଁ ତାହା ଦୁର୍ମୂଲ୍ୟ ହୋଇପଡ଼ିଛି। ତାକୁ ବର୍ତ୍ତମାନ ପୃଥିବୀ ଉତ୍ତପ୍ତ ହେବା ଯୋଗୁଁ ଧନିକ ଶ୍ରେଣୀର ଲୋକ ପିନ୍ଧୁଛନ୍ତି ଓ ସେଗୁଡ଼ିକ ବିଦେଶକୁ ରପ୍ତାନୀ ହେଉଛି। ଦ୍ୱିତୀୟରେ ଉତ୍ସର୍ଗୀକୃତ

ମନୋଭାବ ନରହିଲେ ଖଦୀ ଶିଳ୍ପ ବଞ୍ଚିପାରିବ ନାହିଁ। ତୃତୀୟରେ ସ୍ୱାଧୀନତା ପୂର୍ବରୁ ଗାନ୍ଧିଜୀଙ୍କର ରଚନାତ୍ମକ କାର୍ଯ୍ୟ(ଖଦୀ) ର ବ୍ରିଟିଶ ସରକାର ଘୋର ବିରୋଧ କରୁଥିଲେ। ଏହାସତ୍ତ୍ୱେ ଖଦୀର ପ୍ରସାର ଚାଲିଥିଲା। ସ୍ୱାଧୀନ ଭାରତରେ ଖଦୀକୁ ସରକାର ସାହାଯ୍ୟ, ସହଯୋଗ ଦେଉଛନ୍ତି, କିନ୍ତୁ ଖଦୀର ବିକାଶ ସାଧିତ ହୋଇପାରୁନାହିଁ। କାରଣ, ସଭ୍ୟତାର ସ୍ୱର ବଦଳିଯାଇଛି। ଲୋଭ, ସ୍ୱାର୍ଥ, ବସ୍ତୁତୃଷ୍ଣା ଓ ଭୋଗବାଦର ଶିକାର ମଣିଷ ହୋଇଛି। ଉତ୍ସର୍ଗୀକୃତ ମନୋଭାବର ଅଭାବ ଏହାର ଅନ୍ୟତମ କାରଣ। ଯାହା କିଛି ଅର୍ଥ ଲୋକଙ୍କ ପାଇଁ ଅନୁଦାନ ଆକାରରେ ଦିଆଯାଉଛି, ତାହା କେତେକ ରାଜନୀତିକ ବ୍ୟକ୍ତି, ସରକାରୀ କର୍ମଚାରୀ, ଶିଳ୍ପପତି ଓ ଦଲାଲ୍ ଆଦି ବାଟମାରଣା କରି ନେଉଛନ୍ତି। ଶ୍ରୀ ନାୟକଙ୍କ ସ୍ପଷ୍ଟ ସତ୍ୟାଶ୍ରୟୀ ଅଭିବ୍ୟକ୍ତି ଆମ ସମସ୍ତଙ୍କୁ ଚମତ୍କୃତ କରିଥିଲା। ସେ ନିଜେ ଏକଦା ଖଦୀ ବୋର୍ଡ଼ର ଅଧକ୍ଷ ଥିବା ସତ୍ତ୍ୱେ ସରକାରୀ କଳର ଦୁର୍ବଳତା ଓ ଅପାରଗତାକୁ ଘୋଡ଼ାଇବାକୁ ଚେଷ୍ଟା ନକରି ସତ୍ୟ ଓ ବାସ୍ତବ ସ୍ଥିତିକୁ ଅଭିବ୍ୟକ୍ତ କରିଥିଲେ। ସେ ଅନତ୍ର ଦେଇଥିବା ଅଭିଭାଷଣମାନଙ୍କର ସାରାଂଶ ହେଲା; ବସ୍ତୁନିଷ୍ଠ ଜ୍ଞାନ ପ୍ରାଣବନ୍ତ ଜୀବନକୁ ଆବେଗ, ଆନନ୍ଦ, ଆସ୍ଥା ଓ ଆତ୍ମନିଷ୍ଠାଠାରୁ ଦୂରେଇ ନେଉଛନ୍ତି। ଇଲେକ୍‌ଟ୍ରୋନିକ୍ସର ପ୍ରଭାବ ମଣିଷକୁ ବସ୍ତୁବାଦୀ ଓ ଯାନ୍ତ୍ରିକ କରିଦେବା ସାଙ୍ଗକୁ ପ୍ରଚୁର  ଭୋଗବିଳାସ ଯୋଗାଇ, ଦେବତାର ରୂପ  ପାଇଥିବା ମଣିଷ ନିକଟରୁ ଚିରନ୍ତନ ପ୍ରେମ, ସୁନ୍ଦର ଜୀବନ, ଐଶ୍ୱରିକ ଉପଲବ୍ଧି, ସୃଜନଶୀଳତା, ନିଜ ମାଟିର ସଂସ୍କୃତି ଓ ଆର୍ଯ୍ୟଧାରାର ନୀତିନିଷ୍ଠ ଜୀବନକୁ ଛଡ଼ାଇ ନେଉଛନ୍ତି। ଧରା ବନ୍ଧା ବିଜ୍ଞାନ ଓ ବସ୍ତୁନିଷ୍ଠ ଜ୍ଞାନର ବନ୍ଧନୀରୁ ମୁକ୍ତ ହୋଇ ଭରପୂର ଓ ପୂର୍ଣ୍ଣାଙ୍ଗ ଜୀବନ ବଞ୍ଚିବାକୁ ହେଲେ ଅପୂର୍ବ ଓ ଉଲ୍ଲାସ, ଅଜସ୍ର ଉନ୍ମାଦନା, ଅସୁମାରୀ ଉଦ୍ଦୀପନା ଓ ଅଦମ୍ୟ ଆଗ୍ରହର ଆବଶ୍ୟକତା ରହିଛି। ଶିଶୁର ନିରୀହତା, ସରଳତା, ଚପଳତା ଓ ଆବେଗ ସାରା ଜୀବନ ପ୍ରତ୍ୟେକ ମଣିଷ ମଧ୍ୟରେ ରହିବା ଦରକାର।

ଏହି ଉଦ୍‌ବୋଧନରେ ସେ ଯେଉଁ ଚମତ୍କାର ଆଧାତ୍ମିକ ଅଭିବ୍ୟକ୍ତି ରଖିଥିଲେ ତାହା ଏବେ ସ୍ମରଣ କଲେ ମୋ ଭିତର ଥରି ଉଠେ। ଭ୍ରମ ନହେଲେ ଜୀବନ ମଧୁର ହୁଏ ନାହିଁ। ସେ କହିଥିଲେ-ମନୁଷ୍ୟ ଜୀବନର ବୈଶିଷ୍ଟ୍ୟ ହେଉଛି, ତାର ଆବେଗ, ଭାବପ୍ରବଣତା ଓ କଳ୍ପନା ବିଳାସ। ଅନ୍ୟଥା ମଣିଷ ଗୋଟିଏ ନିଷ୍ପ୍ରାଣ ଯନ୍ତ୍ର ପାଲଟି ଯିବ ଓ ଯାଉଛି। ବିଜ୍ଞାନର ସମସ୍ତ ଚମତ୍କାରିତା ସତ୍ତ୍ୱେ ଜୀବନକୁ ସମର୍ଥ ଓ  ସାର୍ଥକ କରିବାକୁ ହେଲେ ଆମକୁ ଈଶ୍ୱରଙ୍କ ଉପରେ ବିଶ୍ୱାସ ଓ ଆମର  କଳା, ସଂସ୍କୃତି ତଥା ସାହିତ୍ୟ ଉପରେ ଆସ୍ଥା ରଖିବାକୁ ପଡ଼ିବ। ସମାଜର ସେବାରେ ସରଳ, ନିର୍ମଳ ଭାବନା ଓ କଳା ସଂସ୍କୃତି ସାଙ୍ଗରେ ଶ୍ରୀ ନାୟକ ସର୍ବଦା ରହି ଆସିଛନ୍ତି। ଏସବୁ ଗୁଣବତ୍ତା ହିଁ ତାଙ୍କୁ ନିଆରା ମଣିଷ କରି ଗଢ଼ିଛି। କାହାରିକୁ ନେଇ  ଅଭିଯୋଗ ଓ ଅବଶୋଷ କରିବାର ଆବଶ୍ୟକତା

ନାହିଁ ବୋଲି ସେ ମର୍ମେ ମର୍ମେ ଅନୁଭବ କରି ତଦ୍ରୂପ ଭାବେ ଜୀଇଁଛନ୍ତି। ସେଦିନ ସେ କହିଥିବା ଶେଷ କଥାଟି ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା। କୁଟୀର ଶିଳ୍ପର ବିକାଶ ପାଇଁ ସରକାର ସାହାଯ୍ୟ ଦେଉଛନ୍ତି, କିନ୍ତୁ ଠିକ୍ ଓ ଯଥାର୍ଥ ଲୋକଙ୍କ ପାଖରେ ସେହି ପୁଞ୍ଜି ପହଞ୍ଚି ପାରୁନାହିଁ। କିଏ ଠିକ ଲୋକଙ୍କ ହାତରେ ଅର୍ଥ ଦେବ? କିଏ ଠିକ୍ ଭାବରେ ଉପଯୋଗ କରାଇବ? ସରକାରୀ କର୍ମଚାରୀଙ୍କ ଦ୍ୱାରା ଏହା ସମ୍ଭବ ନୁହେଁ। ପ୍ରକୃତ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ଏହା କରିପାରିବେ। ଶିଳ୍ପ ବିଭାଗର ବଡ଼ ବଡ଼ କର୍ମଚାରୀମାନେ ଯେତେବେଳେ ଦେଖୁଛନ୍ତି ଯେ, ସ୍ତ୍ରୀ ଲୋକମାନେ ଖଦୀ ଲୁଗା ବୁଣି ମାତ୍ର ୫/୬ଟଙ୍କା ପାଉଛନ୍ତି, ଅଫିସରମାନେ ଏହା ଦ୍ୱାରା ପ୍ରଭାବିତ ହୋଇପାରୁନାହାନ୍ତି। ଏହା ତାଙ୍କ ମନକୁ ପାଉନାହିଁ। ସେମାନେ ବୁଝି ପାରୁ ନାହାନ୍ତି ଯେ, ୫/୬ଟଙ୍କା ଗରିବ ଲୋକମାନଙ୍କ ପାଇଁ କେତେ ଉପଯୋଗୀ ଓ କେତେ କାମରେ ଲାଗେ! ସେଥିରେ ସେମାନଙ୍କର ତେଲ, ଲୁଣର ଆବଶ୍ୟକତା ମେଣ୍ଟିପାରୁଛି। ମାସିକ ୩୦ହଜାରରୁ ଊର୍ଦ୍ଧ୍ୱ ଟଙ୍କା ଦରମା ପାଉଥିବା କିଣିଖିଆ ସରକାରୀ ଚାକିରିଆମାନେ ଗ୍ରାମୀଣ ସୃଜନଶୀଳ ଲୋକଙ୍କ ସଂଘର୍ଷକୁ ବୁଝିପାରିବେ ନାହିଁ। ସ୍ୱାଧୀନତା ପ୍ରାପ୍ତିର ଦୀର୍ଘ ୪୭ବର୍ଷ ଅତୀତ ହୋଇଯାଇଥିଲେ ହେଁ, ଏପର୍ଯ୍ୟନ୍ତ ଏ ଦିଗରେ ଆମେ ବିଶେଷ କିଛି ଅଗ୍ରଗତି କରିପାରିନାହୁଁ। ଏ ବିଷୟରେ ଗଭୀର ଭାବେ ଚିନ୍ତା କରିବାର ବେଳ ଆଜି କଣ ଆସିନାହିଁ? ଆଉ କେବେ ଏହି ମୌଳିକ ପ୍ରଶ୍ନ ଆମ ସମସ୍ତଙ୍କୁ ଆନ୍ଦୋଳିତ କରିବ?

ଆଜିର ଉଦାରୀକରଣ ଓ ଘରୋଇକରଣ ଯୁଗରେ ବିଶ୍ୱବ୍ୟାପୀ ଦାରିଦ୍ର୍ୟ, ଦୁସ୍ଥିତି, ବିସ୍ଥାପନ ବଢ଼ି ବଢ଼ି ଚାଲିଛି! ମୁଷ୍ଟିମେୟ ଲୋକ ପ୍ରଚୁର ପୁଞ୍ଜିକୁ ନେଇ ଖେଳୁଛନ୍ତି, ଖଣିଜ ଓ ପ୍ରାକୃତିକ ସଂପଦର ଅମାନବୀୟ ଲୁଣ୍ଠନ ଚାଲିଛି! ସେହି ପରିପ୍ରେକ୍ଷୀରେ ସ୍ୱର୍ଗତ ନାୟକଙ୍କ ବୁଦ୍ଧଗ୍ରାମରେ ପ୍ରଦତ୍ତ ଅଭିବ୍ୟକ୍ତି ହୋଇଉଠିଛି ଅଧିକ ପ୍ରାସଙ୍ଗିକ ଏବଂ ତାହା ହିଁ ଭବିଷ୍ୟତର ସମତାପୂର୍ଣ୍ଣ ସୁସ୍ଥ ସମାଜ ଗଠନ ପାଇଁ ଏକମାତ୍ର ପଥ ଓ ମନ୍ତ୍ର।



ନାରାୟଣ ହଜାରୀଙ୍କ ଜନ୍ମ ନୟାଗଡ଼ଠାରୁ ୧୧ କି.ମି. ଦୂରରେ ଅବସ୍ଥିତ ବୁଦ୍ଧଗ୍ରାମ (କେଶରପୁର)ରେ ୧୯୩୬ ମସିହା ପହିଲି ରଜରେ। ବିଦ୍ୟାଳୟରେ ପାଠ ପଢୁଥିବା ସମୟରେ 'ଭକ୍ତିଯୋଗ' ନାମକ ଏକ ପୁସ୍ତକ ତାଙ୍କ ଜୀବନର ଗତିପଥକୁ ଏକ ନୂଆ ମୋଡ଼ ଦେଇଥିଲା। ଆଧ୍ୟାତ୍ମିକତାରେ ବୁଡ଼ି ରହି ସେ ୧୯୫୪ ମସିହାରେ ମାଟ୍ରିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ। ୧୭ ବର୍ଷ ବୟସରେ ସେ ନିଜର ଗ୍ରାମକୁ ସଂଗଠିତ ଓ କର୍ମଚଞ୍ଚଳ କରିବାର ନେତୃତ୍ୱ ନେଇ, ଗ୍ରାମରେ ପୁଷ୍କରିଣୀଗୁଡ଼ିକର ପୁନଃରୁଦ୍ଧାର, ଉଚ୍ଚ ବିଦ୍ୟାଳୟ ସ୍ଥାପନ ଓ ଅରଣ୍ୟ ସଂରକ୍ଷଣରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ। ସେ ଆଲହାବାଦ ବିଶ୍ୱବିଦ୍ୟାଳୟରୁ ରାଜନୀତି ବିଜ୍ଞାନରେ ସ୍ନାତକୋତ୍ତର ଉପାଧି ୧୯୬୦ ମସିହାରେ ଓ ୧୯୭୯ ମସିହାରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଲାଭ କରିଥିଲେ। ସେ ଉକ୍ତ ବିଶ୍ୱବିଦ୍ୟାଳୟରେ ପ୍ରଫେସର ଓ ନାଗାଲାଣ୍ଡ ବିଶ୍ୱବିଦ୍ୟାଳୟରେ ପରିଦର୍ଶକ ପ୍ରଫେସର ଥିଲେ। ତାଙ୍କ ଦ୍ୱାରା ଲିଖିତ ପୁସ୍ତକଗୁଡ଼ିକ ହେଲା, **Grassroots Politics in Rural India** (୧୯୮୪), **Eternal Gandhi** (୧୯୯୮), **Development Administration** (୨୦୦୬) ଓ **Immortal Sarvoday** (୨୦୦୭) 'ବୃକ୍ଷ ଓ ଜୀବର ବନ୍ଧୁ' ପରିଷଦ ନାମକ ଏକ ସ୍ୱେଚ୍ଛାସେବୀ ସଂସ୍ଥା ନିଜ ଗ୍ରାମରେ ୧୯୭୨ ମସିହାରେ ଗଠନ କରିଥିଲେ। ଏହି ସଂସ୍ଥାର କର୍ମୀମାନଙ୍କ ଦ୍ୱାରା ଜଙ୍ଗଲ ସଂରକ୍ଷଣ, ବୃକ୍ଷରୋପଣ, ଜୈବ ଚାଷ, ଜୈବ ସାର, ଜୈବ ପୋକମରା ଔଷଧର ବାର୍ତ୍ତା ନୟାଗଡ଼, ଖୋରଧା ଓ ଗଂଜାମ ଜିଲ୍ଲାର ପ୍ରାୟ ୧ ହଜାର ଗ୍ରାମକୁ ପ୍ରସାରିତ ହୋଇ ଜଙ୍ଗଲ ସଂରକ୍ଷଣ କରାଯାଇଅଛି। ଉପରୋକ୍ତ ସଂସ୍ଥା ଓଡ଼ିଶା ସରକାରଙ୍କ 'ପ୍ରକୃତି ମିତ୍ର' ପୁରସ୍କାର (୧୯୮୬), ଭାରତ ସରକାରଙ୍କ 'ବୃକ୍ଷ ମିତ୍ର' ପୁରସ୍କାର (୧୯୮୬) ଓ ଜାତିସଂଘର 'ପୃଥିବୀ ପରିବେଶ ପୁରସ୍କାର' (୧୯୮୯) ଲାଭ କରିଅଛି। ସେ ପ୍ରାୟ ପାଞ୍ଚଶହ ଗ୍ରାମରେ ପଦଯାତ୍ରା କରି ଜଙ୍ଗଲ ସଂରକ୍ଷଣ ପାଇଁ ଜନସଚେତନତା ସୃଷ୍ଟି କରିବାରେ ଆନ୍ତରିକ ଉଦ୍ୟମ କରିଛନ୍ତି।

ବୁଦ୍ଧଗ୍ରାମକୁ ଯୁକ୍ତରାଷ୍ଟ୍ର ଆମେରିକା, କାନାଡ଼ା, ବିଲାତ, ଫ୍ରାନସ୍, ଜର୍ମାନୀ, ସୁଇଡ଼େନ, ରୁଷିଆ, ଜାପାନ, ଇଣ୍ଡୋନେସିଆ, ଆଫ୍ରିକା ଆଦି ଦେଶରୁ ପରିବେଶପ୍ରେମୀମାନେ ପ୍ରେରଣା ଲାଭ କରିବାକୁ ଆସିଛନ୍ତି। ବୁଦ୍ଧଗ୍ରାମ ଏକ ତୀର୍ଥକ୍ଷେତ୍ରରେ ପରିଣତ ହୋଇଅଛି।

ତାଙ୍କର ଲୋକଶକ୍ତି ଉପରେ ଅଖଣ୍ଡ ବିଶ୍ୱାସ ରହିଅଛି। ଲୋକଶକ୍ତି ଦ୍ୱାରା ଦେଶର ଆର୍ଥନୀତିକ, ସାମାଜିକ, ସାଂସ୍କୃତିକ, ରାଜନୀତିକ, ମାନବିକ, ନୈତିକ ଓ ଆଧ୍ୟାତ୍ମିକ ବିକାଶରେ ସେ ବିଶ୍ୱାସ କରନ୍ତି।

ଆମରିସତ୍ୟ
AMARISATYA

ମୂଲ୍ୟ: ୧୫୦ ଟଂକା